# ସାରଳା ମହାଭାରତ

## ଭୀଷ୍ମ ପର୍ବ



ମୁଖ୍ୟ ସଂକଳକ, ସଂଗ୍ରାହକ ଓ ସଂପାଦକ

**ଡକ୍ଟର୍ ୬ ଆର୍ତ୍ତବଲ୍ଲଭ ମହାନ୍ତି, ଏମ୍. ଏ., ଡ଼ି. ଲିଟ୍. ପଦ୍ମଶ୍ରୀ**

# ସୂଚୀପତ୍ର

## ଭୀଷ୍ମ ପର୍ବ

ବିଷୟ ପୃଷ୍ଠାଙ୍କ

ବିଷୟ ପୃଷ୍ଠାଙ୍କ

# ସାରଳା ମହାଭାରତ

## ଭୀଷ୍ମ ପର୍ବ

### ଗଣେଶଙ୍କ ବନ୍ଦନା

ଜୟ ତୁ ଦଧିମଙ୍ଗଳ ଜୟ ବିଘ୍ନରାଜ
ସ୍ମରଣେ ମୁକତି ଯେ ପ୍ରସନ୍ନେ କରୁ ସିଦ୍ଧ ସର୍ବକାର୍ଯ୍ୟ । ୧ ।
ସଂସିଦ୍ଧ ପୁରୁଷ ତୁ ସର୍ବଦା ରସେ ଭୋଳ
ମୁହିଂ ତୋତେ ଭେଟିଲି ଶ୍ୱେତଗଙ୍ଗାର କୂଳ । ୨ ।
ଆଦ୍ୟ ଅବତାରେ ଶୂଦ୍ରକ ନାମେ ବ୍ରହ୍ମା
ଅନେକ କାଳ ବଞ୍ଚାଇଲୁ ଯେବଣ ମହାତମା । ୩ ।
ଭରହରଷ ନାୟକ ନୃତ୍ୟରସେ ଭୋଳା
ମହାରସେ ରସିକ ନାଥ ତାଣ୍ଡବ ନୃତ୍ୟକଲା । ୪ ।
ସିତ ପୀତ କୁଂକୁମ ଯାର ଶିରରେ ସିତାଂଶୁ
ଦିନକର ତେଜ ହରଇ ଯାହାର ଶ୍ରୀଭୁଜେ ଖଗପରଶୁ । ୫ ।
ଯୋଗାନନ୍ଦ ପୁରୁଷ ତୁ ବଳେ ମହାମେରୁ
ତୁ ଯାକୁ ପ୍ରସନ୍ନ ଗତ ଆଗତ ତାକୁ ସ୍ଫୁରୁ । ୬ ।
ସ୍ୱାମୀ କାର୍ତ୍ତିକ ପ୍ରହାର ଯେ କଲେ ବାମ ପାଦଘାତେ
ଦକ୍ଷିଣ ଦନ୍ତ ଭଗ୍ନଗଲା ଅନୁଜର କୋପ ଚିତ୍ତେ । ୭ ।
ସେ ଭଗ୍ନଦନ୍ତ ପଡ଼ିଲା ପଦ୍ମଂ ପୃଥିବୀ ଉପରେ
ସସାଗର ହୋଇଅଛି ପୃଥୀ ସେ ଭଗ୍ନଦନ୍ତଭରେ । ୮ ।

---

୪।୧ ଭର ହରଷ—ପୂର୍ଣ୍ଣ ହରଷ ।
୫।୧ ସିତ—ଶୁକ୍ଳ ବର୍ଣ୍ଣ । ୫।୧ ସିତାଂଶୁ—ଚନ୍ଦ୍ର ।
୮।୧ ଭଗ୍ନଦନ୍ତଭରେ—ଭଗ୍ନଦନ୍ତ ଭରରେ ।

ଯହୁଂ ସେ ବଡ ଆରତ ହୋଇଲା ଧରଣୀ
ବସୁଧା ଗ୍ରାସାଙ୍ଗତେ ତୁଷ୍ଟି କଲେ ଶୂଳପାଣି । ୯ ।
ସଚରାଚର ପୃଥିବୀକ ଉଦ୍ଧର ପର୍ଶୁପାଣି
ବାମ ଭୁଜେ ସଂହରଣ ନାଥ କଲୁ ତାହା ଆଣି । ୧୦ ।
କୋପେ ଶାପ୍ୟ ତାକୁ ଦେଲୁ ଯେ ଭୂରତେ
ଗଳିତ କୁଷ୍ଠ ବ୍ୟାଧି ତାକୁ ହେଲା ତାର ପାଦେ । ୧୧ ।
ଦ୍ରୋହକର୍ମ କଲା ନ ଗଲା ତାକୁ ପାର
ରକ୍ତ ମାଂସେ ପୂତି ଗନ୍ଧ ବହଇ ରୁଧିର । ୧୨ ।
ହର ପାର୍ବତୀ ବୋଇଲେ ଦୋଷ କଲୁ କ୍ଷମା
ତା କଷ୍ଟ ଦେଖି ଦୟାକଲ ଯେ ମହାତ୍ମା । ୧୩ ।
କୋପ ଶାନ୍ତ ଯେଣୁ ନୁଆରିଲା ତୋହୋର
ଗଳିତ କୁଷ୍ଠବ୍ୟାଧି ହୋଇଲା କାର୍ତ୍ତିକର । ୧୪ ।
ତବ କର ଲାଗନ୍ତେ ହୋଇଲାକ ରକ୍ଷା
ଆପାଦ ଶାନ୍ତ କରି ରୁହାଇଲୁ କକ୍ଷା । ୧୫ ।
ଅମୃତ ଭୋଜନେ ତୋ ଶରୀର ତୃପ୍ତି
ଅନ୍ତ୍ୟେ ପୁରୁଷ ତୁ ଗଜାନନ ମୂର୍ତ୍ତି । ୧୬ ।
ରଣ ଝଣ ଶବଦ ତୋ ଚରଣେ ନୂପୁର
ଚଳିଲାକ ମେଦିନୀ ତୋହୋର ପାଦଭର । ୧୭ ।
ଅଙ୍ଗ ରକ୍ତ ବର୍ଣ୍ଣ ସହସ୍ରେ ଯେ ମେରୁ
ବ୍ରହ୍ମାଣ୍ଡ କମ୍ପଇ ବାଜନ୍ତେ ଯାହାର ଡମ୍ବରୁ । ୧୮ ।
ବଜ୍ରଘୋଷ ଶଙ୍ଖ ତାଳ ଯେ କଂସାଳ
ଝଟକେ ମୋହିଲୁ ତୁମ୍ଭ ଦେବ ଯେ କାପାଳୀ । ୧୯ ।
ମେରୁ ତୁଲ୍ୟ ମଣ୍ଡଳ ଆରକ୍ତ ବର୍ଣ୍ଣ ଆଖି
ଅପସରା ବୃନ୍ଦ [illegible]କଲେ ତୋହୋର ତାଣ୍ଡବ ନୃତ୍ୟ ଦେଖି । ୨୦ ।

---

୧୫।୧ ତବ ଭଗତ ଚନ୍ଦ୍ର ଦେବ ହୋଇଲାକ ରକ୍ଷା । (କ, ଖ, ଘ, ଛ)
୧୨।୨ ପୂତି ଗନ୍ଧ--ଅତି ଦୁର୍ଗନ୍ଧ ।
୧୯।୧ ବଜ୍ରଘୋଷ—ଜୟଢକ୍କା ।

ଶ୍ରୀଭୃଙ୍ଗେ ସରଗୁଣା ତାଳ ଯେ ଅଧାଟି
ସୁସ୍ୱରେ ଗୀତରସେ ଆରମ୍ଭ ନୃତ୍ୟ ହେଟି । ୨୧ ।
ରାଗ ରାଜା ମାଳବ ଲଳିତ ବସନ୍ତ ଭଇରବୀ
ମାଳଶ୍ରୀ ନାରାୟଣୀ ଗଉଡ଼ୀ ମଙ୍ଗଳବରାଡ଼ି ମାଳବ ଗଉଡ଼ ରଙ୍ଗେ ଭାବି
ନାଗବଲ୍ଲୀ କର୍ଣ୍ଣାଟୀ ଗୁର୍ଜ୍ଜରୀ ଭୂପାଳ
ମହ୍ଲାର ଅମର ରଙ୍ଗେଣ ହିନ୍ଦୋଳ । ୨୩ ।
ସାମଳା ଟୋଡ଼ି ବିଭାସ ବିଚିତ୍ର ଦେଷୀ ବଙ୍ଗଳାଶ୍ରୀ
ରାଗ ରାଜା ଧନାଶ୍ରୀ ଦେଷୀ ଦେଶାକ୍ଷ ଚନ୍ଦ୍ରା ମିଶି । ୨୪ ।
ଗୁର୍ଜ୍ଜରୀ ମହ୍ଲାର କଲ୍ୟାଣୀ ପଟହମଞ୍ଜରୀ
କାଶୀ କନଡ଼ା କୌଶିକ ଆଭିରୀ ଗୁଣ୍ଡକେରୀ । ୨୫ ।
କେଦାର ବସନ୍ତବରାଡ଼ି ମଧୁକେରୀ ଟୋଡ଼ି
ବଙ୍ଗାଳ ଶୈଖି ଆବର ପଞ୍ଚମବରାଡ଼ି । ୨୬ ।
ବିସ୍ତୃର ଗାୟେଣୀ ଶତେ କନ୍ୟାଂକର ମୂଳେ
ଖଟନ୍ତି ବିଳାସୁଣୀ ନୃତ୍ୟ ରଙ୍ଗରସ ଭୋଳେ । ୨୭ ।
ଗୁଣସାଗର ନାଥ ଭୋଳେଣ ମହାପ୍ରଭୁ
ଅସଂଖ୍ୟ ମହିମା ସଂକ୍ଷେପି କହିବ କାହୁଂ । ୨୮ ।
ଯାହାର ନୃତ୍ୟକୁ ଅବଧାରି ବ୍ରହ୍ମାଅର୍କେ
ମୋହିଲୁ ସଦାନନ୍ଦ ସ୍ୱାମୀ ଭଜିଲେ ନାଗଲୋକେ । ୨୯ ।
ଅନନ୍ତ ନାଗ ଇନ୍ଦ୍ରନାଥ ମେଖଳା ଶୋଭି କଟି
ନାଶିଲୁ ସର୍ବ ପାପ ହୃଦଗତେ ଘୋଷିଣ ତବ ନାମ ଗୋଟି । ୩୦ ।
ଶ୍ରୀ ବିଘ୍ନରାଜଂକ ଚରଣ ସେବା ମୋହୋର ହୃଦେ
ବଞ୍ଚିଲି କୃତାନ୍ତକ ଭୟରୁ ନାଥ ତୋହୋର ପରସାଦେ । ୩୧ ।
ମନ୍ମଥ ସୁନ୍ଦର ମିଳେନ୍ଦୀ ଯାର ବର୍ଣ୍ଣ
ଦର୍ଶନେ ହରଇ ସକଳ ବିଘ୍ନମାନ । ୩୨ ।

---

୨୧।୧ ସରଗୁଣା—ଏକ ପ୍ରକାର ବୀଣା, ବାଦ୍ୟଯନ୍ତ୍ର ବିଶେଷ ।
୨୧।୧ ଅଧାଟି—କାଠ ତାଳକା ବା ରାମତାଳି ପରି ଏକ ପ୍ରକାର ବାଦ୍ୟ ।

# ଶିବ ଓ ବିଷ୍ଣୁଙ୍କର ସ୍ତବ

ଜୟ ଜୟ ନାଥ କାମେଶ ମୋହନ ମନସିଜ
ବିଢଂସିତ କମଳ ବିରଜଇ ଯାହାର ପାଦ ପଂକଜ । ୧ ।
ଯୋଗେ ଯୋଗେଶ୍ୱର ତୁ ପ୍ରସନ୍ନେ ପରମ ରୂପ
ହେଲେ ନିବାରିଲୁ କୃତାନ୍ତକ ଦର୍ପ । ୨ ।
ପଣ୍ଡିତ ଜନଂକର ହୃଦେ ତୁ କମଳ ପୁଷ୍ପମାଳ
ସୁରସିଦ୍ଧ ମୁନି ମେଳେ ଶୋଭିତ କପାଳୀ । ୩ ।
ତୁ ଦେବ ସମୂଳ ଜୀବର ଚିନ୍ତାମଣି
ତୋ ପାଦ ପଂକଜେ ଭଜନ୍ତି ପଶୁପାଣି । ୪ ।
ବିରଞ୍ଚି ବଲ୍ଲଭ ପରମ ଯୋଗେଶ୍ୱର
ମମ ମନ ରହୁ ତୋ ଚରଣ କମଳ । ୫ ।
ଅକାମ ଅକାଳ ଅମୋହ ଜଳ ଫାଶୀ
ସେମ୍ଭୁ ଉଦ୍ଧର ମୋତେ ମୁକ୍ତି ପଥ ଦେସି । ୬ ।
ଅପଣ୍ଡିତ ମୂର୍ଖ ମୁଂ ନୁହଇ ବଡ ଗ୍ୟାଂତା
ଶ୍ରୀ ପୁରୁଷୋତ୍ତମ ନାମ ମୁଂ ଧ୍ୟାନେଣ ଭଗତା । ୭ ।
କାଳନ୍ଦୀ କମଳ ପ୍ରାୟେ ବିକଚ ମୁଖ ଗୋଟି
ଇହଜନ୍ମ ଭବେ ମୁଂ ପାଇବିକି ଭେଟି । ୮ ।
ଭାରଥୀର ବଲ୍ଲଭ କମଳାର ପ୍ରାଣବନ୍ଧୁ
ସଂସାର ଅନ୍ଧକାରେ ତୁମ୍ଭେ ଅଟ ଇନ୍ଦୁ । ୯ ।
ଦଇବକୀ ନନ୍ଦନ ଯଶୋଦା ପ୍ରତିପାଳ
ଅଷ୍ଟମଲ୍ଲ ନିଶୋଧନ ନାମ ତୋ ବନମାଳୀ । ୧୦ ।
ବାମ କରେ କମ୍ବୁ ଦକ୍ଷିଣେ ସୁଦର୍ଶନ
ନର୍କ ତାରଣ ନାଥ ନାମ ତୋ ଜନାର୍ଦ୍ଦନ । ୧୧ ।

---

୩।୧ ସୁରସିଦ୍ଧ ତୋତେ ସମ୍ଭଳେ ବସି ଭଳ । (ଙ୍, ଅ, ନ)
୪।୧ ତୁ ଦେବ ଯୋଗୀଜନ (ଜଗୁଜନ) ସୋଦର ଚିନ୍ତାମଣି । (କ, ଙ)
୪।୧ ସମୂଳ—ସକଳ । ୪।୨ ପଶୁପାଣି—ମହାଦେବ ।
୧୦।୨ ଦଇବକୀ—ଦେବକୀ ।

ଯମନକ ତୀର୍ଥେ ଭେଟିଲି ମୁଂ ତୋତେ
ସଦୟେ ତୁ ନାଥ ଅନୁଗ୍ରହ କର ମୋତେ । ୧୨ ।
କଂସ କେଶୀ ନିଶୋଧନ କାଳଦମନ ନାରକା
ଯାମଳା ଅର୍ଜୁନ ଶକଟା ଷଣ୍ଢ଼ ମାଇଲୁ ଦେବ ବକା । ୧୩ ।
ଅନାଦ୍ୟ ଯୋଗାଦ୍ୟ ଯେ ସମସ୍ତ ଅସଙ୍ଖା
କଉମୋଦୀକର ନାଥ କୃତାନ୍ତେକ ଦର୍ପ ଟଙ୍କା । ୧୪ ।
ଜଗତ ଜନ ରକ୍ଷଣେ ଜଗନ୍ନାଥ ଯାହାର ନାମ
ପରମ ଯୋଗେଶ୍ୱର ତୁ ପୁରୁଷଂକ ଉତ୍ତମ । ୧୫ ।
ଅମାନ୍ତ ସଂସାର ନାଥ ନ ଗଲା ମୋତେ ଥଳ
ଶ୍ରୀ ପୁରୁଷୋତ୍ତମ ନାମ ଗୋଟି ମୋ ହୃଦେ କମଳ ମାଳ । ୧୬ ।
ତୁଳସୀର ବଲ୍ଲଭ ନାଥ ଚରଣେ ମୁହିଂ ନିତ୍ୟେ ସେବି
ବଦପୁଷ୍ପ ଶୂଦ୍ରମୁନି ସାରଳା ଦାସ କବି । ୧୭—୪୯ ।



## ଶାରଳାଙ୍କ ବନ୍ଦନା

କୃପାଜଳ ଋଷିଂକର କୋଳେଣ ଉତପତ୍ତି
ସତ୍ୟଯୁଗେ ନାମ ଯାର ନର୍ମଦା ସରସ୍ୱତୀ । ୧ ।
କଳିକାଳ ଧଂସିନୀ ଗୋ ଜଙ୍ଘେରପୁର ବାସୀ
ଜନ୍ମେ ଜନ୍ମେ ତବ ଚରଣେ ମୁହିଂ ଯେ ଅଭ୍ୟାସି । ୨ ।
ଯମଦଗ୍ନିର ନନ୍ଦନ ପ୍ରଶୁରାମ ତୋତେ ପୂଜି
ସତ୍ୟ ଯୁଗେ ପୂଜିଲା ତୋତେ ଅଜପତି ମହାରାଜି । ୩ ।
ପର ଦୁଃଖେ କାତର ଗୋ ଅନୁବ୍ରତେ ମତ୍ତଭୋଳ
ସଂସାର କଉତୁକେ ତୁ ବାଳୁତ ରୂପେ ଖେଳ । ୪ ।

---

୧୨ { ମଉଦାଧି ତୀର୍ଥେ ଭେଟିଲି ମୁଂ ତୋତେ
ତୋ ପାଦକୁ ଧ୍ୟାୟେ କରିଅଛଇ ଅବିରତେ । (ଥ)

୧୭ { ତୁଳସୀର ବଲ୍ଲଭ ଚରଣେ ମୋର ସେବା
ସାରଳା ଦାସକୁ ପ୍ରସନ୍ନେ ବର ଦେବା । (ଧ)

ନାହିଂ ନୋହିଂଲ୍କ ନୋହିବ ଦାମ୍ମ ଯେ ଶୃଣ୍ଯୁଗେ
ଦାଶଦ୍ଦ୍ୱନାଶିମ୍ମ ବର ଦେଇ ଗୋ ତିନ ସ୍ୱର୍ଗେ । ୫ ।
ତିଳ ଅର୍ଦ୍ଧେ ତବ ନାମ କହିଲ ମୋହୋର ଗ୍ୟାନେ
ଖଣ୍ଡିବ ଦୁଷ୍କୃତ ମା ଗୋ ତୁମ୍ଭର ପରସନ୍ନେ । ୬ ।
ତବ ପାଦ ଉଦକ ଅବଂତେକ ମୋର ମାଥେ
ତେଣୁ କର ଭକଲ ମୁଂ ମମ କାର୍ଯ୍ୟ ଅର୍ଥେ । ୭ ।
ଆଦ୍ୟ ମଧ୍ୟ ଅବସାନ ଯାହାରନ୍ତି ନାହିଂ
ମୁଂ ତୋତେ ପାଇଲ ଗୋ ଜନ୍ମେ ଜନ୍ମେ ଧାହି । ୮ ।
ଶ୍ରୀ ଚଣ୍ଡୀ ସାରଳାଂକର ଶ୍ରୀ ଚରଣେ ଦଇମ୍ମ
ମୁକତିକ ଇଚ୍ଛିଲ୍ଲ ସାରଳା ଦାସ ମୁନ । ୯—୫୮ ।



## ଦୁର୍ଯ୍ୟୋଧନ ଭୀଷ୍ମଙ୍କୁ ସେନାପତି ପଦେ ବରଣ କରିବା

ଯେବେଥୁ ଅନନ୍ତରେ ରାଜା ବଇବସୁତ ମନୁ
ପାଦାର୍ଘ୍ୟେଣ ପୂଜିଲ ବ୍ରହ୍ମବେତ୍ତା ତନୁ । ୧ ।
ସାଧୁ ମହାତମା ସେ ପଣ୍ଡିତ ଅଗସ୍ତି
ମହା ବ୍ରହ୍ମବେତ୍ତା ଶୂନ୍ୟେଣ ଉତପତି । ୨ ।
ଅପାର ମହିଂମା ଦେଖିଲ ପୟୋଧି
ଯେବେ ମୋହଜଳ ସାଗରୁ ତରିବାକୁ ମୋର ବୁଦ୍ଧି । ୩ ।
ଯେବେ ମହାଭାରଥ ପ୍ରଥମ ଯୁଦ୍ଧ ମଧେ
କେ ସେନାପତି ହେଲେ କହିବାକ ସାଧେ । ୪ ।
ଯେବେହା ବସ୍ତାର ମୋତେ କହିବା ଅଗସ୍ତି ହେ
ଲଭିବ ପରମ ଗତି ଶୁଣି ପୁରାଣ ସନ୍ଦେହେ । ୫ ।

---

୫।୨ ତୋତେ ନାରାୟଣୀ ଗୋ ଭେଟିଲ ମଧ୍ୟ ସ୍ୱର୍ଗେ (ଖ)

୬।୨ ତେଣୁ କର ଚିତ୍ତ ମୋର ନ ବଳିଲ ଆନେ । (ଖ, ଘ, ଙ)

୩।୧ ପୟୋଧି—ଜଳଧି, ସମୁଦ୍ର, ମେଘ । ୮।୨ ଧାହି—ଧ୍ୟାୟି ।

ଅଗସ୍ତି ବୋଇଲେ ରଜା ଶୁଣିମା ସାବଧାନେ
ସମରକଇ ଇଚ୍ଛା କଲା ରଜା ଦୁର୍ଯୋଧନେ । ୬ ।
ମକର ଶୁକ୍ଳଲ ପକ୍ଷ ଚଉଠି ଗୁରୁବାର
ଉତ୍ତରଭ୍ରେଦୋ ନକ୍ଷତ୍ର ଭୋଗ ସେ ଦିନର । ୭ ।
ବିଷ୍ଟି ନାମେ କରଣ ସିଦ୍ଧି ନାମେ ଯୋଗ
ମିଥୁନ ରାଶିରେ ବୃହସ୍ପତି କରେ ଭୋଗ । ୮ ।
ବିଜୟେ ମାନଗୋବିନ୍ଦ ଯେ ଇନ୍ଦ୍ରପ୍ରସ୍ଥ ଆସ୍ଥାନେ
ସମ୍ମୁଖେ ବସିଅଛନ୍ତି ସର୍ବ ସେନାପତିମାନେ । ୯ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଭୂରିସର୍ବା ଶଇଲ
କୃପ ଅଶ୍ୱତ୍ଥାମା ସୋମଦତ୍ତ ବାହ୍ଲିକ ମହାମଲ୍ଲ । ୧୦ ।
ଧୁଃଶାସନ ଶକୁନି ଯେ ଜୟଦ୍ରଥ ସହିତେ
ମହାରେଣ ରଣଜିତା ଦ୍ୱାଦଶ ସେନାପତେ୍ୟ । ୧୧ ।
ମହା ମହା ଶକତା ଯେ ଦ୍ୱାଦଶ ସେନାପତି
ସମରେ ପଶିଲେ ଯାହାକୁ ଯମ କରେ ଭ୍ରାନ୍ତି । ୧୨ ।
ଭୀଷ୍ମେ ଅଛନ୍ତି ସେ ଯେ ପୃଥୀଭେଦୀ
ପୃଥୀରେ ଥିଲେ ଅଦୃଷ୍ଟିକ ଅବଶ୍ୟ ପାରନ୍ତି ସେ ଛେଦି । ୧୩ ।
ଶଲ୍ୟ ମହାରାଣ ଅଟନ୍ତି ଶବଦ ଭେଦୀ
ଶବଦକୁ ଭେଦୀ ସେ ପାରନ୍ତି ଶିର ଛେଦି । ୧୪ ।
ସୁନ୍ଦର ସୁକୁମାର ବୀରରାଇ ମଲ୍ଲ କର୍ଣ୍ଣ
ଦୃଷ୍ଟିଭେଦୀ ତାର ନାରାଚ ନୋହେ ଶୂନ୍ୟ । ୧୫ ।
ଭୂରିସର୍ବା ବୋଲି ଅଟନ୍ତି ନାମଭେଦୀ
ନାମ ଜାଣି ବିନ୍ଧିଲେ ପାରଇ ଶିର ଛେଦି । ୧୬ ।
ଅସଂଖ୍ୟ ଅଗୋଚର ଦ୍ରୋଣଂକର ମହିମା
ବ୍ରହ୍ମାଣ୍ଡ ଭେଦୀ ପାରନ୍ତି ସେ କ୍ଷତ୍ରିୟ ମହାତମା । ୧୭ ।

---

୧୩।୨ ଶବ୍ଦକୁ ଭେଦୀ ସେ ପାରନ୍ତି ତାହା ଛେଦି । ( ବହୁପାଠ )

୭।୨ ଉତ୍ତର ଭୋଦ—ଉତ୍ତର ଭାଦ୍ରବ ।

ଦଗ ଭେଦି ପୁଣ ପାରଇ ସୋମଦତ୍ତେ
ଯେତେକ ନାଗଜନକେ ବ୍ୟାପି ପାରଇ ଜଗତେ । ୧୮ ।
ଦ୍ରୋଣଂକର ନନ୍ଦନ ଅଟନ୍ତି ଅଶ୍ୱତ୍ଥମା
ତ୍ରଇଲୋକ୍ୟ ଭେଦି ପାରେ ସେ କ୍ଷତ୍ରିୟ ମହାତମା । । ୧୯ ।
ବାହ୍ଲିକ ବୋଲି ଯେ କ୍ଷତ୍ରିୟ ମହାରଥୀ
ମେଘମାନେ ଲୁଚିଥିଲେ ଭେଦି ସେ ପାରନ୍ତି । ୨୦ ।
କୃପାଚାର୍ଯ୍ୟଂକ ମହିମା ଅଟି ଅଗୋଚର
ଧନୁ ଧଇଲେ କମ୍ପନ୍ତି ନାଗ ସୁରାସୁର । ୨୧ ।
ଧୃଷ୍ଟାସନ ଗଗନଭେଦି ଦୃଢ଼ଦକ୍ଷ ପାତାଳଭେଦି
କ୍ଷତ୍ରଂକର ମଧ୍ୟେ ଅଟନ୍ତି ମହାଯୋଧି । ୨୨ ।
ଯେ ଯୋଦ୍ଧାମାନନ୍ତ ସମସ୍ତ ବସାଇ
ଉଭା କୁରୁନାଥ ଯେ କରେ ଅର୍ଘ୍ୟ ଲଇ । ୨୩ ।
ମୁକୁଟ ଗୋଟିଏ ଜୟମାଳା ଯେ ଗୋଟିଏ
ଅର୍ଘ୍ୟଥାଳୀ ଗୋଟିଏ ଯେ ଖଡ୍ଗ ଗୋଟାଏ । ୨୪ ।
ସୁବର୍ଣ୍ଣ ପାତେ ଯେ ପୂରେଇ ଯେମାନ
ଉଭା କୁରୁନାଥ ସଭା ମଧ୍ୟସ୍ଥାନ । ୨୫ ।
ଷାଠିଏ ସହସ୍ର ଦେଶର ଅଛନ୍ତି ଦଣ୍ଡଧାରୀ
ଯେହାଂକର ପାଦ ଅମନାତ୍ୟ ଯୋଦ୍ଧା ଆଦି କରି । ୨୬ ।
ଯେସନ ସମୟେ ଆସ୍ଥାନ ବିଚଳ ଶୁଭବେଳେ
ମାନଗୋବିନ୍ଦ ଅର୍ଘ୍ୟ ଖଡ୍ଗ ଥୋଇଲାକ ତଳେ । ୨୭ ।
ବୋଲେ ତୁମ୍ଭେ ଅନେକ ଦେଶର ରଥୀ ମହାରଥୀ
ଅନେକ ଦେଶର ବସିଅଛ ଅଷ୍ଟାଦଶ ବଂଶ ନୃପତି । ୨୮ ।

---

୧୮।୨ { ଯେତେକ ନାଗଜନକେ ଭେଦନ୍ତି ଦଗଂକର ଧିର ଯେତେ । (ଟ,ଓ,ଢ,ଥ,କ,ନ)
{ ଯେତେକ ନାଗଜନକେ ଭେଦନ୍ତି ଦ୍ୱୀପ ସାତେ ।(ଛ)

୨୦।୨ ଘୋର ମେଘକୁ ସେ ଛେଦିଣ ପାରନ୍ତି । (ଢ, ଥ, ଙ୍କ)

୨୪।୨ ଖଡ୍ଗ ଗୋଟାଏ ହାଥେ ଘେନି କୁରୁରାଏ । (କ, ଟ)

ସ୍ୱାମୀ କେ କେବଣ ବିଦ୍ୟାରେ ଅଟ ଯେ ନିର୍ଜିତ
ମୁଂ ନ ଜାଣଇ କେ ଅଟେ କେତେ ବଳବନ୍ତ । ୨୯ ।
କାହାର କେତେ ବିଦ୍ୟା ମୁହିଂ ଯେ ନ ଜାଣଇଂ
ତୁମ୍ଭନ୍ତ ବର ମୁଂ ଯେ ଆଣିଲ ଗୋସାଇଂ । ୩୦ ।
କରିବା କାରଣ ତୁମ୍ଭେ ସମସ୍ତ ମହାରାଜା
ମୋହୋର ଅଭିମାନ କରିବା ତୁମ୍ଭେ ତେଜ୍ୟା । ୩୧ ।
ମାନେ ମାନଗୋବିନ୍ଦ ନାମ ବହି ପାଣ୍ଡବେ ବିବାଦୀ
ଛତ୍ରୀବୃତେ ତାଂକୁ ମୁଂ ନ ପାରିଲ ସାଧି । ୩୨ ।
ନ ଦିଲଇଂ ସୀମାଭାଗ ନୋହିଲ ତାଂକୁ ପ୍ରୀତି
ସୋଦ୍‌ମା ପଣ ଗଲା କଲ ଅପକ୍ରୀତି । ୩୩ ।
ନଟପ୍ୟେ ବିବାଦେ ଯିଦ ମୋହୋର ବଢିଲା ମନୀଷା
ମୋହୋର ଦର୍ପ ନାହିଂ ମୁଂ ତୁମ୍ଭର ବାହାକୁ କରିଅଛୁ ଆଶା । ୩୪ ।
ଅନେକ ବୁଝାଇ କହିଲେ ଜଗନ୍ନାଥେ ମୋତେ ଭେଟି
ତାହାନ୍ତ ପ୍ରୀତି ନୋହିଲ ବଳରାମଂକ ପଦ୍ମପାଦେ ଥାଇ ଖଟି । ୩୫ ।
ଯେତେମାନେ ପାଣ୍ଡବେ ଯେ ଅଟନ୍ତି ବଳାବନ୍ତା
ଚତୁର୍ଦ୍ଦିଗେ ଚମକ ପଡଇ ଖ୍ୟାତ ତାହାଂକର ବାରତା । ୩୬ ।
କାଳେବର ଗଦା ଯେ ବହଇ ବୀର ଭୀମ
ହାଥେ ଶହସ୍ର ଧଇଲେ ଦଶ ଯୋଜନେ ହାସଇ ଦେଖି ଯମ । ୩୭ ।
ପ୍ୟେ ଜମ୍ବୋଦ୍ୱୀପରେ ତୁମ୍ଭେ ଅଟ ନରନାହା
ପଞ୍ଚାଳଦେଶେ ଦ୍ରୋପଦୀ ସପ୍ୟମ୍ବରେ କଲେ ଯାହା ଯାହା ତୁମ୍ଭେ
ଦେଖିଅଛ ତାହା । ୩୮ ।

---

୩୨।୨ ଛତ୍ରୀପଣେ ତାହାନ୍ତ ନୋହଇ ସମ୍ବାଦ । (କ, ଙ, ଝ, ଟ)
୩୫।୧ ଅଥବା ଅନେକ ମତେ ଜଗନ୍ନାଥଂକୁ ଭେଟି । ( କ, ଙ, ଝ, ଟ )
୩୬।୧ ପ୍ରତାପୀ ପାଣ୍ଡବେ ଯେ ଅଟନ୍ତି ବଳବନ୍ତା । (ଙ, ଥ, ଷ୍ଟ, ନ)
୩୬।୨ { ଚଉଦ ଭୁବନେ ବିଖ୍ୟାତ ତାହାଂକର ବାରତା । (ଘ, ଟ)
ଚୁରି ଦିଗେ ଚମକ ପଡଇ ବିଖ୍ୟାତ ତାହାଂକର କଥା । (ଙ, ଷ୍ଟ,ଥ,ନ)
୩୩।୨ ଅପକ୍ରୀତି—ଅପକୀର୍ତ୍ତି ।
୩୪।୧ ନଟପ୍ୟେ—ନଷ୍ଟପ୍ୟେ ।

ଅର୍ଜୁନର ମହିମା ଜାଣ ତ ପ୍ରତକ୍ଷେ
ମହାଲକ୍ଷ ଗ୍ରଧାଚକ୍ର ବନ୍ଧିଲା ବୀର ପାଥେ । ୩୯ ।
ନକୁଳର କରେ ଥିଲେ ନବନଶି କୋଣ୍ଡ
ମୁନେ ବସାଇ ପୃଥୀ କରଇ ହେଲେ ଛନ୍ଦ । ୪୦ ।
ସହଦେବ ମନ୍ତ୍ରୀପଣ ତ ସମସ୍ତେ ଅଛ ଜାଣି
ଭୂତ ଭବିଷ୍ୟତ କହେ ମନ୍ତ୍ରୀ ଚୂଡ଼ାମଣି । ୪୧ ।
କିସ ମହିମା କହିବ ସେ ରାଜସୂୟ ଯାଗ କାଳେ
ଦିଗ ବିଜେ କରି ସେ କାହାକୁ ନ ଗଞ୍ଜିଲେ ହେଲେ । ୪୨ ।
ଆବର ପ୍ରାଣୁଂ ଅଧିକ ତାଂକୁ ଦେଖନ୍ତି ବାସୁଦେବ
ତେଣୁ କରି ଜଗଜ୍ଜିତା ଅଟନ୍ତି ପାଣ୍ଡବ । ୪୩ ।
ଆଉମାନଂକରେ ନାହିଂନା ପିରୋଜନ
କେ ଯେତେ ସାମର୍ଥ ଅଛି ଜିଣିମାକୁ ହରି ଯେ ଅର୍ଜୁନ । ୪୪ ।
ନ ଜାଣେ ବଳ ବିଦ୍ୟା କାହାକୁ ନ ଚହ୍ନଇ
ମମ କାର୍ଯ୍ୟ ଅର୍ଥେ ତୁମ୍ଭଙ୍କୁ ବିନୋଧ୍ୟି ବୋଲଇଂ । ୪୫ ।
କେ ସାମରଥ ଅଛି ଜିଣିମାକୁ ହରି ଅର୍ଜୁନକୁ
ସେ ଖଡଗ ଗୋଟି ଉପରେ ହାଥ କରି ତୋଳ ଦିଅ ମୁକୁ । ୪୬ ।
ମୁଂ ତଳହାଥ କରି ଯେନମଇଂ ଦାନ
ତାହାର ବାହାକୁ ଆଶ୍ରେ କରିବ ମୁଂ ସର୍ବଦା ଯେ ଦିନ । ୪୭ ।
ମହାଭାରା ବଚନ ଯହୁଂ କହିଲା ମାନ ଯେ ଗୋବିନ୍ଦ
ସମସ୍ତ ରାଜା ଶୁଣି ହୋଇଲେ ତବଦ । ୪୮ ।
ମନେ ବିଚାରନ୍ତି କାହାର ଅଛି ଯେତେ ବିଦ୍ୟା
ହରି ଅରଜୁନ ଜିଣିମାକୁ କେହୁ ଅଛି ଯୋଧା । ୪୯ ।

---

୪୨।୧ ମୁଂ କିସ କହିବି ତାହାଂକ ମହିଂମା ।
ଜଣେ ଜଣେ ଅଟନ୍ତି କ୍ଷତ୍ରିସ୍ଥ ମହାତମା ।
ରାଜସୂୟ ଯାଗ ପାଇଂ ନିମନ୍ତ୍ରଣ ବେଳେ
କାହାକୁ ନ ସାଧିଲେ ସେ ମହୀମଣ୍ଡଳେ । (ଘ, ଛ, ଧ)
୪୪।୧ ପିରୋଜନ—ପ୍ରୟୋଜନ ।

ଦ୍ରୁଯୋଧନର ଏସନେକ ନିରାଧାର ବାକ୍ୟ ଶୁଣି
ସମସ୍ତେ ଆକାଶକୁ ଗୃହାନ୍ତି ପ୍ରେତପୁରୁଷ ଜାଣି । ୫୦ ।
ମାଳବ ଦେଶର ରାଜା ଯେହୁ କୃତବର୍ମା
ତାହାର ହାଥୀର ନାମ ଅଟଇ ଅଶ୍ୱତ୍ଥମା । ୫୧ ।
ସେ ରାଜା ବୋଇଲେ ଶୁଣ ହେ ଦ୍ରୁଯୋଧନ
ପାଣ୍ଡବନ୍ତ ଜିଣିମାକୁ ଏଥେ ଜଣେହେଁ ନାହାଁନା ସର୍ଜନ । ୫୨ ।
ଯେତେକ ନୃପତି ତୁ ନିମନ୍ତ୍ରିଅଛୁ ଆଣି
ସମସ୍ତେ ନ ପାରନ୍ତି ଏକା ସହଦେବକୁ ଜିଣି । ୫୩ ।
ତୁ ଅବା ବୋଇବୁ ବଳ ବୀର୍ଯ୍ୟ ଯେବେ ହୀନ
କମ୍ପୁତ କାରଣେ ଏଥକୁ କଲ ଆଗମନ । ୫୪ ।
ଶ୍ରୀକୃଷ୍ଣ ସାରଥି ପାର୍ଥର ନନ୍ଦିଘୋଷ ରଥେ
ସମସ୍ତେ ଅଇଲୁ ଆମ୍ଭେ କୃଷ୍ଣନ୍ତ ଦେଖିବା ନିମନ୍ତେ । ୫୫ ।
ପାଣ୍ଡବନ୍ତ ଜିଣି କି ତୋତେ ଆମ୍ଭେ ରାଜ୍ୟ ଦେବୁଁ
ଏ କଥା କଦାଚତେ ନୋହଇଟି ବାବୁ । ୫୬ ।
ବହୁତ ଶୃଗାଳ ହୋଇବେ ଯେବେ ମେଳ
ଏକା ବ୍ୟାଘ ଆଗକୁ ସେ ଭରସି ନୁଆର । ୫୭ ।
ବହୁତ ବ୍ୟାଘ ଯେବେ ହୋଇବେକ ରୁଣ୍ଡ
ସିଂଘକୁ ଦେଖିଲେ ନ ଚଳଇ ତାହାଙ୍କର ପିଣ୍ଡ । ୫୮ ।
ଆମ୍ଭର ବେଳେ କରି ନ ପାରୁଂ ତୋତେ ରକ୍ଷା
ହର ଅର୍ଜୁନ ହାଥେ ଭାରଥ ଯୁଦ୍ଧେ ଅଛି ସବୁରି ମୃତ୍ୟୁ ବାଞ୍ଛା । ୫୯ ।
ଯୁଝିବୁଂ ପଡିବୁ ଆମ୍ଭେ ଏ ମହାଭାରଥ ସମରେ
ଶଙ୍ଖ ଚକ୍ର ଚିହ୍ନ ଦେଖି ଲଭିବୁଂ କୃଷ୍ଣର ଅଙ୍ଗରେ । ୬୦ ।
ଆହୋ ଦ୍ରୁଯୋଧନ ମେରୁ ଟଳିବାକୁ କେ ଅଟଇ ସାମରଥ
ସେହୁ ସେ ହୋଇବ ନା ପାଣ୍ଡବନ୍ତ ଜିଣନ୍ତା । ୬୧ ।

---

୫୭।୧ { ବହୁତ ଶୃଗାଳ ହୋଇବେ ଯେବେ ମେଳ ।
{ ସିଂହର ଗ୍ରୁମୁରେ କି ପାରଇ କେ ମିଳି । (ଚ, ଧ)

୬୦।୨ ଶଙ୍ଖ ଚକ୍ର ଚିହ୍ନ ଦେଖିବୁ ବାସୁଦେବଙ୍କୁ ନୟନରେ । (କ, ଥ, ଓ)

ଆମ୍ଭର ବାହାକୁ ଯେବେ ନରସ୍ୱେ ତୋର ଆଶ
ସ୍ୱେ ସମରରୁ ସୁସ୍ଥ ତୋତେ ହୋଇବ ବନବାସ । ୭୨ ।
ସମସ୍ତ ରାଜାସ୍ୱେ ବୋଇଲେ କୃତବର୍ମାସ୍ୱେ ସାଧୁ ସାଧୁ
ନବାଗିଣ କହିଲ ଯେ ଗୁଡ଼ଣ ଉପ୍ରୋଧୁଂ । ୭୩ ।
ସବୁରି ହୃଦୟରେ ଯୋଗାଇଲ କଥା ଗୋଟି
କୃତବର୍ମା ଯାହା କହିଲେ ଆମ୍ଭର ସନମତ ହେଟି । ୭୪ ।
ରାଜାସ୍ୱେ ବୋଇଲେ ପାଣ୍ଡବଂକର ଆଗ୍ରେ ବଡ ମେରୁ
ଖିନ୍ନ ମେରୁମାନନ୍ତ ତୁ କମ୍ପାଇଂ ଆଗ୍ରେ କରୁ । ୭୫ ।
ରାଜାଂକ ବଚନେ ଯେ ହରସ ଧୃତରାଷ୍ଟ୍ରି
ତାହା ଜାଣି ଆସ୍ଥାନରୁ ଗଙ୍ଗାଂକ ନନ୍ଦନ ଭୀଷ୍ମ ହେବେ ଉଠି । ୭୬ ।
କରେଣ ଗାଙ୍ଗେବ ଘେନଲେ ଭୂମିରୁ ତୋଳଣ ଖଡ୍ଗ
ଘେନ ହୋ ମାନଗୋବିନ୍ଦ ଯାହା ଇଚ୍ଛା ମାଗ । ୭୭ ।
ମାନଗୋବିନ୍ଦ ବୋଇଲ ଚନ୍ଦ୍ରଲ ଯାହା ହୃଦେ
ପାଇଲି ପରମଗତି ଭୀଷ୍ମଂକ ପରସାଦେ । ୭୮ ।
ମହା ସଂକଳ୍ପ କରି ଭୀଷ୍ମ ମହାବଳୀ
ସତ୍ୟ ସତ୍ୟ ବାକ୍ୟେ ଯେ ଖଡଗ ହାଲେ ତୋଳି । ୭୯ ।
ତଳହାଥେ ଘେନଲ ତା ମାନଚକ୍ରବର୍ତ୍ତୀ
ହରି ଅର୍ଜୁନ ମାରଣ ମୋତେ ଦେବୁ ଯେ ଦୁହିଂନ୍ତ୍ର । ୭୦ ।
ଭୀଷ୍ମେ ବୋଇଲେ ଆସ୍ମୁଂ ଅକଣ୍ଟକେ କର ରାଜ୍ୟ
ଗୁଞ୍ଜଗଲ ଦେଶେ ରାଜ ଅଇଶ୍ୱର୍ଯ୍ୟ ଭୁଞ୍ଜ । ୭୧ ।
ମାରିବଇଂ ସମରେଣ ହରି ଅର୍ଜୁନ ବେନ
କଉରେବ ବଲେ ଶୁଭେ ସାଧୁ ସାଧୁ ଧ୍ୱନ । ୭୨ ।
ଦୁର୍ଯୋଧନ ବୋଇଲ ତୁହି ସେ ମୋର ଗୁରୁ
ଇନ୍ଦ୍ର ଶଂକା କରେଟି ଯାହାର ଧନୁ ଧରୁ । ୭୩ ।
ତୁହି ଯେ ପିତାମହ ଗୁରୁ ପରମ ଗୁରୁ ଉପର ବଂଶେ ।
କାଳେ ପାଣ୍ଡବନ୍ତ ନ ପୁଣ ଉପ୍ରୋଧ କରୁ ବଶେ । ୭୪ ।

---

୭୨। ସ୍ୱେ ସମସ୍ୱେ ସୁଙ୍କ ରହୁ ତୁ କର ଯା ବନବାସ । (ଙ, ଥ, ଔ, ନ)

ଅସଂଖ୍ୟ ମହିମା ତୋର ଅଟେ ବାହୁବଳ
ଯେସନେକ ସିନ୍ଧୁ ନ ଲଙ୍ଘଇ କୂଳ । ୭୫ ।
କ୍ଷୀରୋଦ ଲଙ୍ଘିଲେ କୂଳ ରହିବଟି କାହିଁ ।
ଭୀଷ୍ମଙ୍କ ଶର ପେଷିଲେ ଦେବ ଦାନବେ ନ ବ୍ରତଇ । ୭୬ ।
ବହୁତ ପୁରସର କହିଲା କୁରୁପତି
ଭୀଷ୍ମଙ୍କ ଶିରେ ମୁକୁଟ ବାନ୍ଧିଲା ତତକ୍ଷଣାନ୍ତ । ୭୭ ।
ପାଞ୍ଚକୋଟି ରତ୍ନ ଘେନିଣ ଶ୍ରୀହସ୍ତେ
କଣପୂ ବୃଷ୍ଟି କଲେ ଭୀଷ୍ମଙ୍କର ମାଥେ । ୭୮ ।
ତାଡ ତୋଡର ବାହୁଟି ଜଗଦଳା
ଶିରେ ସୀମନ୍ତିମା ହୃଦରେ ରତ୍ନମାଳା । ୭୯ ।
ଖଦ ମୁଦ କଂକଣ ହାଥକୁ ସରଳ
ପାଦେଣ ନୂପୁର ଦଶଅବତାର ବକ୍ଷସ୍ଥଳ । ୮୦ ।
ପାଞ୍ଚବୃନ୍ଦ ରଥ ଯେ ମେବକ୍ଷେକ ହାଥୀ
ତେବନ ବୃନ୍ଦ ତୁରଙ୍ଗମ ଯେ ତିନ ସାଗର ପାଦାନ୍ତ । ୮୧ ।
ଲକ୍ଷେକ ପାଟଛତ୍ର ବେନି ଲକ୍ଷ ଆଲମ୍ବ
ପାଞ୍ଚଲକ୍ଷ ପଞ୍ଚୁଲକ୍ଷୀ ଅଶୁଆରି ସୈକସଙ୍ଗ । ୮୨ ।
ବୀର ତୂର ଟମକ ଢୋଲ ଦମାଲୁ ଦାଉଣ୍ଡି
ପଞ୍ଚାଶ କୋଟି ରତ୍ନ ନେଇ ଭୀଷ୍ମଙ୍କ ରଥ ମଣ୍ଡି । ୮୩ ।
ଅନେକ ଅଳଂକାର କଲା ରାଜା ମାନଗୋବିନ୍ଦ
ଅମରାଧିନାଥ କି ଖଜଯ୍ୟେ ଅସକନ୍ଦ । ୮୪ ।
ଦେବଙ୍କୁ ଦୁଲଭ ଯେ ଭୀଷ୍ମଙ୍କର ସମ୍ପ୍ରଧି
ବହୁତ ଖନୋସ୍ମୀ କହଇ ରାଜା ମାନଗୋବିନ୍ଦ । ୮୫ ।
ଭୀଷ୍ମଙ୍କର ଅଗ୍ରତେ ଯେ ଅନେକ ବାଦ୍ୟ ବାଜେ
ଆସ୍ତାନୁ ଓହ୍ଲାଇ ରାଜା ଭୀଷ୍ମଙ୍କ ଗ୍ରାମୁରେଣ ଖଜେ । ୮୬ ।

---

୭୬।୧ କ୍ଷୀରୋଦ ଲଙ୍ଘିଲେ ପୃଥୀ କାହିଁ ରହିଇ । (ଧ, ଟ)
୭୭।୧ ବହୁତ ପୁରୁଷାର୍ଥ କହିଲ କୁରୁପତି । (ଟ, ଘ)
୮୨।୨ ପାଞ୍ଚଲକ୍ଷ ଶଙ୍ଖ ଧ୍ୱନି ଗହଳ ବାଦ୍ୟ ରାବ । (ଥ, ଅ, ଙ, ନ)

୮୨।୨ ଅଶୁଆରି—ଅଶ୍ୱାରୋହୀ । ୮୪।୨ ଅସକନ୍ଦ—ଇନ୍ଦ୍ର

ଭୀଷ୍ମଙ୍କର ସମ୍ପୃଦ୍ଧି ଦେଖିଲେ ରାଜାମାନେ
ଅଶ୍ୱତ୍ଥମା ସହି ନ ପାରି ବୋଇଲେ କୋପମନେ । ୮୭ ।
ଆହେ। ଛୋଦୋର ପ୍ରାୟେ ରାଜା ହୋଇଣ ମାନଗୋବିନ୍ଦ
ସମସ୍ତ ଶୁଭ କଥା ଯେତେଠାରୁଂ କଲୁ ମନ୍ଦ । ୮୮ ।
ଶୁଭଯାତ୍ରା ଯୋଗେ ତୁ ଅଯାବିକଙ୍କୁ ବରିଲୁ ।
ଭୀଷ୍ମଙ୍କ ଶିରରେ କମ୍ପେ ମୁକୁଟ ବାନ୍ଧିଲୁ । ୮୯ ।
ମଙ୍କେ ଜାତ ହୋଇ ପୁତ୍ର ପତ୍ନୀ ଯାହାର ନାହିଂ
ପ୍ରଭାତ କାଳରେ ଯେହାର ବଦନ ନ ଗୃହ୍ନିଂ । ୯୦ ।
ପ୍ରଥମେ ମୁକୁଟ କମ୍ପେ ବାନ୍ଧିଲୁ ଭୀଷ୍ମଙ୍କୁ
ଅନୁକୂଳ ଭଗ୍ନ ରାଜା ହୋଇଲୁନି ତୁକୁ । ୯୧ ।
ମରଣକୁ ଆଶ କଲି ଯେ ଅପୁତ୍ରିକ ଦୋଷେ ।
ରଣ ଯଶ୍ୟଂ କରି ଯେବେ ସାଂଗ୍ରାମେ ଦେବ ଶ୍ୱାସେ । ୯୨ ।
ଯାତ୍ରା ଯୋଗେ ଅପୁତ୍ରିକର ଗୃହ୍ନିଂବ ଯେବେ ମୁଖ
କାର୍ଯ୍ୟ ନଅର୍ଥ ଅବଶ୍ୟ ପାଇବଟି ଦୁଃଖ । ୯୩ ।
ଶୁଣି ପ୍ରତିବାଚ ଦଅଇ ମାନ ଯେ ଗୋବିନ୍ଦ
ଆହେ। ଅଶ୍ୱତ୍ଥମା ତୁ ବାଳୁତ କାଳୁ ମନ୍ଦ । ୯୪ ।
ଶାନ୍ତନୁ ନନ୍ଦନ ଯେ ଗଙ୍ଗାର ତନୟେ
ଇଚ୍ଛା ମୃତ୍ୟୁ ଯାହାର ଜନ୍ମେଣ ଅଭୟେ । ୯୫ ।
ତାହାଙ୍କୁ ନିନ୍ଦା କମ୍ପେ କରୁଅଛୁ ଦ୍ରୋଣୀ
ବ୍ରାହ୍ମଣ ହୋଇଣ ତୁ ଅମହତ ମନ୍ଦ ପ୍ରାଣୀ । ୯୬ ।
ତ୍ରଇଲୋକ୍ୟ ମଧ୍ୟେ ପଡ଼ଇ ଯାହାର କଥା
ପ୍ରଶୁରାମଙ୍କୁ ଜିଣିମାକୁ ଯେହୁ ସାମରଥା । ୯୭ ।
ନିରଯ୍ୟେ କରି ଯେହୁ ଯେବେ କରିବେ ସାଂଗ୍ରାମ
କାଳଦଣ୍ଡ ତେଜ୍ୟା କରି ନାସିବେଟି ଦେବ ଯମ । ୯୮ ।
ଦ୍ରୋଣେ ବୋଇଲେ ଅଶ୍ୱତ୍ଥମା ନ ଜାଣୁ ତୁ କିଛୁ
ଯେବେ ମାନଗୋବିନ୍ଦର ନିଚଳ ହେଲା ଲଚ୍ଛି । ୯୯ ।

---

୯୯।୨ ଲଚ୍ଛି—ଲକ୍ଷ୍ମୀ ୯୯।୨ ନିଚଳ—ନିଶ୍ଚଳ ।

ଭୀଷ୍ମେ ସେନାପତି ହୋଇଲେ ଯେତେବେଳେ
ଯେବେ ସେ ମାନଗୋବିନ୍ଦ ରାଜ୍ୟ କରିବ ନିଚଳେ । ୧୦୦ ।
ଶୁଣ ହୋ କଉରବେ ବୋଲନ୍ତି ଭୂରିସବା
ନ ପାରିଲେ କି ପ୍ରତିଗ୍ୟାଂ କରନ୍ତେ ଭୀଷ୍ମଦେବା । ୧୦୧ ।
ଜଗନ୍ନାଥଂକୁ ଜିଣିମାକୁ ଭରସା ଯାହାର ଅଛି
ସେହୁ ଷରଥ ସମରକୁ ପାରଇ ନା ଗଚ୍ଛି । ୧୦୨
ଯେଉଂଣ ଦିନ ସଭାରେ କୃଷ୍ଣ ହୋଇଲେ ବିଶ୍ୱମୂରତି
ସେ ଦିନୁଂ ଆମ୍ଭର ମନେ ବସିଲା ବଡ ଭୀତି । ୧୦୩ ।
ପାଣ୍ଡବଂକ ସଖା ଯେ ତ୍ରଇଲୋକ୍ୟ ନାରାୟଣ
ଶ୍ରୀହରିର ହାଥେ ଯେ ଧରଥ ନିବାରଣ । ୧୦୪ ।
ନୃସିଂହ ମୂରତି ଧଇଲେ ଯେତେବେଳେ
ଦେଖିଣ ତ୍ରାସ କଲେ ଶୂନ୍ୟେଣ ଦିଗପାଳେ । ୧୦୫–୧୬୩ ।



## ପ୍ରହ୍ଲାଦ ଚରିତ

ଶୁଣ ହୋ ସାବଧାନେ ବହୁତ କାଳର କଥା
ହିରଣ୍ୟ ନାମେଣ ସତ୍ୟ ଯୁଗର ବାରତା । ୧ ।
ମହାପ୍ରତାପୀ ସେ ହିରଣ୍ୟକଶିପୁ
ତପେଣ ତୋଷ କଲା ଦେବ କୁଶକେତୁ । ୨ ।
ମହା କଷ୍ଟୋର ଦେଖି ପ୍ରସନ୍ନ ବେଦବର
ବୋଇଲେ ବର ମାଗ ଯେତ୍ତୁ ମନୋବାଞ୍ଛା ତୋହୋର । ୩ ।
ହିରଣ୍ୟ ବୋଇଲା ମୁଂ ହୋଇବି ଅମର
ବଜ୍ରରୁ ଅଣ୍ଟ ମୋର ହୋଇବ ଶରୀର । ୪ ।
ଭୂମିରେ ନ ମରିବି ଶୂନ୍ୟରେ ନ ମରିବି
ଜଳରେ ନ ବୁଡ଼ିବି ଅନଳେ ନ ପୋଡ଼ିବି । ୫ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ମୁଂ ହୋଇବି ମହାରାଜା
ଗଣ ଗନ୍ଧର୍ବ ଦେବତା କରିବେ ପାଦପୂଜା । ୬ ।

ଏମନ୍ତେ ଅନେକ ବର ମାଗିଲା ନିଶାଚର
ଅସ୍ତୁ ହୋଉ ବୋଲଣ ବୋଇଲେ ବେଦବର । ୭ ।
ଏମନ୍ତେ ବର ଦେଇ ଗଲେ କୁଶକେତୁ
ନବ ଲକ୍ଷ ଯୋଜନ ବ୍ୟାପିଲା ତାର ବପୁ । ୮ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଜିଣିଲା ଏକା ଜଣେ
ବ୍ରହ୍ମା ବିଷ୍ଣୁ ରୁଦ୍ର ଇନ୍ଦ୍ର ନୋହିଲେ ତାକୁ ସମ ରଣେ । ୯ ।
ଏମନ୍ତେ ସେବା କଲେ ଅନେକ ଦୈତ୍ୟଗଣ
ତ୍ରିଭୁବନ ସମ୍ପଦ ଭୁଞ୍ଜଇ ଦୈତ୍ୟଗଣ । ୧୦ ।
ସ୍ୱର୍ଗରେ ଦେବତାଗଣେ ହୋଇଲେ ନିରେଖ
ବିଧାତାକୁ ଜଣାଇଲେ ରଖ ଚତୁର୍ମୁଖ । ୧୧ ।
ସକଳ ସୁରଗଣ ବିଧାତା ଘେନିଣ ତୁଲେ
କ୍ଷୀରାର୍ଣ୍ଣବ ତଟେ ଯାଇଂ ବିଷ୍ଣୁଙ୍କୁ ସ୍ତୁତି କଲେ । ୧୨ ।
ଜୟ ତୁ ନାରାୟଣ ଅବ୍ୟକ୍ତ ବିଷ୍ଣୁମୂର୍ତ୍ତି
ତୋହୋର ଗର୍ଭେ ଦେବ ସକଳ ବ୍ରହ୍ମାଣ୍ଡ ଥିତି । ୧୩ ।
ନମସ୍ତେ ନାରାୟଣ ଅଖିଳ ବିଶ୍ୱବାସୀ
ନମସ୍ତେ ନାରାୟଣ ଦନୁଜ କଣ୍ଟକ ନାଶି । ୧୪ ।
ନମସ୍ତେ ନାରାୟଣ ଜଗତ ସମ୍ଭାଳଣ
ନମସ୍ତେ ନାରାୟଣ ସୟଳ ଧାରଣ । ୧୫ ।
ନମସ୍ତେ ନାରାୟଣ ଅଚିନ୍ତ୍ୟା ଚିନ୍ତାମଣି
ନମସ୍ତେ ନାରାୟଣ ଶଙ୍ଖ ଚକ୍ର ପାଣି । ୧୬ ।
ନମସ୍ତେ ନାରାୟଣ ନୀଳୋତ୍ପଳ ବର୍ଣ୍ଣ
ନମସ୍ତେ ନାରାୟଣ ପରମ କାରଣ । ୧୭ ।
ନମସ୍ତେ ନାରାୟଣ ଭକତ ଭାବଗ୍ରାହୀ
ନମସ୍ତେ ନାରାୟଣ ଅଶେଷ ଗୁଣଗ୍ରାହୀ । ୧୮ ।
ନମସ୍ତେ ନାରାୟଣ କମଳା ପ୍ରାଣବନ୍ଧୁ
ନମସ୍ତେ ନାରାୟଣ କୃପାଜଳ ସିନ୍ଧୁ । ୧୯ ।
ନମସ୍ତେ ନାରାୟଣ ମହାପ୍ରଳୟ ସଞ୍ଚା
ନମସ୍ତେ ନାରାୟଣ କାଳ କାମ ବଞ୍ଚା । ୨୦ ।

ନମସ୍ତେ ନାରାୟଣ ଅଖିଳ ଯୋଗେଶ୍ୱର
ନମସ୍ତେ ନାରାୟଣ ମହିମା ସାଗର ।୨୧।
ନମସ୍ତେ ନାରାୟଣ ପରମ ଦୟାଳୁ
ବିଧାତା ରୂପେ ସ୍ୱାମୀ ଯତ୍ନ ସୃଷ୍ଟି ପାଳ ।୨୨।
ବିଷ୍ଣୁ ରୂପେ ତୁମ୍ଭେ କର ଭାର ନାଶ
ରୁଦ୍ର ରୂପେ ପୁଣି ସଂହାରୁ ବିଶେଷ ।୨୩।
ଯେ ତିନି ରୂପ ତୋର ସମ୍ଭବ କଲେ କଲି
ଦୁଷ୍ଟଙ୍କ ନାଶ କରୁ ଅବନୀର ତାପେ ।୨୪।
ଯେବେ ଯେ ଦେବ ଆମ୍ଭଙ୍କୁ କରିବା କାରଣ
ସଞ୍ଚୟେ ନାଶଗଲୁ ସକଳ ଦେବଗଣ ।୨୫।
ତୋହୋର ସୃଷ୍ଟି ଯେବେ ଯେ ଦେବ ପ୍ରତିପାଳ
ଶୂଦ୍ରମୁନି ସାରଳା ଦାସ ସେବଇ ଆଦିମୂଳ ।୨୬।
ଦେବଗଣଙ୍କ ଆକୁଳେ ସ୍ୱାମୀ ନାରାୟଣ
ଅନନ୍ତ ଶଯ୍ୟାରୁ ଉଠି ଆରୋହି ସୁପର୍ଣ୍ଣ ।୨୭।
ଦେବଗଣଙ୍କ ସନ୍ନିଧେ ହୋଇଲେ ପ୍ରବେଶ
ଗୋଷ୍ଠି କରିଣ ଯେ ବସିଲେ ତ୍ରିଦଶ ।୨୮।
ପ୍ରଣିପତ୍ୟ ସୁରଗଣେ ଶ୍ରୀକୃଷ୍ଣ ପଦ୍ମପାୟେ
ଅନାଦି ବୋଇଲେ ତୁମ୍ଭେ କର୍ମେ କଲ ଧ୍ୟାୟେ ।୨୯।
ମାଥେ କର ନିବେଶିଣ କହନ୍ତି ବେଦପତି
ଦେବତାଙ୍କ ଆକୁଳ, ଆକୁଳ ବସୁମତୀ ।୩୦।
ହିରଣ୍ୟକଶିପୁ ଭୟେ ଦେବ ମହାଦୁଃଖୀ
ହୋଇଲେ ମହାକଷ୍ଟି ଅମର ଉପେକ୍ଷି ।୩୧।
ତୁ ଯେବେ ନାଶ କରିବୁ ଦାନବ ହିରଣ୍ୟ
କେମନ୍ତେ ରହିବୁ ଆମ୍ଭେ ସକଳ ଦେବଗଣ ।୩୨।
ଯାଗଯଜ୍ଞ ନୋହିଲା ଅନେକ ଅରିଷ୍ଟି
ଭିଲେଣ ସୁଫଳ ନ ଦିଶଇ ସୃଷ୍ଟି ।୩୩।

---

୨୭।୨ ସୁପର୍ଣ୍ଣ—ଗରୁଡ ।

ମହା ଅରିଷ୍ଟି ଯେବେ ବହିଲ କଉଣୋପ
ହେ ଦେବ ନାଶ କର ହିରଣ୍ୟର ଦର୍ପ । ୩୪ ।
ଅନେକ ସେବା ଯତ୍ନଂ କଷ୍ଟୋରେ କଲା ମୋତେ
ମୁହିଂ ତାହାକୁ ବର ଦେଲି ହେ ଦେବ ହେଳଚିତ୍ତେ । ୩୫ ।
ବଜ୍ରରେ ନିର୍ମିତ ଯେ ଅଟଇ ତାର ଅଙ୍ଗ
ମହୀମଣ୍ଡଳେ ଗଗନେ ନୋହିବ ମୃତ୍ୟୁଯୋଗ । ୩୬ ।
ହେ ଦେବ କଉଣୋପ କେମନ୍ତେ ହେବ କ୍ଷୟେ
ଯେଥକଇଂ ଆକୁଳ ସ୍ୱାମୀ ସକଳ ଦେବତାୟେ । ୩୭ ।
ଦେବେ ପ୍ରଣପତ୍ୟ ବିଷ୍ଣୁର ପାଦରେ
କରନ୍ତି ଗୁହାରି ସେ ସର୍ବେ ବାସୁଦେବଂକ ସନ୍ନିଧରେ । ୩୮ ।
ହିରଣ୍ୟକଶିପୁ ଡରେ ରହି ନୁଆରୁ ସ୍ୱର୍ଗପୁର
ତୁ ଦେବ ବିନାଶ କର ସେ ଦୁର୍ବାନ୍ତକ ଅସୁର । ୩୯ ।
ଦେବତାଂକ ବଚନେ କୋପକଲେ ଶ୍ରୀରଙ୍ଗ
ମାରିବ ମେ ଦଇତକୁ ତୁମ୍ଭେ ନୋହି ରଣଭଙ୍ଗ । ୪୦ ।
କାମଦେବେ ହକାରି ବୋଇଲେ ନାରାୟଣ
ବଇକୁଣ୍ଠ ତେଜ୍ୟା କରି ତୁ ଯାଅସି ଯେହିକ୍ଷଣ । ୪୧ ।
ତୁ ଯାଇଂ ଜନ୍ମିବୁ ହିରଣ୍ୟକଶିପୁର ଘରେ
ତୁହି ଜନମି ଦେବୁ ଫୁଲଙ୍କାର କୋଳରେ । ୪୨ ।
ନାରାୟଣଂକ ଆଜ୍ଞାଂ ପାଇ ସେ କାମଦେବ ଗଲା
ହିରଣ୍ୟକଶିପୁ ପୁରେ ପ୍ରବେଶ ହୋଇଲା । ୪୩ ।
ନାରାୟଣଂକ ଠାରୁ ଦେବେ ଯେମନ୍ତ ଶୁଣିଲେ
ତହୁଂ ସର୍ବେ ନିଜ ପୁରେ ଆନନ୍ଦେ ଚଳିଲେ । ୪୪ ।
ହିରଣ୍ୟକଶିପୁର ହାତସା ଫୁଲଜା
ନିର୍ମଳ ନିଚଳ ଆସନ ତାହାର ହାଦେ ଦେଖି । ୪୫ ।
ତାହାର ଗର୍ଭେ ଯାଇ ରହିଲା ଅନଙ୍ଗ
ପୁତ୍ରେକ ହୋଇ ସେ ଉତପତ୍ତି ହୋଇଲାକ ଅତି ବେଗ । ୪୬ ।

---

୪୫। ନିର୍ମଳ ନିଶ୍ଚଳ ମନ ଅସନ ତାହାର ହାଦେ ଦେଖି । (ଙ, ଅ, ନ)

ତୁଳ ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ଗୁରୁବାର
ଅଶ୍ୱିନୀ ନକ୍ଷତ୍ର ଯେ ଭୋଗ ସେ ଦିନର । ୪୭ ।
ବାଳବ ନାମେ କରଣ ବ୍ୟତିପାତ ନାମେ ଯୋଗ
ମେଷ ରାଶିରେ ଚନ୍ଦ୍ର ଦେବତାଂକର ଭୋଗ । ୪୮ ।
ଜନମିଲା କୁମର ଯେ ସୁକୁମାର ଅଙ୍ଗ
ଦେବକାର୍ଯ୍ୟ ନିମନ୍ତେ ଯେ ଜନ୍ମେ କାମଦେବ । ୪୯ ।
ଦେଖିଣ ସାନନ୍ଦ ଅସୁରକୁଳ ରାଜ
ସେ କୁମର ନାମ ଦେଲାକ ପ୍ରହ୍ଲାଦ । ୫୦ ।
ଅସୁରର ଅଂଶେ ଜନ୍ମ ହେଲା ବାଳ
ଜନ୍ମି ରବ କରି ବିଷ୍ଣୁ ନାମକୁ ଘୋଷିଲା । ୫୧ ।
ଜନ୍ମ ହୋଇ ଡାକ ଦିଅଇ କୁମର ମୟୂଣ
ଶବଦ କରଇ ମୁଖେ ନାରାୟଣ ନାରାୟଣ । ୫୨ ।
ପୁତ୍ରକୁ ଦେଖିବ ବୋଲି ହିରଣ୍ୟକଶିପୁ ଗଲା
ବିଷ୍ଣୁର ଜ୍ୟୋତ୍ସ୍ନା ଦେଖିଣ ସେ ଭୟେଣ ଦୁଃଖିଲା । ୫୩ ।
ଯହୁଂ ସେ ଶୁଣିଲା ନାରାୟଣ ନାମ ବାଣୀ
ମହାକୋପେ ରାକ୍ଷସ ଅସିପତ୍ର ଘେନି ହାଣି । ୫୪ ।
ଅସୁର ଅସ୍ତ୍ର ବାଧାତେ କୁମର ବେନିଖଣ୍ଡ
ଫିଙ୍ଗିଦେଲା ନେଇ ଅକାଦ ଯେ ସିନ୍ଧୁ ଖଣ୍ଡ । ୫୫ ।
ଶୁଣ ହେ କଉରବେ ଶ୍ରୀ ନାରାୟଣଂକର ମାୟା
ଅଗାଦ ଜଳେ ପଡି ଏକଖଣ୍ଡ ହୋଇଲା ବେନି କାୟା । ୫୬ ।
ଚକ୍ଷୁ ମୁଖ ନାସିକା ଭୁଜ ଚରଣ କର୍ଣ୍ଣ ଦୁଇ
ସାଗର ଜଳୁଂ ଆସି ଅନୁତଶାଳେ ହୋଇ । ୫୭ ।

---

୫୭ { ନକ୍ଷ ମୁଖ ନାସିକା ଚରଣ ହୋଇଲା
ଅକାଦ ଜଳୁଂ ଆସି ଅନୁତଶାଳରେ ଶୋଇଲା । (ଘ, ଚ)

୫୦।୨ ପ୍ରହ୍ଲାଦ—ପ୍ରହଲାଦ । ର, ଲ, ଡ, ଳ, ଦ ଏହା ସବୁ ସମାନ ।
୫୨।୧ ମୟୂଣ—ମଦନ । ୫୩।୨ ଜ୍ୟୋତ୍ସ୍ନା—ଜ୍ୟୋସ୍ନା ।
୫୪।୨ ଅସିପତ୍ର—ଉଭୟ ପାଖରେ ଧାର ଥିବା ଖଡ୍ଗ, ଖଣ୍ଡାର ପାତ ।
୫୫।୨ ଅକାଦ—ଅଗାଦ, ଅଗାଧ ।

ମୂଳଜା ଆନନ୍ଦ ଯେ ପୁତ୍ରର ମୁଖ ଚୁମ୍ବି
ମୁହିଁ ତୋର ଅପାଦ ଯେନଇ ରେ ପୁତ୍ର ଥିଲୁ କାହିଁ । ୫୮ ।
କୋଳେ ଧରି ପୁତ୍ରକୁ ମୁଖରେ ଢାଳି ଦୁଧ
ଶୁଣିଣ ହିରଣ୍ୟ ମନେ ପାଇଲା ବିଷାଦ । ୫୯ ।
ଅନ୍ତପୁରେ ବୋଦନ କରଇ ପୁତ୍ରମଣି
କାନ୍ଦନ୍ତେ ଶୁଭଇ ଯେ କୃଷ୍ଣ କୃଷ୍ଣ ବାଣୀ । ୬୦ ।
ଶୁଣିଣ ହିରଣ୍ୟ ଯେ କୋପେଣ ପରଚଣ୍ଡ
ଚରଣ ପ୍ରାପ୍ତେ କରି କାଟିଲା ପ୍ରହଲାଦ ପିଣ୍ଡ । ୬୧ ।
ମୁଣ୍ଡୋହିରେ ରନ୍ଧନ କଲକ ବେଗି ବେଗି
ମହସ୍ର ଖଣ୍ଡ ମାଂସେ ଯେକଖଣ୍ଡ ହୋଇ ଲଗି । ୬୨ ।
କେବଣ ମତେ ତୁ ତରିଲୁ ପୁଣ୍ୟ ବଳେ । ୬୩ ।
ଯେମନ୍ତେଣ ବଢଇ ଯେ ପୁତ୍ର ବାଳବନ୍ତି
ଖେଳନ୍ତା ସିଂଘ ଜାଣି କୁମର ଅସୁର ଘରେ ଅଛୁ । ୬୪ ।
ଶୁକ୍ରଙ୍କ ନନ୍ଦନ ଯେ ପଣ୍ଡିତ ଭାର୍ଗବର
ପାଠ ପଢାନ୍ତି ସେ ସବ ବାଳୁତ କୁମର । ୬୫ ।
ପଣ୍ଡିତଙ୍କୁ ହକାରି ବୋଲଇ ଅସୁର ମହାଭାରା
ମୋର ପୁତ୍ର ପ୍ରହଲାଦକୁ ଶିବ ପୁରାଣ ଯେ ପଢା । ୬୬ ।
ପଢାବନ୍ତେ କୁମର ଶିବ ପୁରାଣ ନ ପଢଇ
ବିଷ୍ଣୁ ପୁରାଣ ପଢିବାକୁ ମନବୋଧ କରଇ । ୬୭ ।
ବିଷ୍ଣୁର ପୁରାଣ ସେ ଅନ୍ତରତେ ଧରଇ ମନ
ହୃଦେ ସୁମରଇ ସେ ପୁରୁଷଙ୍କର ଉତ୍ତମ । ୬୮ ।
ହିରଣ୍ୟ ବୋଲଇ ମୋର ନାରାୟଣ ବଇରି
ଶିବ ନାମ ଗୁଡି କମେ ବିଷ୍ଣୁ ନାମ ସୁମରି । ୬୯ ।
ବଂଶର ଶତ୍ରୁ ମୋର ଅଟଇ ମାଧବ
ମୋହୋର ଆଗରେ ତା ନାମ ସୁମରଣା କରିବ । ୭୦ ।

---

୭୦।୧ ଏପର ବଂଶର ଶତ୍ରୁ ମୋର ଅଟଇ ମାଧବ । (ଙ, ଥ, ନ)

ପ୍ରହ୍ଲାଦ ବୋଇଲେ ତାତ ରୁଦ୍ର ଦେବତା ବୋଲି କାହିଂ
ନିରାକାର ପୁରୁଷ ଯେ ବିଷ୍ଣୁ ହିଂ ଆନ ନାହିଂ । ୭୧ ।
ନାରାୟଣ ଭିନ୍ନୁ ମୁହିଂ ଅନ୍ୟ ନ ଜାଣଇଂ
ତାରୁ କି ମାରୁ ଅବା ତା ତହିଂ ଆନ ନାହିଂ ।
ରଖୁ ନ ରଖୁ ତାହା ସେ ପୁଣ ଜାଣଇଂ । ୭୨ ।
ନାରାୟଣ ବଚନେ କରଇ ସେ ସେବା
ଅକ୍ଷୟେ ଅବ୍ୟୟେ ସେ ବଇକୁଣ୍ଠେ ଥିବା । ୭୩ ।
ପ୍ରହଲାଦ ମୁଖରୁ ହିରଣ୍ୟ ଏସନେକ ଶୁଣି
ପ୍ରହ୍ଲାଦ କେଶ ଧରି ଆକ୍ରୋଶି ଶିର ଝୁଣି । ୭୪ ।
ବୁଲାଇ ଫିଙ୍ଗିଲା ସେ ପୂର୍ବ ଯେ ଦିଗକୁ
ଅନ୍ତରୀକ୍ଷେ ପଡିଲା ସେ ଅଗାଦ ସମୁଦ୍ରକୁ । ୭୫ ।
ବଡବା ଅନଳେ ଯାଇଂ ପଡିଲା କୁମର
ଅଶିସହସ୍ର ଯୋଜନ ଗମ୍ଭୀର ଅଗାଦ ସାଗର । ୭୬ ।
ପୁତ୍ରର ଅଭାବେ କାନ୍ଦଇ ପୁଲମା ମହାଦେଈ
ମାତାର ଅଗ୍ରତେ ମିଳିଲା ପୁତ୍ର ବେଗେ ଯାଇଂ । ୭୭ ।
କୋଳ କରି ଧାଇଲେ ପ୍ରହ୍ଲାଦକୁ ରାଣୀ
ସ୍ନେହଭରେ ରାଜାର କୋଳେ ପୁତ୍ରକୁ ବସାଇଲେ ଆଣି । ୭୮ ।
ହିରଣ୍ୟ ବୋଇଲା ରେ ସମୁଦ୍ରେ ଫିଙ୍ଗି ଦେଲି ତୋତେ
ଅଗାଦ ଜଳୁଂ ପୁତ୍ର ତରିଲୁ କେମନ୍ତେ । ୭୯ ।
ବାବୁ ସୁଗ୍ୟାନୀ ପଣ୍ଡିତ ତୁ ମହିମାଂ ତୋର ମେନ୍ତୁ
ଚରାଚର ପାଇବୁ ରେ ଶିବଂକ ନାମ କମା ନ ଧରୁ । ୮୦ ।
କୋଳେ ବସାନ୍ତେ ଯେ ବୋଲଇ ପ୍ରହ୍ଲାଦ ଦଇତ
ବିଷ୍ଣୁଂକୁ ସେବାକର ଶିବନାମ ତେଜ ତାତ । ୮୧ ।

---

୭୨ { ତାରୁ କି ମାରୁ ଅବା ରଖୁ ଅବା ଭକ୍ଷ
{ ନାରାୟଣ ଭଗତି ସସାର ସର୍ବ ରଖ । (ଧ, କ, ଚ)

୭୫।୨ ଅନ୍ତରୀକ୍ଷେ—ଅନ୍ତରୀକ୍ଷେ

୭୫।୨ ଅଗାଦ—ଅଗାଧ ।

ପ୍ରପଞ୍ଚ ଯୋଗେଶ୍ବର ସେ ଅଧମ ଦେବତା
ଅନୁବ୍ରତେ ଭୋଳ ସେ ନ ଜାଣଇଂ ଦୁଃଖ ସୁଖ ଚିନ୍ତା । ୮୨ ।
ପ୍ରପଞ୍ଚ ଭିକ୍ଷାର୍ଥୀ ସେ ଶ୍ମଶାନ ଭୂମିବାସୀ
ବଇଲ ବାହାନେ ସେ ଭ୍ରମଇ ଅହନିଶି । ୮୩ ।
ନିଚଳ ହୋଇ ଯେ ନ ରହଇ କାହିଂ ଦଣ୍ଡେ
ଡବ ଡବ ଡମ୍ବରୁ ତ୍ରିଶୂଳ ଘେନି ଖଣ୍ଡେ । ୮୪ ।
ହାଡ଼ ଅଳଂକାର ହାର କଣ୍ଠେ ଯେ ଗଳାୟେ
ସର୍ପର କଙ୍କଣି ବାହୁଟି ଘେନିଥାଇ ସର୍ପ ଯେ ଗୁଡ଼ାୟେ । ୮୫ ।
ସର୍ବଦା ଉଲଗ୍ନ କଟିରେ ସର୍ପ ଓଡ଼ିଆଣି
ସର୍ପର ନୂପୁର ବେନି ଚରଣେ ଥାଇ ପୁଣି । ୮୬ ।
ଅରଖ ଦୁଦୁରା ଜାମୁ ଗଇଣ ବେଲପତ୍ର ଫୁଲ
ବାତୁଳଂକ ପ୍ରାୟେ ସ୍ପୃହା ମଣଇ ଯେ ଭଲ । ୮୭ ।
ଯେତେକ ଲୋକଂକୁ ସେ ପ୍ରସନ୍ନେ ଦିଅନ୍ତି ବର
ସ୍ବେ ଭୂଅଖଣ୍ଡେ କେହି ନୁଅନ୍ତି ଅମର । ୮୮ ।
ଈଶ୍ବର ବର ନାଶ ଯାଇ ବିଷ୍ଣୁର ବର ସର୍ବ କାଳେ ଥାଇ
ଶ୍ରୀହରିର ବର ପାଇଲେ ସଂସାରୁ ତରିଯାଇ । ୮୯ ।
ତୁ ଶିବ ଭକତ ମୁଂ ବିଷ୍ଣୁରେ ଭକତ
ତୋହୋର ମୋହୋର ଜାଣିମା କେ ବ୍ରତଥାଇ ପିତା । ୯୦ ।
ବିଷ୍ଣୁର ମହିମା ପ୍ରହଲ୍ଲାଦ କହୁଂ କହୁଂ
ବୋଲଇ ଉଦ୍ଧରି ଧର ମୋତେ କେଶବ ମହାବାହୁ । ୯୧ ।
ପ୍ରହଲ୍ଲାଦ ମୁଖରୁ ହିରଣ୍ୟ ମୈସନକ ବାକ୍ୟ ଶୁଣି
ଖଡଗ ଧରି କରେ ପ୍ରହଲ୍ଲାଦକଇ ହାଣି । ୯୨ ।
ତିରଣ ପ୍ରମାଣେ ମାଂସଂସ ପକାଇଲା ଛେଦି
ଅବକ୍ଷଣେ ରୋଧିର ବହଇ ଯେହ୍ନେ ବହନ୍ତାନଦୀ । ୯୩ ।
ସହସ୍ରେ ଖଣ୍ଡ ହୋଇ ଯେ ଭୂମିରେ ଅଛି ପଡ଼ି
ମାଂସଂସ ଖଣ୍ଡମାନ ଯେ ରୋବନ୍ତି ହରି ହରି । ୯୪ ।

---

୮୩।୨ ବଇଲ—ବଳଦ । ୮୩।୨ ଅହନିଶି—ଅହର୍ନିଶି, ରାତ୍ରଦିନ ।
୮୬।୧ ଓଡ଼ିଆଣି—କଟିମେଖଳା ।

ବଚେଣ ବୋଇଲା ରେ ରଖୁ ଦେବ ହରି
ତାଧ୍ୟାପିହ୍ନଂ ଜାଣି ସେ ନ ପାରିଲା ଦେବଅରି । ୯୫ ।
ବେନପଥର ଯେନ ମୁଣ୍ଡ ଖୁଣ୍ଡ କରି ଚୂରି
ଅସ୍ଥି ଚର୍ମ ମାଂସେଂସ ତାର କଲା ସର୍ବ ଧୂଳି
ବାଟନ୍ତେ ତାଙ୍କୁ ଶୁଭଇ ମୋତେ ରଖ ରଖ ବନମାଳୀ । ୯୬ ।
ଶୁଣିଣ ହିରଣ୍ୟ ଯେ ପ୍ରଚଣ୍ଡ ମହାକୋପୀ
ସମସ୍ତ ତେଲ କରି ଯେ ଅଗ୍ନିରେ ଢାଳି କ୍ଷେପି । ୯୭ ।
ତହିଂର ଉପରେ ଯେ ଲହୁଡ଼ିଲା ଘୃତ
ପ୍ରଜ୍ୱଳିତ ହୋଇ ଯେ ଉଠିଲା ସ୍ୱାହାକାନ୍ତ । ୯୮ ।
ଆରେ ଆରେ ପ୍ରହ୍ଲାଦ ତୁ ବାସୁଦେବଙ୍କୁ କଲୁ ଇଚ୍ଛା
ସେହି ଭାନ୍ତ ନାରାୟଣ କରୁ ତୋତେ ରକ୍ଷା । ୯୯ ।
ଅନ୍ତପୁରେ ଉତ୍ସବ ଯେ କରଇ ଦଣ୍ଡଧାରୀ
ସେହୁବେ ସେ ନାଶ ଗଲା ମୋ ପୁତ୍ର ମୋହୋର ବଇରି । ୧୦୦ ।
ସେହୁତେ ବୋଲି ଅସୁର ପଶଇ ଅନ୍ତପୁରେ
ବହୁତ ସାନନ୍ଦ ସେ ହୃଦୟ ଭିତରେ । ୧୦୧ ।
ସ୍ୱାହାନ ଯାରି ରାଜା ମୁଣୋଷ୍ଟିରେ କଲେ ବିଜେ
ଶତେ ଚନ୍ଦ୍ର ଜିଣି ଯେ ଅଗ୍ନିରୁ ବାହାରିଲା ହ୍ଲାଦେ । ୧୦୨ ।
ଅନେକ ରତ୍ନ ଭୂଷଣ ପ୍ରହ୍ଲାଦର କାୟେ
ଧାଇଂ ଯାଇଂ ପିତାର କୋଡରେ ବସିଲା ତନୟେ । ୧୦୩ ।
ମୁହିଂ ତୋହୋର ସେହିକ ତନୟ ଅଟଇ ହୋ ତାତ
ମୋତେ ଗୁଡ଼ି ମୁଣୋହ୍ନ କଲୁ କେମନ୍ତେ ବଳିଲା ତୋ ଚିତ୍ତ । ୧୦୪ ।
କାଳ ଅନଳ ଜାଣି ବିକାଶିଲା ଦନ୍ତର କାୟେ
ତରଟିଣ ଗୃହଂଇ ସେ ଅସୁର କୁଳ ରାୟେ । ୧୦୫ ।
ଆରେ ପ୍ରହ୍ଲାଦ ତୋତେ କଲିଇଂ ଅନେକ ପ୍ରମାଦେ
ଅଗ୍ନିରୁ କେମନ୍ତେ ତରିଲୁ ତୁହି ହ୍ଲାଦେ । ୧୦୬ ।
ଶୁଣ ଆହେ ପିତା ବୋଲଇ ପ୍ରହ୍ଲାଦ ରାଜ
ଦଇତ ଦଳନ ଦତି ତାରିଲେ ମୋତେ ଆଜ । ୧୦୭ ।

---

୯୮।୧ ଲହୁଡ଼ିବା—ନହୁଡ଼ିବା, ଲଢ଼ିବା, ଢାଳିବା । ୯୮।୨ ସ୍ୱାହାକାନ୍ତ—ଅଗ୍ନି

ଏହେ ତାତ ବିଷ୍ଣୁ ଆଶ୍ରେ ଯେ ତରିଲେ ମାରକଣ୍ଡ
ସାତକଳ୍ପ ଆୟୁଷ ପାଇ ବସିଲେ ସପତ ବ୍ରହ୍ମାଣ୍ଡ । ୧୦୮ ।
ଭୂଅଖଣ୍ଡ ଆଶ୍ରେ କରି ବଞ୍ଚିଲେ ସାତ କଳ୍ପ
ବିଷ୍ଣୁଙ୍କୁ ଆଶ୍ରେ କରି ଦେବତାଂକର ତପ । ୧୦୯ ।
ମୁହିଂ ଯେ ବ୍ରତଲା ତାତ ବିଷ୍ଣୁର ଆଶ୍ରିତେ
ମୁଂ ଅମର ହୋଇବି କି ଯିବୁ ଯମପଥେ । ୧୧୦ ।
ପ୍ରହଲ୍ଲାଦର ବଚନେ କୋପିତ ମହାସୁର
ଲୁହାର ବେନି ଗଦା ଧରି ପିଟିଲା ମହାବୀର । ୧୧୧ ।
ହାଥୀର ଦନ୍ତେ ସେ ପକାଇଲା ଚିରି
ସାଗର ଭିତରେ ନେଇ ତାହାର ମାଂସ ଭରି । ୧୧୨ ।
ସର୍ବ ମାଂସ ଲାଗି ହୋଇଲା ଏକ ଶରୀର
ସମୁଦ୍ର ଭିତରୁ ପୁଣ ହୋଇଲା ଅବତାର । ୧୧୩ ।
ନିରାକାର ବିଷ୍ଣୁର ସେ ପେଷଣ କାମଦେବ
ଅକ୍ଷୟେ ଶରୀର ସେ କେମନ୍ତେ ନାଶଯିବ । ୧୧୪ ।
ବିଷ୍ଣୁର ମାୟାରେ ସେ ଅନେକ ଛିଦ୍ର ହୋଇଲା
ପବନ ଅନଳ ଖଡଗେ ସେ କ୍ଷୟେ ତି ନୋହିଲା । ୧୧୫ ।
ନିରାକାର ବିଷ୍ଣୁର ସେ ଆଜ୍ଞାଂ ପାଇ କରି
କାମଦେବ ଜନମିଲା ପ୍ରହଲ୍ଲାଦ ରୂପ ଧରି । ୧୧୬ ।
ଅଧର ଦନ୍ତ ଚିପି ବୋଇଲା ହିରଣ୍ୟ ବଚନ
ବେନି ନୟନ ତରାଟି ଗର୍ଜଇ ଘନ ଘନ । ୧୧୭ ।
ଆରେ ଜଳ ଅନଳୁ ତରିଲୁ ନାରାୟଣଂକୁ ଧ୍ୟାୟି
ମୋତେ ଦେଖାଅ କନା ତୋର ନାରାୟଣ ଅଛି କାହିଂ । ୧୧୮ ।
ବୋଲଇ ପ୍ରହଲ୍ଲାଦ ଶୁଣ ଦେବ ତାତ
ଜଗନ୍ନାଥ ନାମ ଗୋଟି ଜଗତେ ବିଖ୍ୟାତ । ୧୧୯ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି ଭୁବନେ ସେ ହରି
ମେଘ ମହାଶୂନ୍ୟ ସେ ନିରାକାର ଅବତରି । ୧୨୦ ।
ପୃଥିବୀ ଆପ ତେଜ ବାୟୁବ୍ୟ ଆକାଶ
ଧରଣୀ ଧାରଣ ସେ ବଡ଼ନ୍ତା ପୁରୁଷ । ୧୨୧ ।

ବ୍ରହ୍ମ ସରୂପରେ ରୂପ ରେଖ ଧରି
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଆଦି କରି । ୧୨୨ ।
କାଷ୍ଠ ପାଷାଣ ମୂର୍ତ୍ତିକାହିଁ ସେହି
ଯୋଗ ବ୍ରହ୍ମ ନିରାକୁଳ ନିଚଳ ସେ ଶୂନ୍ୟଦେହି । ୧୨୩ ।
ଆଦି ଅନ୍ତ ମଧ ଯାହାର ସର୍ଜନା
ମାନ ଦାନ ଧାନ କାରଣ ସମ୍ପୂର୍ଣ୍ଣା । ୧୨୪ ।
ସିଦ୍ଧ ସାଧକ ସେ ହରି ଅଟେ ମୂଳ
ଚନ୍ଦ୍ର ସୂର୍ଯ୍ୟ କାଳ ନିଦ୍ରା କାମ ସେ ସକଳ । ୧୨୫ ।
ମନ ବଚନ କର୍ତ୍ତବ୍ୟ ଯେଡ଼ିକା ସେ ଦେବ ହରି
ନାମ ସୁମରିଲେ ତାତ ଦୁସ୍ତରୁ ନିସ୍ତରି । ୧୨୬ ।
ଯଜନ ଯାଜନ ଅଧ୍ୟୟନ ଅଧ୍ୟାପନ ଦାନ ପ୍ରତିଗ୍ରହ ଷଟକର୍ମ ମୂଳ ଗୋଟି
ଯାହାର ଦ୍ରଶନେ ଅନ୍ଧ ପଟଳ ଯାଏ ଫିଟି । ୧୨୭ ।
ଦ୍ରବ୍ୟ ମଉଷଧି ରସ ରସାୟନ ଧାତୁ ବାଦ୍ୟ
ଗୁଟିକା, ଅଞ୍ଜନ, ଗାପୁଣୀ ହରଣ ସର୍ବ ସିଦ୍ଧ । ୧୨୮ ।
ସ୍ତମ୍ଭନ ମୋହନ ଯେ ବଶ ଉଚ୍ଚାଟନ
ଉଲୁକ ପାଦୁକା ମନ୍ତ୍ର ହାଦେ ସୁଗମ୍ୟ ଜନ । ୧୨୯ ।
ସକଳ ବିଦ୍ୟାରେ ସେ ସକଳ ଘଟେହରି
ଅନନ୍ତ ବ୍ରହ୍ମମୟେ ସକଳ ଘଟେ ପୂରି । ୧୩୦ ।
ଅଚ୍ଛିଦ୍ର ମହିମା କହିଲେ ନ ସରଇ
ବ୍ରହ୍ମ କ୍ଷେତ୍ରୀ ବଶ୍ୟ ଶୂଦ୍ର ଯେ ଗୁରି ବର୍ଣ୍ଣ ସେହି । ୧୩୧ ।
ଭୁକ୍ତି ହରି ମୁକ୍ତି ହରି ସକଳ ବର୍ଣ୍ଣେ ହରି
ଯେହି ଅମ୍ବ ଗୋଟାକରେ ନାରାୟଣ ଅଛନ୍ତି ବିଜେ କରି । ୧୩୨ ।

---

୧୩୧ ପଦ ପରେ ଅନ୍ୟ ପୋଥିରେ ଅଧିକା ପାଠ—
ଭୁକ୍ତି ହରି ମୁକ୍ତି ହରି ସକଳ ଜୀବେ ହରି
ସବୁଠାରେ ସେହି ପ୍ରଭୁ ରହିଛନ୍ତି ପୂରି ।

( ଅବଶିଷ୍ଟ ପର ପୃଷ୍ଠାରେ

ପୁତ୍ରର ବଚନେ କୋପିଲା ହିରଣ୍ୟ ପ୍ରତକ୍ଷ
ଗର୍ଜନ୍ତେ କମ୍ପିଲେ ମହୀ ସୁର ସିଦ୍ଧ ଯକ୍ଷ । ୧୩୩ ।
କୋପେଣ ଗର୍ଜଇ ଦନ୍ତୀ କାଳ କୃତାନ୍ତେକ ଜାଣି
ଭଇରୋବ ମୂରତ ପ୍ରାପ୍ତେ ହୋଇଲା ଅସୁର ଶିରମଣି । ୧୩୪ ।
ରେ ରେ କାର କରଣ ଉଠିଲା ବୀର ହାଦେ
ସେ ଅମ୍ବେଣ ପ୍ରହାରିଲା ନେଇଣ ବାମ ପାଦେ । ୧୩୫ ।
ଯେଉଂଣ ଅମ୍ବେ ଲାତ ମାଇଲା ଦୁରନ୍ତେକ
ସେହି ଅମ୍ବରୁ ନରସିଂହ ମୂରତ ବାହାର ହୋଏନ୍ତେ ଯେତେକ । ୧୩୬ ।
ମହା ଉର୍ଦ୍ଧ ଲୋଚନ କପାଳ ଅତି ଖର୍ବ
ବିକଟ ଦଶନ ବେନି ଓଷ୍ଠ ମଧ ସ୍ୱର୍ଗ । ୧୩୭ ।
ପିଙ୍ଗଳ ଅତି ପ୍ରଲମ୍ବ ଉଦର ଅତି କ୍ଷୀଣ କଂକାଳ
ଅତହିଂ ଉର୍ଦ୍ଧ ଅଟଇ ବିସ୍ତାର ବକ୍ଷ ସ୍ଥଳ । ୧୩୮ ।
ଶିର ସପ୍ତ ସ୍ୱର୍ଗ ଉଞ୍ଚ ବିସ୍ତାର ନାସିକା ବେନି ପୁଡ଼ା
ପବନ ବହନ୍ତେ ଆସନ୍ତୁ ଉଠିଲେ ଅଙ୍ଗାର । ୧୩୯ ।
କେଶ ଖାଂକର ସେ ପ୍ରକୃତ ମହାକାୟା
ସ୍ଥିର ପାଦ ଅଙ୍ଗୁଷ୍ଠି ପ୍ରଲମ୍ବ ନଖରେହା । ୧୪୦ ।

---

ମାର ଅବା ତାର ପିତା ତହୁଂ ଆନ ନାହିଂ
ଯେ ତାର ଶରଣ ପଶେ ତାକୁ ତାରେ ସେହି ।
ଆଗ୍ୟାଂ ଅବଗ୍ୟାଂ ଅଟଇ ସେହି ଚକ୍ରଧର
ତାରଣ ମାରଣ ସେହି ପ୍ରଭୁ ନିରାକାର ।
ସବୁଠାରେ ସେହି କରଅଛନ୍ତି ବିଜୟେ
ସେ ପ୍ରଭୁ କୃପାରେ ପୃଥୀ ଆତଯାତ ହୋଏ ।
ତୁ ବୋଲନ୍ତୁ କେଉଂଠି ଅଛି ଦେଖା ତୋର ହରି
ସେ ପ୍ରଭୁ ସ୍ନେହି ଅମ୍ବେ ଛନ୍ତି ବଜେ କରି ।
୧୩୮ ବାହୁ ବେନି ବିସ୍ତାର ପ୍ରଲମ୍ବ ଉଦର
ଘୃଷ୍ଟିଷ୍ଠ ହିଂଡ ଜାଣି ମହୀ ଯେ ପ୍ରଖର । (ବହୁପାଠ)
୧୩୯ ଅତି ଉର୍ଦ୍ଧ ନାସିକା ବଦନ୍ତି ବେନି ପୁଡ଼ା
ପବନ ବହନ୍ତେ ଯେ ଉଡ଼ିଲେ ଅଙ୍ଗାର । (ବହୁପାଠ)
୧୪୦।୨ ନଖରେହା—ନଖରେଖା ।

ଯୋଜନ ପ୍ରଲମ୍ବ ଅଟେ ଶରୀର ରୋମାବଳୀ
ସପତ ସିନ୍ଧୁ ଜଳ ଯେ ଲହରି ଉଚ୍ଛୁଳି । ୧୪୧ ।
କହ କହ ହାକ ଯେ ଲହ ଲହ ଜିଭ
ଅଟ୍ଟାଟ୍ଟ ହାସେ ସେ ଯେ ତଡ଼ିତ ଜାଣି ଶୋଭ । ୧୪୨ ।
ରଟ ରଟ ମଟ ମଟ ଶବଦ ଶୁଭଇ ଦେବ ଦନ୍ତ ପାଟି
ସ୍ନେକା କାୟ ଘୋଟିଲା ନରସିଂହର ସପତ ବ୍ରହ୍ମାଣ୍ଡଟି । ୧୪୩ ।
ନବଲକ୍ଷ ଯୋଜନ ହିରଣ୍ୟର ବପୁ
ନଖ ଭିତରେ ଗୋପ୍ୟ ହୋଇଲା ତାର ବପୁ । ୧୪୪ ।
ହିରଣ୍ୟକୁ ଧଇଲେ ଦେବ ଦେବ ମୁଷ୍ଟି କରି
ଉଗ୍ରନଖାସ୍ତ୍ରୀ କରି ଜାନୁପରେ ତାକୁ ପାଡ଼ି । ୧୪୫ ।
କଟାକ୍ଷ ଲୋଚନ ଦେବ କାଳଚନ୍ଦ୍ର ପ୍ରାୟେ
ବକ୍ଷସ୍ଥଳ ବିଦାରଣ କଲେ ଦଶନହେ । ୧୪୬ ।
ଗଙ୍ଗା ଯମୁନା ସରସ୍ୱତୀ ତିନଧାର ହୋଇ ବହଇ ମେରୁ ଫୁଟି
ସେହି ସରୂପେ ରୋଧିର ହୋଇଲାକ ବୃଷ୍ଟି । ୧୪୭ ।
ଅତ୍ୟନ୍ତ ପ୍ରଚଣ୍ଡ ଯେ ନରସିଂହ ଘୋରରୂପୀ
ଦନ୍ତରେ ଛିନାଇ ପକାୟେ ହିରଣ୍ୟକୁ ଅଦ୍ୟାପି । ୧୪୮ ।
ଆକୋଷି ବକ୍ଷସ୍ଥଳ ଧଇଲେ ଦେବ ଦାନ୍ତେ
ରକ୍ତ ମାଂସ ଭକ୍ଷଣ କଲେ ଦେବ ଗାତେ । ୧୪୯ ।
ହିରଣ୍ୟ ରକ୍ତ ମାଂସ ଭକ୍ଷିଣ ନରସିଂହ
ରୋଧିର ବର୍ଣ୍ଣ ଭୋଜନେ ଦେବ ଚୋଷିଲେକ ଅଙ୍ଗ । ୧୫୦ ।
ଅସୁର ମେଦ ମେଦା ମାସ୍ୟେଂସ ଭକ୍ଷଣ ହାଦେ କରି
ମହୁ ମାଂସ ସୁଆଦ ପାଇଲେ ଦେବ ହରି । ୧୫୧ ।

---

୧୪୪ { ନବ ସହସ୍ର ଯୋଜନ ହିରଣ୍ୟର ବପୁ
ନରସିଂହ ନିହରେ ପଶି ଗୋପ୍ୟ ଗଲା ତାହାର ବପୁ । [ଙ, ଥ, ଓ, ନ]

୧୪୮ { ଅତ୍ୟନ୍ତ ବିକଟାଳ ସେ ନରସିଂହ ରୂପ
ଦେଲୁ ଦେଲୁଂ ତାହାର ହୃଦରେ ମହାକୋପ । [ଖ, ଠ]

୧୪୮।୨ ଦନ୍ତେ ଖାଇଲେ ଦେବ ହିରଣ୍ୟ ବପୁ ଗ୍ରସି । [ଓ, ଥ, ନ, ଙ]

୧୪୨।୧ ଜିଭ—ଜିହ୍ୱା । ୧୪୬।୨ ଦଶନହେ—ଦାନ୍ତ ଓ ନଖରେ ।

ମୂରୁଛି ନୁଆଁଣିଲେ ଦେବ ଜନ ଜନ୍ତୁ ଦେଖି
ମଦ୍ଧ ମାଂସ ବୋଲି ଦେବ ସର୍ବ ଜନ୍ତୁ ଭକ୍ଷି । ୧୫୨ ।
ଶତେ ସହସ୍ର ଯୋଜନ ସୃଷ୍ଟି କରେ ଧରି
ରକ୍ତ ମାଂସ ଭକ୍ଷନ୍ତି ଜନ ଜନ୍ତୁ ମାରି । ୧୫୩ ।
ନବ ଦ୍ୱୀପ ସପତ ସାଗର ଯେତେକ ମନୁଷ୍ୟ
ସମସ୍ତ ଭକ୍ଷିଲେ ନରସିଂହ ସର୍ବେ ହେଲେ ଶେଷ । ୧୫୪ ।
ଅତ୍ୟନ୍ତ କଠୋର ଯହୁଂ ନରସିଂହ ମୂର୍ତ୍ତି
କ୍ଷଣକେ ଭ୍ରମଇ ସେ ନବଦ୍ୱୀପା ପୃଥୀ । ୧୫୫ ।
ନବ ସହସ୍ର ବରଷ ଖାଇଲେ ସମସ୍ତ
ଜନ ଜନ୍ତୁ ଯେ ବା ଥିଲେ ପାଇଲେ ସେ ଘାତ । ୧୫୬ ।
ନୃସିଂହ ଭକ୍ଷିବାରେ ଭୁଞ୍ଜା ହେଲା ମହୀ
ଜନ ଜନ୍ତୁ ସାରି ସ୍ୱର୍ଗକୁ ଅବଗାହି । ୧୫୭ ।
ନରକେଶରୀ ଦେଖି ସମସ୍ତେ କଲେ ଭୟେ
ଅମର ତେଜ୍ୟା କରି ପଳାନ୍ତି ଦେବଚ୍ଛାୟେ । ୧୫୮ ।
ଛଡଦଶ ଯୋଜନେ ଦେବଂକୁ ନ ପାଇ
ଲକ୍ଷ ଯୋଜନ ଆକାଶେ କେହି ନାହିଂ । ୧୫୯ ।
ବିହନ୍ତା ପୁରୁଷ ସେ କହିଲେ ବ୍ରହ୍ମାଂକୁ
ନୃସିଂହ ଖାଇଲେ ଜନ ଜନ୍ତୁମାନଂକୁ । ୧୬୦ ।
ଜନ ଜନ୍ତୁ ଖାଇଣ ଆକାଶକୁ କ୍ଷେପି
ଯେହୁ କାୟା ତାର ବ୍ରହ୍ମାଣ୍ଡଯାକ ବ୍ୟାପି । ୧୬୧ ।
ନୃସିଂହ ରୂପ ଯହୁଂ ବିସ୍ତାର ଶୁଣିଲେ
ମରୁଳ ବାହାନେ ବିରଞ୍ଚି ବିଜେ କଲେ । ୧୬୨ ।
ଦେଖିଲେ ଅତ୍ୟନ୍ତ ବିକଟ ନରସିଂହ
ଅନନ୍ତ କୋଟି ବ୍ରହ୍ମାଣ୍ଡେ ବ୍ୟାପିଲା ଯେହୁକା ଅଙ୍ଗ । ୧୬୩ ।
ନୃସିଂହ କବଚ ଅଟଇ ସାରତନ୍ତ୍ରେ ମହାମନ୍ତ୍ରେ
ତାହା ପଢିଲେ ଧାତା ନୃସିଂହ ଶାନ୍ତ ଅର୍ଥେ । ୧୬୪ ।
ଅନେକ ବିନୋପ୍ତୀ ହୋଇଲେ ବ୍ରହ୍ମାଅର୍କେ
ନୃସିଂହ ଶାନ୍ତ ମନ୍ତ୍ର ପଢିଲେ ଦେବଲୋକେ । ୧୬୫ ।

ଅନେକ ଭକ୍ଷଣେ ସେ କରୁଥିଲେ ଇଚ୍ଛା
ଧାତାର ବଚନେ ଶାନ୍ତ ହୋଇଲେ ମନୋବାଞ୍ଛା । ୧୬୬ ।

କାଳଚକ୍ର ପ୍ରାୟେ ଭ୍ରମଇ ବେନି ଆଖି
ପାଖକୁ ଆସି ନୁଆରନ୍ତି ବିଶ୍ୱମୂର୍ତ୍ତି ଦେଖି । ୧୬୭ ।

ନୃସିଂହ ମୂର୍ତ୍ତି ଦେଖିଲେ ପିତା ଯହୁଁ
କମଳାଂକୁ ହକାରି ପେଷିଲେ ବ୍ରହ୍ମା ତହୁଁ । ୧୬୮ ।

ସେ ମାତ ନରସିଂହ ଆଗେ ଉଭା ହୁଅ
ଦେଖି ଶାନ୍ତ ହେବ ନରସିଂହ ଦେହ । ୧୬୯ ।

ପିତାର ବଚନେ ବାରିନିଧିର ଦୁଲଣୀ
ଜଗଜ୍ଜନ ମୋହନୀ ନୃସିଂହ ଆଗେ ମିଳି । ୧୭୦ ।

ଯହୁଁ ଦିଶିଲା ପଦ୍ମାସନୀ ରୂପ
ଶାନ୍ତ ହୋଇଲେ ସ୍ୱାମୀ ଭାଙ୍ଗିଲା ପରତାପ । ୧୭୧ ।

ଗରୁଡ଼କୁ ଦେଖି ଯେହ୍ନେ କାଳସର୍ପ ଗଞ୍ଜି ହୋଇ
ଶାନ୍ତ ହୋଇଲେ ସ୍ୱାମୀ ଲକ୍ଷ୍ମୀଂକ କୋମଳ ବାକ୍ୟ କହି । ୧୭୨ ।

ପୀଡ଼ିଲା ନୃସିଂହ ମଦନ ରସଭୋଳେ
ନରକେଶରୀ ରୂପ ଧରି ଦେବ ବସାଇଲେ କୋଳେ । ୧୭୩ ।

ଜୟ ତୁ ଜୟ ତୁ ଲକ୍ଷ୍ମୀ ନୃସିଂହ ମୂରତି
ଅନନ୍ତ ପୁରୁଷ ତୁ କାରଣ ସର୍ବ ଜ୍ୟୋତି । ୧୭୪ ।

ଚଉଦ ଭୁବନ କମ୍ପିଲା ଯାର ଡାକେ
ସ୍ଥାବରେ ଗୋପ୍ୟ ଗଲେକ କମ୍ପିଲେ ନାଗ ନର ଲୋକେ । ୧୭୫ ।

ନରସିଂହ ରୂପ ଧରିଣ ବାଳ ନରସିଂହ
ତରୁଣ ନରସିଂହ ତୁ ବୃଦ୍ଧ ନରସିଂହ । ୧୭୬ ।

---

୧୭୨।୧ { ଗରୁଡ଼କୁ ଦେଖି ଯେହ୍ନେ କାଳସର୍ପ ରହଇ । (ଙ. ଥ, ନ, ଖ, ଊ)
{ ଗଡ଼ରୁକୁ ଦେଖି ଯେହ୍ନେ କାଳ ଗରଳ ତେଜ ହରଇ । (ଙ, ଚ)

୧୭୩।୧ ଗ୍ଲାଡ଼ିଲା ମନ ତାପ ମଦନର ଭୋଳେ । (ଥ, ଷ, ନ, ଙ)

ବିଶ୍ୱରୂପୀ ନରସିଂହ କପଚ ନରସିଂହ
ଦେବ ନରସିଂହ ଯେ ବଳିଷ୍ଠ ନରସିଂହ । ୧୭୭ ।
ଉଗ୍ର ନରସିଂହ ଜ୍ୟୋତି ନରସିଂହ
ତେଜ ନରସିଂହ ଶାନ୍ତ ନରସିଂହ । ୧୭୮ ।
କୋମଳ ନରସିଂହ ବିପୁଳ ନରସିଂହ
ଯାବଟ ନରସିଂହ ବିଦାରଣ ନରସିଂହ । ୧୭୯ ।
ଲକ୍ଷ୍ମୀ ନରସିଂହ ଅଭିଷେକ ନରସିଂହ
ଜାତ ନରସିଂହ ଅମ୍ବୁ ନରସିଂହ । ୧୮୦ ।
ସରୂପ ନରସିଂହ ନର କେଶରୀ ନରସିଂହ
ମହାବିଷ୍ଣୁ ନରସିଂହ କୃପାଳୁ ନରସିଂହ । ୧୮୧ ।
ବିଶାଳ ନରସିଂହ ଯୋଗପୀଠ ନରସିଂହ
କାଳ ନରସିଂହ କୋଳ ନରସିଂହ । ୧୮୨ ।
ପିଙ୍ଗଳ ନରସିଂହ ତୁ ଭଇରୋବା ନରସିଂହ
ଅମ୍ବୁ ନରସିଂହ ଯେ ମୋହନ ନରସିଂହ । ୧୮୩ ।
ବିସ୍ତୁ ନରସିଂହ କପଟ ନରସିଂହ
ଯୋଗ ନରସିଂହ ତୁ ଜପ ନରସିଂହ । ୧୮୪ ।
ଯେତିକୁ ଅନେକ ଯେ ବ୍ୟାପିଲୁକ ରୂପ
ଅଳସ ନ କର ନରେ ନରସିଂହ ନାମ ଜପ । ୧୮୫ ।
ଲୟେ କର ନରେ ନୃସିଂହ ମୂରତି
ଯମ କାଳଦଣ୍ଡେ ଯେ ଅଭୟେ ଅଛନ୍ତି । ୧ ୬ ।
ଅନନ୍ତ କୋଟି ବ୍ରହ୍ମାଣ୍ଡରେ ଯେତେକ ପାତକ ଦୁରନ୍ତେ
ଖଣ୍ଡଇ ଦୁଷ୍ଟକୃତ ଲକ୍ଷ୍ମୀ ନୃସିଂହ ସୁମରନ୍ତେ । ୧୮୭ ।
କଳିକାଳ ସଂସାର ଯେ ଅଗ୍ୟାନ ମନୁଷ୍ୟ
ମାୟାମୋହ ଲଗି ଯେ ଅରଜଇ ବହୁତ ଦୋଷ । ୧୮୮ ।

---

୧୮୫ { ନରାକାର ପୁରୁଷ ତୁ ହୋଇଲୁ ଅନନ୍ତ ରୂପ
ତୋର ନାମ ଭଜନ୍ତେ ତୁଟଇ ସର୍ବ ପାପ । (ନ, ଥ, ଡ଼, ଙ)

୧୮୮ { ଅନେକ ଜନ୍ମର ଯେ ପାତକ ଖଣ୍ଡିବା
ଗତ ଦୋଷ ଖଣ୍ଡି ନରେ ବଇକୁଣ୍ଠେ ବସିବା । (ଙ,ଥ, ଡ଼, ନ)

୧୭୭।୧ କପଚ—କବଚ ।

ଶରୀରକଇ ସାର କଳ୍ପକ ବେଦ ଆଖି
ଲୋଭ ମୋହ କାମ କ୍ରୋଧ ଦେଖାଇ ନାଶୁଅଛୁ । ୧୮୯ ।
ଯମର ଡଗର ଚଷ ଗୁପତ ବେନ
ଲୋଭକୁ ବଢାଇ ଯେ ଲିହନ୍ତି ଖଡି ଘେନ । ୧୯୦ ।
ଅପାର ପାତକ ଯେ କରନ୍ତି ସର୍ବ ଲୋଚ୍ଚ
ପିଣ୍ଡ ଆତ୍ମା ଯେ ଯେ ଯେକ କରି କରିବନ୍ତି ସର୍ବ ସଞ୍ଜା । ୧୯୧ ।
ଲିଖନ ପଠନ ଯେ କରୁଥାନ୍ତି ନିତ୍ୟେ
ଯେହାଂକର ବଚନ ଶୁଣି ଯମ ଜାତ କରଇ ନର୍କେ । ୧୯୨ ।
ନାଶକର ଦେବତାର ଅଠନ୍ତ ମୂଳଦଣ୍ଡ
ପାପ ପୁଣ୍ୟ ଅର୍ଜନେ ଭୋଗ ପାଇ ଯେହୁ ପିଣ୍ଡ । ୧୯୩ ।
ଆହୋ ଚଷଗୁପତେ ମୋତେ ଅମାତକ ନ ବଢା
ଦୁରନ୍ତେକ କଷ୍ଟରୁ ମୋତେ ଲୋଭ ମୋହ ଛଡା । ୧୯୪ ।
ନିଷ୍ଟଯେ ଚଷଗୁପତେ ତ ଅବଶ୍ୟ ମାରିବେ
ଯମର ମୁଖରୁ ମୋତେ ଶ୍ରୀ ନୃସିଂହ ଉଦ୍ଧାରିବେ । ୧୯୫ ।
ଅଭୟେ ନୃସିଂହ ସୁମରଇ ହୃଦେ
ଲଭିଲ ମନବାଞ୍ଛା ନୃସିଂହ ପ୍ରସାଦେ । ୧୯୬ ।
ହୃଦେ ସୁମର ନରେ ନୃସିଂହ ନାମ ଗୋଟି
ଅନେକ ଜନ୍ମର ପାପ ଯିବ ଯେ ହଟି । ୧୯୭ ।
ହିରଣ୍ୟ ବିଦାରଣ ଅନନ୍ତ ଜଗନ୍ନାଥ
ପ୍ରହଲାଦକଇ ଚିରପୁଷ ଦଅନ୍ତା ନାଥ । ୧୯୮ ।
ନୃସିଂହ ନାମ ଗୋଟି କର ହୋ ନିତ୍ୟେ ଲୟେ
ସମସ୍ତ ଅପାଧ ଖଣ୍ଡଇ ନିର୍ମଳ ହୋଇ କାୟେ । ୧୯୯ ।
ଯମଦଣ୍ଡ କାଳଦଣ୍ଡ ରାଜଦଣ୍ଡେ ନାହିଂ ଭୟେ
ଅନନ୍ତ ରୂପ ସ୍ୱାମୀ ନରସିଂହ କରନ୍ତି ଦୟେ । ୨୦୦ ।

---

୧୯୦।୨ ଲୋଭହିଂ କରିବନ୍ତି ଯେ ବିହରନ୍ତି ଖଡି ଘେନ । (ଙ, ଥ, ନି, ନ)

୧୯୦।୨ ଲିହନ୍ତି—ଲେଖନ୍ତି ।  ୧୯୧।୧ ଲୋଚ୍ଚ—ଲମ୍ପଟ, ନଷ୍ଟ ଚରିତ୍ର ।

ତିନ ଅବତାର ଗୃତ ଯୁଗର ମଧ୍ୟେ
ନରସିଂହ ଦ୍ରୁଶନେ ଖଣ୍ଡଇ ବ୍ୟାଧି ସାଧ୍ୟେ । ୨୦୧ ।
ନରସିଂହ ନାମ ନରେ ଅହନିଶି ପଢ
ନରସିଂହ ସ୍ମରଣ ନରେ ଯମଦଣ୍ଡ ଖଣ୍ଡ । ୨୦୨ ।
ନରସିଂହ ସ୍ମରଣ ନରେ ଖଣ୍ଡନ ହୋଉ ବ୍ୟାଧି
ନରସିଂହ ନାମ ଗୋଟି ପରମ ମଉଷୋଧି । ୨୦୩ ।
ନରସିଂହ ସ୍ମରଣ ନରେ ପଳାଇ ଯାଉ ଜର
ନରସିଂହ ସ୍ମରଣ ନରେ ନ ଲାଗିବ ପାପଭର । ୨୦୪ ।
ନରସିଂହ ସ୍ମରଣ ନରେ ଯାଉ ପଥ ଶ୍ରମ
ନରସିଂହ ନାମେ ସ୍ନାହାନ କଲେ ପାଇ କୋଟିତୀର୍ଥ ଧର୍ମ । ୨୦୫ ।
ନରସିଂହ ନାମକୁଟି କେହି ନୋହେ ସମ
ନରସିଂହ ରୂପକୁ ପ୍ରଶଂସା କରଇ ଯମ । ୨୦୬ ।
ନରସିଂହ ନାମ ଗୋଟି ଚିନ୍ତ ହୃଦଗତେ
ନରସିଂହ ନାମ ଧଇଲେ କୋଟିୟେ ତୀର୍ଥ ପଗପଡେ । ୨୦୭ ।
ବଂଶରେ କଳଂକ ଯାହାର ଅବା ଅଛୁ
ନରସିଂହ ସ୍ମରଣ ନରେ ନ ଥାଉ ଅପାଦ କଛୁ । ୨୦୮ ।
ଯେସନେ ତିରଣ ରାଶି ଦହନ କରଇ ହୁତ
ଅନେକ ଜନ୍ମ ପାତକ ନାଶଯାଇ ନରସିଂହ ନାମ ଚିନ୍ତ । ୨୦୯ ।
ଯଦ୍ୟପି ସର୍ପଘାତ ଦାତ ନ ପାଇବ ଶାନ୍ତି
ନରସିଂହ ସ୍ମରିଲେ ଘାଆ ଶୁଖେ ବିଷ ବିନଶ୍ୟନ୍ତି । ୨୧୦ ।
ଯଦ୍ୟପି ବନ୍ଧନ ଅପାର ପଡଥିବାକ ଗଣ୍ଠି
ନରସିଂହ ସ୍ମରନ୍ତେ ତତକ୍ଷଣେ ଯିବ ଫିଟି । ୨୧୧ ।
ଯଦ୍ୟପି ହୋଇବ ରାଜଭୟ ରିପୁ ଭୟ
ତସକର ଭୟ ବ୍ୟାଘ୍ର ଭୟ ସର୍ପ ବିଘାତ ଆଦ ଭୟ । ୨୧୨ ।
ନରସିଂହ ସ୍ମରିଲେ ଭାଜଇ ସର୍ବ ଦପ
ନରସିଂହ ନାମ ଗୋଟି ଯେ ହୃଦଗତେ ଜପ । ୨୧୩ ।

---

୨୦୯।। ହୁତ—ହୁତାଶନ, ଅଗ୍ନି ।

ଜପ ମନ୍ତ୍ର ହାଦେ ସ୍ନାହାନେ ଭୋଜନେ
ଶ୍ରୀ ନରସିଂହ ନାମ ଧରି ଯେ ମୁକତ ହୁଅ ଜନେ । ୨୧୪ ।
ଶ୍ରୀ ନରସିଂହ ମାତା ଶ୍ରୀ ନରସିଂହ ପିତା
ଶ୍ରୀ ନରସିଂହ ସାଖା ସମସ୍ତ ସୁହୃଦ ଇଷ୍ଟ ଯେ ଦେବତା । ୨୧୫ ।
ନ ଯା ଅନ୍ୟ ତୀର୍ଥେ ନୁହ ଆନକୁ ପ୍ରାର୍ଥନା
ନରସିଂହ ନାମ ଗୋଟି ଶରୀରକୁ ବଜ୍ରସେହ୍ନା । ୨୧୬ ।
ଅଭେଦକବଚ ଯେହ୍ନେ ନ ଭେଦଇ ବଜ୍ରଶର
ଅଭୁଟ ଅକାଟ ହୋଇ ନରସିଂହ ନାମ ଧର । ୨୧୭ ।
ବ୍ରହ୍ମ କ୍ଷତ୍ରୀ ବଶ୍ୟ ଶୂଦ୍ର ଆଦି କରି
ନରସିଂହ ମନ୍ତ୍ରକୁ ହେ ବାରଣ ନ କରି । ୨୧୮ ।
ଅଷ୍ଟାଦଶ ଜାତି ଯେ ଚଣ୍ଡାଳ ଆଦି କରି
ନରସିଂହ ନାମ ଗୋଟି ଯେ ଉଚ୍ଚାର ଉଚ୍ଚ କରି । ୨୧୯ ।
ସଚରାଚର ଯେ ଘୋଟିଲା ନରସିଂହ
ବ୍ରହ୍ମରୁ ଚଣ୍ଡାଳ ସବୁ ଯେକ କଲ ତାର ଅଙ୍ଗ । ୨୨୦ ।
ଶ୍ରୀ ନରସିଂହ ନାଥ ଚରଣେ କରଇ ଦଣ୍ଡମ
ପ୍ରଣପତ୍ୟ ନତ୍ତ୍ୟେ ସାରଳା ଦାସ ମୁନ । ୨୨୧-୩୮୪ ।



## ଭୂରିଶ୍ରବାଙ୍କ ଦ୍ୱାରା ଶ୍ରୀକୃଷ୍ଣ ଓ ଅର୍ଜୁନଙ୍କ ବୀରତ୍ୱ ବର୍ଣ୍ଣନ
## ରଥୀମାନଙ୍କୁ ସୈନ୍ୟ ବଣ୍ଟନ

ଆହୋ ଚଇତନ ଭୂରିସବାୟେ କହିଲେ କଉରବେ ସଭାୟେ
ସଂସାର ବ୍ରତଅଛି ନରସିଂହ ଧ୍ୟାୟେ । ୧ ।
ଅଗ୍ୟାନ ଅପଣ୍ଡିତ ତୁମ୍ଭେ କ୍ଷତ୍ରିୟେ କୁଳେ ଅଟ ମନ୍ଦ
ଜଗତବନ୍ଧୁ ପୁରୁଷଂକୁ ଚିନ୍ତୁଛ ପ୍ରମାଦ । ୨ ।

---

୨୧୯ { ବ୍ରାହ୍ମଣ ହୋଉ କ କ୍ଷତ୍ରୀ ଅବା ହୋଉ
ବଶ୍ୟ ହୋଉ ହାଦେ ଶୂଦ୍ରଇ ଅବା ହୋଉ । ( ଘ,ଟ ) }

୧।୨ ସଂସାର ବ୍ରତଇ ବାରୁ ରେ ଶ୍ରୀ ନାରାୟଣ ଧ୍ୟାୟେ । ( ଗ, ଘ )

ଆହୋ ଖ୍ରଚକ୍ଷୁ ସଭାସ୍ତେ ଯେତେବେଳେ ହରି ନୃସିଂହ ରୂପ ପ୍ରକାଶିଲେ
ଆମ୍ଭେ ହିରଣ୍ୟଙ୍କଳୁଂ ସଚରାଚର ନାଶଗଲେ । ୩ ।
ପାଣ୍ଡବଙ୍କ ଭିନ୍ନ ନ କଲ୍ ହରି ହୃଦେ
ତୁମ୍ଭେ ରକ୍ଷା ଗଲଟି ପାଣ୍ଡବଂକର ବନ୍ଧୁ ସହୋଦ୍ରେ । ୪ ।
ସ୍ୱାମୀ ବୋଇଲେ ନରସିଂହ କୋପ ଯେ ସଂହରି
ପାଣ୍ଡବଂକୁ ତୁମ୍ଭେ ହୋ ନ କର ବଇରି । ୫ ।
ପାଣ୍ଡବାସୁର ଯେଉଣ ଦନେ ଦୁର୍ଯୋଧନକଇଂ ଭକ୍ଷି
ଭୀଷ୍ମ ଦ୍ରୋଣ କର୍ଣ୍ଣ କେହି ନୁଆସିଲେ ରକ୍ଷି । ୬ ।
ଅସୁର ଗର୍ଭେ ଥାଇ ଦୁର୍ଯୋଧନ ଅର୍ଜୁନକଇ ଡାକ ଦଲ୍
ରକ୍ଷାକର ଅର୍ଜୁନ ବୋଲ ଶବଦେକ ଶୁଭିଲ୍ । ୭ ।
ସାଧୁ ପାର୍ଥ ଧନୁରେ ଯୋଡିଲ୍ ମନଭେଦ
କେ କାହାକୁ ନାଶଇ ପକାଅ ତାକୁ ଚ୍ଛେଦ । ୮ ।
ଆହୋ ଅର୍ଜୁନର ନାରାଚ ମନଭେଦୀ ଶର
ଯାଇଂଣ ପଡ଼ିଲ୍ ସେ ଦଇତ ହୃଦପର । ୯ ।
ନାରାଚ ବାଧାତେ ଦତ୍ୟ ହୋଇଲ୍ ଫାଳ ବେନ
ଦୁର୍ଯୋଧନ ବାହାର ହୋଇଲା ଅନେଶ୍ୱର ଭାଇ ଘେନ । ୧୦ ।
ସଇନ୍ଧବ ଦତ୍ୟ ଜଲ୍ ଯେବଣ କୃତ୍ୟ
ଭାନୁମତୀ ହରିନେଲ୍ ନାଶ କରିଣ ଶତେ ଭ୍ରାଥ । ୧୧ ।
କେଶ ଧରି ବଳେ ଭାନୁମତୀକ ବସାଇଲ୍ ରଥେ
ଡାକିଲ୍ ଯୁବତୀ ମୋତେ ରଖ ବୀର ପାଥେ । ୧୨ ।
କୁଣ୍ଡଳୀ ପର୍ବତେ ଥାଇଂ ନେ ଶୁଣିଲ୍ ଫାଲଗୁନ
ରାକ୍ଷସକୁ ବନ୍ଧିଲ୍ ନାରାଚ କୋଟି ଭିନ । ୧୩ ।

---

୩ { ତୁମ୍ଭର ସଭାରେ ଯେତେବେଳେ ନୃସିଂହ ରୂପ ପ୍ରକାଶିଲ୍
{ ଆମ୍ଭେ ହିରଣ୍ୟଙ୍କଳୁ ହୋ ସଂସାର ନାଶ ହେଲା । ( ଖ, ଙ, ଊ, ଚ, ନ )

୧୧।୧ { ହିରଣ୍ୟାକ୍ଷ ଦତ୍ୟ କଲ୍ ଯେବଣ କୃତ୍ୟ । ( ଧ )
{ ସଞ୍ଚକେତୁ ଦତ୍ୟ କଲ୍ ଯେବଣ କୃତ୍ୟ । ( ଠ )

ବତିଶ ମର୍ତ୍ତ ରଥୀ ଭୁଲେଣ ଥାଠ ଥିଲା
ଅର୍ଜୁନ ଶରଘାତେ ସମସ୍ତ ଛେଦନ ହୋଇଲା । ୧୪ ।
ସଇନ୍ତ୍ରକ ଅସୁର ପଡ଼ିଲା ଭୂମିଗତେ
ଭାନୁମତୀଙ୍କୁ ତହୁଂ ଆଣିଲା ବୀର ପାର୍ଥେ । ୧୫ ।
ଅମୃତ ଶର ପେଶି ଜିଆଂଇଲା ଶତେ ଭ୍ରାଥଂକୁ
ଅଗ୍ୟାନ ମୂର୍ଖ ପଣେ ମନ୍ଦ ଚିନ୍ତ ପାଣ୍ଡବଂକୁ । ୧୬ !
ଆହୋ ସମସ୍ତେ ଦେଖିଲଟି ଘୋଷଯାତ୍ରା କାଳେ
ଦୁର୍ଯୋଧନକୁ ବାନ୍ଧନେଲା ଚିତ୍ରସେନ ଗଗନ ମଣ୍ଡଳେ । ୧୭ ।
ଲକ୍ଷେ ଯୋଜନକୁ ଅର୍ଜୁନ କଲା ଶର ଘାତେ
ନାଗ ପାଶ ଦେନ ବାନ୍ଧିଲା ଚିତ୍ରସେନ ରଥେ । ୧୮ ।
ଚିତ୍ରସେନ ଗନ୍ଧର୍ବ ନୁଆଇଲା ଯାଇଂ
ଅଧାସ୍ୱର୍ଗ ହୋଇ ରଥ ଅଛି ରହି । ୧୯ ।
ମାତଲିଙ୍କ ବୋଇଲା ଚିତ୍ରସେନ ରଥ ବାହା ବେଗେ
ମାନଗୋବନ୍ଦର ଶିର ଛେଦିବ ଇନ୍ଦ୍ରଂକର ଆଗେ । ୨୦ ।
ମାତଲି ବୋଇଲା ହୋ ଯିବାକୁ ନାହିଂ ପଥ
ଅର୍ଜୁନ ନାଗପାଶେ ବାନ୍ଧିଛି ତୋର ରଥ । ୨୧ ।
ତୁ ଯେବେ ବନ୍ଧନ କଲୁ ଯେ ଦୁର୍ଯୋଧନ ରଜାକୁ
ତୋ ଭାଇ ଓଲଟି ବନ୍ଧନ କଲା ତୁକୁ । ୨୨ ।
ବନ୍ଧନ କରି ଯେ ଦୁର୍ଯୋଧନକୁ ଗ୍ରଜ ଚିତ୍ରରଥ
ଭୂମିରେ ପଡ଼ିବୁକି ତୁହି ଅମରାଧିନାଥ । ୨୩ ।
ଚିତ୍ରସେନ ବୋଇଲା ଯେ ପାଣ୍ଡବଂକ ଦୋରେହା
ତାହାଂକର ନିମନ୍ତେ ସିନା ବନ୍ଧନ କଲି ଯେହ୍ନା । ୨୪ ।
ସୁରେଶ ବୋଇଲା ଯେ ଲକ୍ଷେ ଯୋଜନରୁ ପଡ଼ୁ
କେମନ୍ତ କରି ରଖିବ ଅର୍ଜୁନ ଭୂମିରେ ପଡ଼ି ମରୁ । ୨୫ ।

---

୨୦।୨ ମାନଗୋବନ୍ଦର ଶିର ଛେଦିବ ପାଣ୍ଡବଂକ ଆଗେ । ( ଙ, ଥ, ଞ, ନ )
୨୩।୧ ଅମରାଧିନାଥ ହୋଇ କି ପଡ଼ିବୁ ଭୂମିଗତ । ( କ, ଚ )

ସ୍ୱର୍ଗେଣ ପେଲ ହୋଇ ସେ ଆକାଶ ଭୁବନୁଂ
ଆକାଶେ ଶରପଥ ବାନ୍ଧିଲା ସାର ଫାଲଗୁନୁ୍ୟ । ୨୬ ।
ଶର ବନ୍ଧେ ବନ୍ଧେ ପଡ଼ି ସେ ମଞ୍ଚକୁ ଆଇଲା
ଧୀରେଣ ଭୂମିରେ ପଡ଼ି ସେ ଜୀବନ ପାଇଲା । ୨୭ ।
ଗୋଧନ ହରଣେ ବିରାଟ ରାଜ୍ୟରେ କଲା ଯେବଣ କଥା
ମୋହନଶରେ ଅର୍ଜୁନ ନ ହୋଇ କେବଣ ଅବସ୍ଥା । ୨୮ ।
ଉତ୍ତର କୁମରକୁ ଯେବେ ସେ ଆଗ୍ୟାଂ ଦିଅନ୍ତା
ଯେକା ଜଣକରେ ସବୁଂକର ଶିର ଛେଦନ କରନ୍ତା । ୨୯ ।
ପ୍ରାଣେ ନ ମାରି ଅପମାନେ ଗଲା ଗଞ୍ଜି
ଧିକାର କରିଣ ସେ ସବୁନ୍ତ କଲା ତେଜି । ୩୦ ।
ବିଳମ୍ବ ନୁହଇ ସେ ଯେ କଥାମାନ କଲା କାଲି
ସେ କଥା ପାସୋରି ଯେବେ ଅମାନ୍ତ କଥା ବୋଲି । ୩୧ ।
ଭୂରିସବାମ୍ଭେ ବୋଇଲେ ଯେ କଥା ବିଗୁରକୁ ନ ଯୋଗାଇଲା
ଯେତେଦିନ ଥିବା ଆମ୍ଭେ ଅରଜୁନର ସଞ୍ଚିଲା । ୩୨ ।
କଲା ଉପୁଗାର ନ ଯେନଇ ଯେଉଣ ପ୍ରାଣୀ
ଅସୁର ଶୃଗାଳ ଜୀବ ସଙ୍ଗତେ ସେମାନଂକୁ ଗଣି । ୩୩ ।
ରୁଦ୍ର ଚନ୍ଦ୍ର ଇନ୍ଦ୍ର ଯେବେ ଆସିବେ ବେଦବ୍ରହ୍ମା
କେହୁ ଜିଣି ପାରିବ ହରି ଅର୍ଜୁନ ଯେକ ଆତ୍ମା । ୩୪ ।
ଆମ୍ଭରେ ପାଣ୍ଡବେ ଯେ ନୋହନ୍ତି ବିରୋଧି
କଉରବେ ପାଣ୍ଡବ ସନ୍ଧି କରିତେ କାହାର ଅଛି ବୁଦ୍ଧି । ୩୫ ।
ଦୁ୍ର୍ଯୋଧନ ବୋଇଲା କ୍ଷତ୍ରୀ ହୋଇ ନସତ କଥା କହ
ପାଣ୍ଡବଂକ ତହିଂ ଶରଣ ପଶ ଯାଅ ଯେଥି କ୍ଷଣେହେଂ ନ ରହ । ୩୬ ।
ଆବର ଯୁଦ୍ଧ କରିବନ କି ତୁମ୍ଭର ଯେବେ ଯେସନେକ ବାଞ୍ଛା
ଅଷ୍ଟ ଅବଧାନେ ପ୍ରାଣୀ ନୋହନ୍ତି ତୁମ୍ଭରେ ରଖା । ୩୭ ।
ଅଷ୍ଟ ଅବଧାନେ ନସୁମ ମୁଂ କଲ ହରିର ଆଗେ
ପାଣ୍ଡବଂକୁ ଭାଗ ନ ଦେଇ ମୁଂ କରିବ ରଣ ଯାଗେ । ୩୮ ।
ଦୁ୍ର୍ଯୋଧନ ବୋଲେ ତୁମ୍ଭଂନ୍ତ ବୋଲଇ ମୁଂ ଭଲେ
ଜୀବନେ ଆଶ ଯାର ନ ଥାଅ ମୋର ତୁଲେ । ୩୯ ।

ଅଥବା ଭୟେ ଉପ୍ରୋଧେ ଯେବେ ପଶିବ ସାଂଗ୍ରାମକୁ
ତାଂକର ହତ୍ୟା ଦୋଷ ନ ଲାଗଇ ମୋତେ । ୪୦ ।
ଦୁର୍ଯୋଧନ ବୋଲେ ହେ ଧର୍ମ ଦେବତା ମୋତେ ହୁଅ ସାକ୍ଷୀ
ସତ୍ୟ ସତ୍ୟ ରଣ ଯାଗ ମୁହିଂ କରୁଅଛି । ୪୧ ।
ନିଚୟେ ସଂଗ୍ରାମକୁ ମୁଂ ନିୟମ କଲି ତାତ
ତିରଣ ପ୍ରମାଣେ ମୋହୋର ଶରୀର ପଛେ ଅର୍ଜୁନ ଖଣ୍ଡକାଉ । ୪୨ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଭୂରିସର୍ବା ଆଦି କରି ଜୀବନକୁ ଯାର ଆଶ
ମୃତ୍ୟୁକୁ ଡରିଲେ ପାଣ୍ଡବଂକଠାରେ ଶରଣ ଯାଇଂ ପଶ । ୪୩ ।
ମୋହୋର ଶତେ ଭ୍ରାଥ ଲକ୍ଷ୍ମଣକୁମାରହିଂ ପୁତ୍ର
ସିନ୍ଧୁରାଜା ଯେତେକ ଭଣୋଇ ମୋହୋର ଯଦ୍ୟରଥ । ୪୪ ।
ସେହି ଯେବେ ଆଶ କରିବେ ଜୀବନକୁ ଗୁଡ ମୃତ୍ୟୁ
ତେବେ ସେ ଯାଇଂ ଶରଣ ପଶନ୍ତୁ ପାଣ୍ଡବଂକୁ । ୪୫ ।
ମୋ ଜୀବନକୁ ଆଶା ନାହିଂ କିଛି
ଅଥବା ଭଜଇ କି ତୁଟଇ ସେ ଲର୍ଛୀ । ୪୬ ।
ଅବଶେଷ ବେଳ ଯେବେ ହୋଇବାକ ପ୍ରାଣୀ
ଅନର୍ଥଇ ତାହାକୁ ଅର୍ଥ ପ୍ରାପ୍ତ ମଣି । ୪୭ ।
ଭୀଷ୍ମେ ବୋଇଲେ ରାଜା ତୁ ନ କରନି ସନ୍ତାପ
କରିବି ସଂଗ୍ରାମ ସାରିବି ତୋ ମନତାପ । ୪୮ ।
ଯେତେମାନେ ବୋଇଲେ ଯେ ଭୀଷ୍ମେ ଦୋଷକାରୀ
ପ୍ରଥମ ସମର ମୋର ଦେଖିଥା ଦଣ୍ଡଧାରୀ । ୪୯ ।
ଯେତେମାନେ ବୋଲନ୍ତି ଭୀଷ୍ମେ କି କରିବେ ସମର
ସେବେ ପ୍ରଥମ ରଣ ଦେଖନ୍ତୁ ସେ ମୋର । ୫୦ ।
ଦଶ ଦିବସ ପରିଯନ୍ତେ କରିବି ମୁହିଂ ଯୁଦ୍ଧ
ଦଶ ସହସ୍ର ଯୋଦ୍ଧା ମାରିବି ପ୍ରତିଦିନ ରଣମଧ୍ୟ । ୫୧ ।
ଯେଉଣ ଦିନ ମାରି ନ ପାରିବି ଦଶ ସହସ୍ର ରଥୀ
ସେ ଦିନ ମୁଣୋହିଂ ନାହିଂ କିବାର ସତ୍ୟ ସତ୍ୟ । ୫୨ ।

---

୪୬।୨ ଲର୍ଛୀ—ଲକ୍ଷ୍ମୀ ।

ଭୀଷ୍ମଙ୍କ ପ୍ରତିଜ୍ଞାଂ ଶୁଣି ସକଳ କଉରବେ
ବୋଇଲେ କୌରବେ ଦୟା ଛାଡ଼ିଲେ କଷ୍ଟେ ମରିବେ ପାଣ୍ଡବେ । ୫୩ ।
ଜୟ ଜୟ ଶବଦେ ଯେ କଲେ ଶଙ୍ଖ ଧ୍ୱନି
ଭୀଷ୍ମଙ୍କୁ ଅଭିଷେକ ଯେ କଲେ କୁରୁମଣି । ୫୪ ।
ଲକ୍ଷେ ରଥୀ ଚଳିଲେ ବେନିଲକ୍ଷ ହାଥୀ
ଚାରି ଲକ୍ଷ ତୁରଙ୍ଗ ବେନି ସାଗର ପାଦାନ୍ତି । ୫୫ ।
ଢୋଲ ଦମା ଚମକ ନିଶାଣ ବାଜନ୍ତି ବାଜଘୋଷ
ଘୋରନାଦ ଶବଦେ ପୂରିଲା ଦଶ ଦିଶ । ୫୬ ।
ପାଟଛତ୍ର ଉଦଣ୍ଡ ଚଳିଲା ପ୍ରତ୍ୟେକଲକ୍ଷି
ମୟୂରଝାଲ ଛତା ସହସ୍ରେ ଚାମର ଲେଖି । ୫୭ ।
ମଣିଗଣ ମାଣିକ୍ୟ ତାଡ଼ ଝୁମ୍ପା ସରଳ
ବାଦ ମୁଦ କଂକଣ ତୋଡ଼ର ହୃଦରେ ରତ୍ନମାଳ । ୫୮ ।
ହୃଦରେ ପଦକ ଯେ କଟିରେ ମେଖଳା
ଶିରେ ସୀମନ୍ତିନୀ ଗଳାରେ ରତ୍ନମାଳା । ୫୯ ।
ପ୍ରତ୍ୟେକ ଆରମ୍ଭେ ଯେ ମାନଚକ୍ରବର୍ତ୍ତୀ
ପ୍ରତ୍ୟେକ ସୈନ୍ୟ ଭିତରେ ଭୀଷ୍ମ ଦ୍ରୋଣେ ହୋଇଲେ ସେନାପତି ।୬୦।
କୋଟିପ୍ରତ୍ୟେକ ରଥୀ ବେନି କୋଟି ମାତଙ୍ଗ
ନବ ସାଗର ପାଦାନ୍ତି ବେନି କୋଟି ତୁରଙ୍ଗ । ୬୧ ।
ହାର କୁଣ୍ଡଳ ଅନେକ ଦେଇଣ କୁରୁପତି
ପ୍ରତି ସୈନ୍ୟ ଉପରେ କର୍ଣ୍ଣ ସେନାପତି । ୬୨ ।
ପାଞ୍ଚ ଅକ୍ଷୌହିଣୀ ରଥୀ ଦଶ ଅକ୍ଷୌହିଣୀ ହାଥୀ
ଦଶଲକ୍ଷ ତୁରଙ୍ଗ ବେନି ଷଉଣୀ ପାଦାନ୍ତି । ୬୩ ।
ଅନେକ ରତ୍ନ ଯୋଗାଡ଼ ଦେଇଣ କୁରୁପତି
ଆଲମ୍ବ ପାଟଛତ୍ର ଲକ୍ଷେ ମୟୂରଝାଲ ଛତ୍ର । ୬୪ ।
ଅନେକ ରତ୍ନ ଦେଇ ପୂଜାକଲା ମହାମଲ୍ଲ
ପ୍ରତ୍ୟେକ ସୈନ୍ୟ ଉପରେ ସେନାପତି ହୋଇଲେ ରାଜା ଶଲ୍ୟ । ୬୫ ।

---

୬୦।୧ ମାନଚକ୍ରବର୍ତ୍ତୀ—ମାନଗୋବିନ୍ଦ ଚକ୍ରବର୍ତ୍ତୀ ।

ପାଞ୍ଚ ଲକ୍ଷ ରଥ ନବ ଲକ୍ଷ ମତ୍ତହାଥୀ
ତିନି ଲକ୍ଷ ତୁରଙ୍ଗ ତିନି ଷଉଣୀ ପାଦାନ୍ତି । ୬୬ ।
ଯେତେକ ସନ୍ୟ ଘେନି ପ୍ରଜା କଲେକ ମହାତମା
ଯେ ସନ୍ୟେ ସେନାପତି ହୋଇଲେ କୃପବ୍ରହ୍ମା । ୬୭ ।
ମର୍ତ୍ତେକ ରଥ ଯେ ବେନି ମର୍ତ୍ତ ହାଥୀ
ତିନି ସାଗର ହୟେବର ଦୁଇ ଷଉଣୀ ପାଦାନ୍ତି । ୬୮ ।
ଆଲମ୍ବ ପାଟଛନ୍ଦ ଯେକଲକ୍ଷୀ ପାଞ୍ଚଲକ୍ଷ
ଉଦ୍ଦଣ୍ଡ ଲକ୍ଷେକ ଯେ ମୟୂର ଝାଲପକ୍ଷ ଯେକ ଲକ୍ଷ । ୬୯ ।
ଅନେକ ଧନ ରତ୍ନ ସେ ଘେନି କୁରୁପତି
ମୁକୁଟ ବାନ୍ଧିଲା ଆରମ୍ଭେ ବାହ୍ଲିକ ସେନାପତି । ୭୦ ।
ଟମକ ନିଶାଣ ଦମା ଖାରତୁର ବଜ୍ରଘୋଷ
ଘୋର ବାଦ୍ୟ ଶବଦେ ଯେ କମ୍ପିଲା ଆକାଶ । ୭୧ ।
ଶ୍ୱେତ ଚାମର ଲକ୍ଷେ ଡାଲମ୍ବା ଚାମର ଲକ୍ଷେ ଘେନି
ଲକ୍ଷେ ରଥ ଯୋଦ୍ଧା ମୁକୁଟ ଯୋଦ୍ଧା ଛତ୍ରୀ ଲକ୍ଷ ତିନି । ୭୨।
ଶ୍ରୀଭୁଜେ ମୁକୁଟ ଯେ ବାନ୍ଧିଲା କୁରୁନାଥ
ଯେତେ ଯୋଦ୍ଧା ଘେନି କଲା ସେନାପତି ସୋମଦତ୍ତ । ୭୩ ।
ପାଞ୍ଚ ଲକ୍ଷ ରଥ ବଂଶ ଲକ୍ଷ ହାଥୀ
ବେନି କୋଟି ବାଗସ ତିନିକୋଟି ପାଦାନ୍ତି । ୭୪ ।
ଶ୍ରୀଭୁଜେ ମୁକୁଟ ବାନ୍ଧିଲା କୁରୁନାଥ
ଅସଂଖ୍ୟ ସନ୍ୟରେ ସେନାପତି ହେଲା ଜୟଦ୍ରଥ । ୭୫ ।
ବଂଶ ଲକ୍ଷ ସେନା ମୂଳେ ଭୂରିସ୍ରବା
ମୁକୁଟ ବାନ୍ଧିଲା ଯେ କୁରୁରାଜ ଦେବା । ୭୬ ।
ମତ୍ତଗଜ ବଂଶ ଲକ୍ଷ ଘେନିଣ ଅଶ୍ୱତ୍ଥାମା
...ରକ ରାଜା ମାଲେବ କୃତବର୍ମା (କୃପବ୍ରହ୍ମା) । ୭୭ ।
... ଦେଶର ମାଧବସେନ ରାଜା
... କୋଟି ସନ୍ୟ ଚଳେ ରାଜ୍ୟ କଲା ପ୍ରଜା । ୭୮ ।
ବରଙ୍ଗ ଦେଶର ରାଜା ଅଟେ କୃତକେଶୀ
ଅଶିଲକ୍ଷ ଯୋଦ୍ଧା ଚଳେ ସମରେ ଉରସି । ୭୯ ।

ମଦନକ ଦେଶର ରାଜା କୃତମାଳୀ
ତିନି ଅର୍ବୁଦେ ଯୋଦ୍ଧା ଘେନିଣ ସେ ଭାରଥ ଯୁଦ୍ଧେ ମିଳି । ୮୦ ।
ରଣସ୍ତମ୍ଭ ଦେଶର ନୃପତି ବୀରବାହୁ
ପାଞ୍ଚଲକ୍ଷ ଯୋଦ୍ଧା ଭୁଲେ ସମରେ ସଜ ସେହୁ । ୮୧ ।
ଅନୁସର ଦେଶର ରାଜା ବିରୂପାକ୍ଷ
ଏହି ରାଜାର ମୂଳେ ରଥୀ ଗଜ ସୈନ୍ୟ ନବ ଲକ୍ଷ । ୮୨ ।
ବିରଞ୍ଚି ଦେଶର ରାଜା ଅରୁଣସେନ
ବାସ୍ତରି କୋଟି ଯୋଦ୍ଧା ଭୁଲେ ସାଜିଲା ରାଏ ସୈନ୍ୟ । ୮୩ ।
ବ୍ରହ୍ମମଣ୍ଡଳ ଦେଶର ରାଜା ଯେ ସୁବାହୁ
ସାତ କ୍ଷଉଣୀ ସୈନ୍ୟ ଘେନି ଅଇଲାକ ସେହୁ । ୮୪ ।
ଗଉଡ ଦେଶ ରାଜା ମଳୟାନିଳ ବୀର
ସାଗରେକ ଯୋଦ୍ଧା ଘେନି ସମରେଣ ଧୀର । ୮୫ ।
ଏହି ବିଧି ଆବର ଅନେକ ଦେଶ ରାଜା ଯେ ମହାରାଜା
ଆପଣା କାର୍ଯ୍ୟ ନିମନ୍ତେ ମାନଗୋବିନ୍ଦ ସବୁନ୍ତ କଲି ପୂଜା । ୮୬ ।
ବୃହଦ୍ବଗ ନୃପତି ଯେ ତାହାର ପାଶେ ମିଳି
ମହାରାଜା ଯୋଦ୍ଧା ଯେ ପ୍ରଚଣ୍ଡ ମହାବଳୀ । ୮୭ ।
ସକଳ ଦେଶର ରାଜାମାନନ୍ତ ବହୁତ ପୁରୁଷାର୍ଥେ
ବନ୍ଦୟନ୍ତି ମହାରାଜା ବିନୟେ ଯୁଗତେ । ୮୮ ।
ସମସ୍ତ ଯୋଦ୍ଧାଏ କଲେ ସାଧୁ ସାଧୁ ବାଣୀ
ତୁହି ସେ ପଞ୍ଚୁ କଣ୍ଟକରେ ହୋଇବୁ କାରେଣୀ । ୮୯ ।
ଅକଣ୍ଟକ ରାଜ୍ୟ ଭୁ କର କୁରୁଦେବ
ନାସ ଯେ କରିବେ ତୋତେ ପଞ୍ଚୁ ଯେ ପାଣ୍ଡବ । ୯୦ ।
ସମସ୍ତେ ସତ୍ୟ କଲେ ଗଙ୍ଗାରେ ହାଥ ଭରି
କୁରୁକୁଳେ ହେବୁ ତୁ ଏମାନଙ୍କ ଦଣ୍ଡଧାରୀ । ୯୧ ।

---

୮୩।୧ { ( ତଜବଲ ) ଋକ୍ଷବଲ ଦେଶର ନୃପତି ତରୁଣସେନ । ( ଙ, ଥ, ନ )
( ଖାର୍ଯ୍ୟବଲ ଦେଶର ରାଜା ଅରୁଣ ସୂର୍ଯ୍ୟସେନ (ରୂତୁ ସୂର୍ଯ୍ୟସେନ) । (କ,ଘ)

୯୧।୨ { ପଞ୍ଚ କଣ୍ଟକେ ତୋତେ କରାଇବୁ ଦଣ୍ଡଧାରୀ । ( ଙ, ଥ, ଊ, ନ )
( ସ୍ନେହ ମହୀ ମଣ୍ଡଳେ ତୁ ଏମାନଙ୍କ ଦଣ୍ଡଧାରୀ । ( ଛ, ଝ, ଘ )

ଚନ୍ଦ୍ରମେ ଯଦ୍ୟପି ସବିତା ଉଇଂବ
ଜଳ ତେଜ ପର୍ବତେ ଯେବେ କମଳ ବିକସିବ । ୯୨ ।
ସପତ ଦୀପ ଯେବେ ସାଦ୍ଧୋର ଲଙ୍ଘିବଟି
ତଥାପି ମିଥ୍ୟା ନୋହିବ ମହନ୍ତ ବଚନଟି । ୯୩ ।
ଯୋଦ୍ଧାଂକର ପ୍ରତଗ୍ୟାଂ ବହୁତ ଗାଢ ଦେଖି
କଉରବେ ନାଥ ମନୁଂ ଭ୍ରାନ୍ତ ଯେ ଉପେକ୍ଷି । ୯୪ ।
ବାଜଇ ଜୟେଶଙ୍ଖ ଶୁଭଇ ଯେ ମଙ୍ଗଳ
ସମରକୁ ରାଜାୟେ କରନ୍ତ ଅନକୂଳ । ୯୫—୪୭୯ ।

## ଦୈବଜ୍ଞ ପ୍ରଶ୍ନ ଓ ଭୀଷ୍ମଙ୍କ ସହ ଅନୁକୂଳ ପାଇଁ କଥୋପକଥନ

ସୁଦେବ ପଣ୍ଡିତଂକୁ ହକାରଣ ରାୟେ
ବରଣ ବିଧାନେ ଯେ ବହୁତ ପୂଜା ବିଧି କୟେ । ୧ ।
ଅଖଣ୍ଡିତ କୁଶ ଶ୍ୱେତ ଦୁର୍ବା ତୁଳସୀର ମାଳ
ସୁବର୍ଣ୍ଣ ଥାଳୀରେ ଅଖଣ୍ଡିତ ଯେ ତଣ୍ଡୋଳ
ସୁବର୍ଣ୍ଣ ବନ୍ଧା ଅଷ୍ଟ ଗୋଟି ନର୍ଡୀକାଳ । ୨ ।
ସୁବର୍ଣ୍ଣର ପ୍ରଦୀପରେ ପୂରେଇ ଗୁଆଘୃତ ।
ନେତର ବଳତା ଅଗ୍ନି ଲଗାଇଲେ ପଟସୂତ୍ର । ୩ ।
କନକ ପୀଢାରେ ବସାଇ ବ୍ରହ୍ମ ପୁଜ
ବରଣ ବିଧିମତ ଅନେକ କଲେକ ପଣ୍ଡିତ । ୪ ।
ମଙ୍ଗଳ ବାକ୍ୟମାନ ଯେ ପଣ୍ଡିତେ ପଢନ୍ତ
ବନ୍ଦାପନା ବିଧି ହେଲେ ରାଜା କୁରୁପନ୍ତ । ୫ ।
ଦଧି ମତ୍ସ୍ୟ ପୂର୍ଣ୍ଣ କୁମ୍ଭ ସୁବର୍ଣ୍ଣ ଶ୍ରୀଫଳ
ସନ୍ୟ ସାଜଇ ରାଜ୍ୟେ କୁରୁ ମହୀପାଳ । ୬ ।

---

୨।୨ ବେଦ ଶତ ମାତ ସୁବର୍ଣ୍ଣ ଶତେକ ଶ୍ରୀଫଳ । ( ଘ, ଙ, ଥ, ଓ, କ )
୩।୨ ନେତର ବଳତା ଯେ ନେତର ପାଟସୂତ୍ର । ( ଙ, ଥ )
୨।୨ ନର୍ଡୀକାଳ – ନଡ଼ିଆ ।

ଯେସନେକ କରି ମାନଗୋବନ୍ଦ ଯେ ବର
ଦଇବଗ୍ୟଂ ବାମଦେବ ପଣ୍ଡିତଂକୁ ଅନକୂଳ ପଗ୍ଭର । ୭ ।
ଭୀଷ୍ମେ ବୋଇଲେ ତୁମ୍ଭେ କହସି ପଣ୍ଡିତେ
ଭାରତ ଯୁଦ୍ଧେ ଛତ୍ରୀ ମୁକ୍ତ ହୋଇବେ କେମନ୍ତେ । ୮ ।
ବାରମାସର ମଧ୍ୟେ ମୁଖ୍ୟ କେଉଂ ମାସ
କେଉଣ ମାସରେ ପଣ୍ଡିତେ କେଉଣ ଧର୍ମ ଯଶ । ୯ ।
ପଣ୍ଡିତେ କହିଲେ ଶରଦ ଶିଶିର ହେମନ୍ତ ବସନ୍ତ ଗ୍ରୀଷମ ବରଷା
ଯେ ଛଅ ଋତୁରେ ସେ ହୁଅଇ ଦ୍ୱାଦଶ ମାସା । ୧୦ ।
ଶିଶିର ବସନ୍ତ ଗ୍ରୀଷମ ତିନି ଋତୁ ଲେଖା
ଉତ୍ତରାୟଣ ବୋଲି ଯେହା ଅବଦେ ବୋଲି ଶାଖା । ୧୧ ।
ବରଷା ଶରଦ ହେମ ଯେହୁ ତିନି ଋତୁ
ଦକ୍ଷିଣାୟନ ସମ୍ଭାଦେ କହଇ ଗଣିତୁଂ । ୧୨ ।
ଆଷାଢରୁ ପକ୍ଷେ ଶ୍ରାବଣର ମାସେ
ଭାଦ୍ରବ ପକ୍ଷେ ଭରଯେ ବରଷା ଋତୁ ଦଶେ । ୧୩ ।
ଭାଦ୍ରବରୁ ପକ୍ଷେ ଆଶ୍ୱିନରୁ ମାସେ କାର୍ତ୍ତିକରୁ ପକ୍ଷେ
ଶରଦ ଋତୁ ବୋଲି ଜଉତିଷରେ ଅଛେ । ୧୪ ।
କାର୍ତ୍ତିକରୁ ପକ୍ଷେ ଯେ ମାର୍ଗଶୀର ମାସେ ପୁଷ ମାସରୁ ପକ୍ଷେ
ହିମ ଋତୁ ଯେହା ବୋଲି ବୋଲନ୍ତି ପ୍ରତକ୍ଷେ । ୧୫ ।
ପୁଷ ମାସରୁ ପକ୍ଷେ ମାଘ ମାସ ଯେ ଫାଲଗୁନରୁ ପକ୍ଷେ
ଶିଶିର ଋତୁ ବୋଲି ବୋଲନ୍ତି ପ୍ରତକ୍ଷେ । ୧୬ ।
ଫାଲଗୁନରୁ ପକ୍ଷେ ଚଇତ୍ର ମାସେ ବଇଶାଖରୁ ପକ୍ଷେ
ବସନ୍ତ ଋତୁ ଯେ ବୋଲନ୍ତି ପ୍ରତକ୍ଷେ । ୧୭ ।
ବଇଶାଖରୁ ପକ୍ଷେ ଜ୍ୟେଷ୍ଠର ମାସେ ଆଷାଢରୁ ପକ୍ଷେ
ଯେ ଗ୍ରୀଷମ ଋତୁଟି ଅଟନ୍ତି ପ୍ରତକ୍ଷେ । ୧୮ ।

---

ପୁସ୍ତକ ବିଶେଷରେ ପାଠ—

୧୬ { ମାଘରୁ ଆରମ୍ଭ କରି ଛ ମାସ ପର୍ଯ୍ୟନ୍ତେ
ଉତ୍ତରାୟଣ ବୋଲିଣ କହନ୍ତି ସମସ୍ତେ ।
ଶ୍ରାବଣୁଂ ଗଡନ୍ତି ସର୍ବେ ଦକ୍ଷିଣ ଅୟନ
ସେହି ପରାୟେ ବର୍ଷକ ହୁଅଇ ସମ୍ପୂର୍ଣ୍ଣ । }

୧୧।୨ ଅବଦ—ବର୍ଷ ।

ମକର କୁମ୍ଭ ମୀନ ମେଷ ବୃଷ ମିଥୁନ
କର୍କଟ ସିଂହ କନ୍ୟ ତୁଳ ବୃଶ୍ଚି ଧନୁ ବର୍ଦ୍ଧମାନ । ୧୯ ।
ଏହିଥିରେ କାର୍ତ୍ତିକ ମାଘ ବଇଶାଖ
ଅତିଅନ୍ତ ପୁଣ୍ୟ ଏହି ନଉ ଯେ ଦିବସ । ୨୦ ।
ଏହି ତିନ ମାସରେ ମକର ଯାହା ବୋଲି
ଅସଂକ୍ଷେପ ପୁଣ୍ୟ ଏହି ସଞ୍ଚିପି ନୁଆଶିଲି । ୨୧ ।
ଏହି ମକରେ ଯେବେ କଞ୍ଚିତେ ଧର୍ମ କରି
ଏକ ଦିନ ବ୍ରତ କଲେ ଅଶ୍ୱମେଧ ଯାଗ ସରି । ୨୨ ।
ମାଧବ ମାନଧାତା ମାରକଣ୍ଡ ମହୋଦଧି
ମାଳଶ୍ରୀ ମାନଧାରୀ ମାହେଶ୍ୱରୀ ପ୍ରବୋଧି । ୨୩ ।
ଯାଗତୀର୍ଥ ଯେତୁ ମକର ମାସ ମଧ୍ୟେ
ସତେ ହୋଇ କ ନସତେ ହୋଇ ଯୁଝିଲେ ରଣ ମଧ୍ୟେ । ୨୪ ।
ନିର୍ମଳ ନିରାକାର ଭୁବନ ସେ ପାଇବ
ନିର୍ଦ୍ଦୋଷ ଶରୀର ବହିବ ବଇକୁଣ୍ଠେ ବସିବ । ୨୫ ।
ସୋମକ ନାମେ ପ୍ରଳୟ କାଳେ ସଉର ନାମେ ପୃଥୀ
ସେ ବେଳେ ଭାରତ ଯୁଦ୍ଧ ହୋଇଲାକ ଏହିଥି । ୨୬ ।
ସମନକ ପ୍ରଳୟ ଯାଗନିକ ନାମେ ମହୀ
ଭୂଥଖଣ୍ଡ ରାଜାମାନେ ହୋଇଲେ ଏକତ୍ରିହିଂ । ୨୭ ।
ସେ ଯୁଦ୍ଧ ହୋଇଲା ଯେ ଭାଦ୍ରବ ମାସରେ
ତେଣୁ ଭାରଥ ଯୁଦ୍ଧ ହୋଇଲା ନିଦେଶରେ । ୨୮ ।
ତହିଂ ଉତ୍ତରୁ କାମ୍ୟକ ନାମେଣ ପ୍ରଳୟେ
ଅବନୀ ନାମେଣ ଯେ ପୃଥୀ ଜାତ ହୋଏ । ୨୯ ।
ସେ ଯୁଦ୍ଧ ହୋଇଲା ମାର୍ଗଶୀର ଶୁକ୍ଳ ଚତୁର୍ଦ୍ଦଶୀ ଦିନେ
ଧନୁ ଶୁକ୍ଳ ଦ୍ୱାଦଶୀରେ ପଡିଲେ ରାଜାମାନେ । ୩୦ ।
ତହିଂ ଉତ୍ତରେ ଯେ ଚାଟିଳ ନାମେଣ ପ୍ରଳୟେ
ତହିଂ ଜାତ ହୋଇଲେଟି ସର୍ବ ଦେବତାଏ । ୩୧ ।

୨୬।୧ ସୋମକ ସ୍ଥାନରେ--ସୋମ, ସହୋଦ୍ର, ସୋଦରଜ୍ଞ, ସୌମଦ,
ସୋମଦତ୍ତ ପ୍ରଭୃତି ପାଠାନ୍ତର ଅଛି ।

ତାତେକ ନାମେଣ ଯେ ସଂବତ୍ସର ହୋଏ
ତାରେଣୀ ନାମେଣ ଯେ ହୋଇଲା ବସୁଧାଏ । ୩୨ ।
ଜ୍ୟେଷ୍ଠ ମାସ କୃଷ୍ଣପକ୍ଷ ପ୍ରତିପଦା ଦିନେ ଭାରଥ ଯୁଦ୍ଧ ହୋଏ
ଖରନ୍ତେକ ବୋଲି ଯେ ହୋଇଲା ପ୍ରଳୟେ । ୩୩ ।
ଖର ନାମେଣ ପୃଥୀ ପୁଣି ଜାତ ହୋଏ
ସେ ପୃଥିବୀ କାଳେ ଯେ ଭାରଥ ଯୁଦ୍ଧ ହୋଏ । ୩୪ ।
ଆଶ୍ୱିନ ଶୁକଳପକ୍ଷ ପଞ୍ଚମୀ ତିଥି ହୋଏ ପୁଣ୍ୟ
ଅନନ୍ତ ପ୍ରଳୟ ହୋଇଲା ଯେ ଉତକର୍ମ । ୩୫ ।
ଅନେକ ବାର ପ୍ରଳୟ ହୋଇଲାନ ଏ ବିଧି
ଅନେକ ବାର ଭାରଥ ଯୁଦ୍ଧ ହୋଇଲାନ ସିଦ୍ଧି । ୩୬ ।
ପ୍ରଳୟ ଉତ୍ତାରେଣ ପୃଥୀ ଏକ ଜାତ ହୋଇ
ପୃଥୀଏ ହୋଇଲେ ଯେ ପ୍ରଜାପତି ନବ ସୃଷ୍ଟି ଦାଦେ ଉଆଇ । ୩୭ ।
ଭୀଷ୍ମେ ପୁଚ୍ଛକଲେ ଶୁଣ ହୋ ବାମଦେବେ
ଚତୁଯୁଗ କେତେ ହୁଅଇ କହନ୍ତ ପ୍ରସ୍ତାବେ । ୩୮ ।
ବୋଲନ୍ତି ବାମଦେବ ତୁମ୍ଭେ ଶୁଣ ହୋ ଇଚ୍ଛାମୃତ୍ୟୁ
ମାନବ ଜନ୍ମେ ଜନ୍ମିଣ ତୁ ଭ୍ରମ କଲୁ ଚିତ୍ତୁ । ୩୯ ।
ଶୁଣ ହୋ ଗାଙ୍ଗେବ କାଳାନ୍ତର କଥା
ସଂପ୍ରତି କହିବା ଆଦ୍ୟ ମଧ୍ୟ ଅନ୍ତର ବାରତା । ୪୦ ।
ଏକ ମୁହୂର୍ତ୍ତିକୁ ଯେ ନିଶ୍ୱାସେକ ବୋଲି
ଛଅ ନିଶ୍ୱାସେ ଯେ ଲତାଏ କହିଲି । ୪୧ ।
ଷାଠିଏ ଲତାରେ ଦଣ୍ଡେ ଜାଣ ବୋଲି
ଏ ବେନି ଦଣ୍ଡରେ ଯେ ଘଡ଼ିଏ କହିଲି । ୪୨ ।

---

୩୨।୧ ତାତେକ, ତାଡ଼କା, ତାରକା ପ୍ରଭୃତି ପାଠାନ୍ତରମାନ ଅଛି ।
୩୩।୨ ଖିରନ୍ତକ ବୋଲି ଯେ ହୋଇଲା ପ୍ରଳୟେ । ( ଖ, ଘ, ଠ )
୩୪।୧ { ପଚ୍ଛଦ ନାମେଣ ଏକ ମହା ପ୍ରଳୟେ
ଛିଦ୍ର ନାମେଣ ଯେ ପୁଣ ପୃଥୀ ଜାତ ହୋଏ । (ବହୁପାଠ)
୩୯।୨ ମନୁଷ୍ୟ ଜନ୍ମ ଲଭିଣ ମତିଭ୍ରମ କଲୁ । ( ଙ୍, ଗ )

ବେନି ଦଣ୍ଡ ମଧ୍ୟେ ଘଡ଼ୟେକ ଜାଣ
ଗୃର ଘଡ଼ିରେ ଯେ ପ୍ରହରେ ପ୍ରମାଣ । ୪୩ ।
ଗୃର ପ୍ରହରେ ଯେ ଦିବସେକ ଅନ୍ତେ
ୟେ ବିଧି ରାତ ଯେ ହୋଅଇ ଲେଖନ୍ତେ । ୪୪ ।
ଷାଠିୟେ ଦଣ୍ଡ ଭୋଗ ରାତ ଦିନ ହୋନ୍ତେ
ୟେମନ୍ତ ସନ୍ଦେଶ ଯେ କହିଲେ ପଣ୍ଡିତେ । ୪୫ ।
ଊଣେଇଶ ଶତ ଆବର ସତାବନ ଲିତା
ୟେତେକ ଚଳଇ ରାତ ଦିବସ ଗଣିତା । ୪୬ ।
ୟେ ବିଧିରେ ଲେଖନ କରଇ ପ୍ରଜାପତି
ରାତ ଦିବସ ଷାଠିୟେ ଦଣ୍ଡ କହିଲ ଯୁଗତି । ୪୭ ।
ବରଷକ ତିନିଶ ଷାଠିୟେ ଦିବସକୁ
ୟେତେକ ବରଷେ ହୋୟେ ସଂସାର ଜନଂକୁ । ୪୮ ।
ବରଷକ ବୋଲି ତିନି ଶତ ଷାଠିୟେ ଦିବସକୁ
ୟେତେକ ଦିନ ଗଲେ ଦିବସେକ ଆକାଶ ଲୋକଂକୁ । ୪୯ ।
ୟେତେ ଦିନେ ବିହନ୍ତା ପୁରୁଷକୁ ଅଟଇ ଦିବସେ
ବିଶ୍ୱେଦେବାଂକୁ ଯେ ହୋଅଇଟି ନିମିଷେ । ୫୦ ।
ବିଶ୍ୱେଦେବାଂକୁ ୟେ ବିଧି ବର୍ଷେ ଯେବେ ହୋଇ
କର୍ମ ପୁରୁଷଂକୁ ତେବେ ଦିବସେକ ହୋଅଇ । ୫୧ ।
ୟେହିମତେ ବରଷେ ଅଷ୍ଟ ଉତ୍ତର ଶତେ
ୟେତେ ପୂରିଲେ ବସନ୍ତ ପାବକ ଦଇବତେ । ୫୨ ।
ୟେହାଂକର ଅଷ୍ଟ ଉତ୍ତର ଶତେକ ବରଷେ
ପ୍ରଜାପତି ପୁରୁଷଂକୁ ହୁଅଇ ବରଷେ । ୫୩ ।
ଅଷ୍ଟ ଉତ୍ତର ଶତେ ବରଷେ ୟେମାନେ ଯାନ୍ତି ନାଶ
ଅରିଷ୍ଟି ପୁରୁଷଂକୁ ହୁଅଇ ୟେକ ଯେ ଦିବସ । ୫୪ ।
ଅରିଷ୍ଟି ପୁରୁଷଂକୁ ଯେବେ ବର୍ଷେ ଭୋଗ ହୁଏ
ବିଦ୍ୟାଧର ପୁରୁଷଂକୁ ଦିବସେ ବୋଲୟେ । ୫୫ ।
ଅଷ୍ଟ ଉତ୍ତର ଶତେ ବରଷେ ୟେମାନେ ହୁଅନ୍ତି ଛତି
ବିଶାଖା ପୁରୁଷଂକୁ ହୋଅଇ ଦିବାନିଶି । ୫୬ ।

୫୬।୧ ଛତି—କ୍ଷତି ।

ଅବଶେଷ ହୁଅନ୍ତି ସେ କାରଣ ପୁରୁଷେ
ସେ କାରଣ ପୁରୁଷର ଅଷ୍ଟ ଉତ୍ତର ଶତେକ ବରଷେ । ୫୬ ।
ନାଶକର ଦେବତାଂକୁ ଯେ ହୁଅଇ ଦିବସେ
ସେହି ନାଶଯାଇ ଅଷ୍ଟ ଉତ୍ତର ଶତେକ ବରଷେ । ୫୮ ।
ସେହିମାଂକ ନାଶ ଗଲେ ଦଇବତ ପୁରୁଷେ
ସେହି ନାଶ ଯାଆନ୍ତି ଅଷ୍ଟ ଉତ୍ତର ଶତେକ ବରଷେ । ୫୯ ।
କରତାର ପୁରୁଷକୁ ହୁଅଇ ସେକ ଯେ ଦିବସେ
ସେହିମାଂକର ଅଷ୍ଟ ଉତ୍ତର ଶତେକ ବରଷେ । ୬୦ ।
ସେ ପ୍ରମାଣେ ବରଷ ଅଷ୍ଟ ଉତ୍ତର ଶତେ
ସେତେକ ନାଶ ଯାଆନ୍ତି ରୁଦ୍ର ଦଇବତେ । ୬୧ ।
ରୁଦ୍ର ଦେବତାର ଯହୁଁ ଆୟୁଷ କ୍ଷୟେ ଗଲା
ଚନ୍ଦ୍ର ଦେବତାଂକୁ ପୂର୍ଣ୍ଣ ବରଷେ ହୋଇଲା । ୬୨ ।
ସେହି ମାସ ସେହି ଦିନ ଯେ ଅବଧେ
ଚନ୍ଦ୍ରହିଂ ପୂର୍ଣ୍ଣ ଅନ୍ତ ହୋଇଲକ ନାଦେ । ୬୩ ।
ଚନ୍ଦ୍ର ଦେବତାଟି ଯହୁଁ ନାଶ ଗଲା
ତାରକ ଚନ୍ଦ୍ର ବୋଲି ଗଣିତା ହୋଇଲା । ୬୪ ।
ଚନ୍ଦ୍ର ଦେବତା ଯହୁଁ ଭୋଗ କଲା ସେତେ
ବ୍ରହ୍ମାଂକୁ ଦିବସେକ ହୋଇଲା ଯୁଗନ୍ତେ । ୬୫ ।
ଦିବସ ଅନ୍ତେ ଯହୁଁ ପ୍ରବେଶ ହେଲା ରାତ୍ରି
ସେ ଦିନୁଂ ସାଧ୍ୟେ ନିଦ୍ରା ଗଲା ପ୍ରଜାପତି । ୬୬ ।
ଯେତେବେଳେ ଦିବସ ହୋଇଥିଲା ବ୍ରହ୍ମାଂକୁ
ସଚରାଚର ଆତଯାତ କରୁଥିଲା ସଂସାରକୁ । ୬୭ ।
ଅସାଷ୍ଟମେ ନିଦ୍ରା ଯହୁଁ ଗଲେକ ବିରାଞ୍ଚି
ସମସ୍ତ ନାଶାଂଗତ ଆବର ନ ରହିଲା କିଛି । ୬୮ ।
ନବ ସୃଷ୍ଟି ନାୟକ ସେ କରନ୍ତା ବିଧାନ୍ତା
ତ୍ରଇଲୋକ୍ୟ ନାଶଗଲା କେହି ନାହିଁଂନା ରଖନ୍ତା । ୬୯ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ତିନି ପୁର ଲୋକେ
ବିନାଶାଂଗତ ହୋଇଲା ତିନି ତ୍ରଇଲୋକ୍ୟେ । ୭୦ ।

ନାଗଲୋକେ ଘସାଂଗତ ଭୁବନ ପାତାଳେ
ନରଲୋକେ ଘସାଂଗତ ଯେ ମର୍ତ୍ତ୍ୟ ମଣ୍ଡଳେ । ୭୧ ।
ଆକାଶେ ଘସାଂଗତ ସମସ୍ତ ଦଇବତେ
ନାଗଲୋକ ନରଲୋକ ସୁରଲୋକ ସହିତେ । ୭୨ ।
ଧରଣୀ ବୁଡିଲା ଜଳରେ ପ୍ରଳୟ ହୋଇଲା ଯୁଗତେ
ମିଳାଇ ଘସାଂଗତ ପୃଥ୍ୱୀର ସମସ୍ତ ଜନ ଜନ୍ତୁ ପର୍ବତେ । ୭୩ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ନ ରହିଲେ କିଛି
ଯେକାମାତ୍ର ନିରଞ୍ଜନ ଦେବତା ଆକାଶେ ରହିଅଛି । ୭୪ ।
ଦିବସହିଂ ଯେତେ ଘସହିଂ ହୋଇଲା ତେତେ
ପ୍ରଳୟ ହୋଇଲା ସୃଷ୍ଟି ବ୍ରହ୍ମାର ନିଦ୍ରା ଯାନ୍ତେ । ୭୫ ।
ଖ୍ୟଷ୍ମେ ବୋଇଲେ ଯେବେ ନଇଲୋକେ କେହି ନାହିଂ
ସେ ବ୍ରହ୍ମା ଦେବତା ପୁଣ ଶୋଇଥିଲା କାହିଂ । ୭୬ ।
କହନ୍ତ ସୁଦେବ ପଣ୍ଡିତ ମହାଗ୍ୟାଂତା
ଶୁଣ ହୋ ଖ୍ୟଷ୍ମ ତୁମ୍ଭେ କ୍ଷତ୍ରିୟ ମହାମନ୍ତ୍ରା । ୭୭ ।
କାଳେକ ବିଷ୍ଣୁ ଆଗ୍ରେ ଥାଇଟି ବେଦବ୍ରହ୍ମା
ଶୁଣ ହୋ ଗାଙ୍ଗେୟ ସେ ଯୁଗର ମହିମାଂ । ୭୮ ।
ସ୍ୱର୍ଗତଳେ ମର୍ତ୍ତ୍ୟ ମର୍ତ୍ତ୍ୟତଳେ ପାତାଳ
ପାତାଳ ତଳେ ଭୂଅତଳ ତହିଂର ତଳେ ଯେ ଅଟଇ ଘସାତ୍ତଳ ।୭୯।
ଘସାତ୍ତଳ ତଳେ ଅଟଇ ଅତ୍ତଳ
ଅତ୍ତଳ ତଳେ ସୁଧା ଯେ ନିତଳ । ୮୦ ।
ନିତଳର ତଳେ ଯେ ନର୍କାର ବାସ
ତହିଂର ତଳେ ଯେ ନିସନ୍ତ କପିଳାସ । ୮୧ ।
ସେ ନିସନ୍ତର ତଳେ ଭୁବନ ସଉନିଧି
ଶୁକ୍ଳାମ୍ବର ବିଷ୍ଣୁ ତହିଂ ଆସନ ପୟୋଧି । ୮୨ ।
ସଉନିଧିର ତଳେ ଯେ ଅନନ୍ତ ବଇକୁଣ୍ଠ
ଅବ୍ୟୟ ନାରାୟଣ ତହିଂ ବିଶ୍ୱରୂପେ ବଇଠ । ୮୩ ।

---

୭୩।୨   ଘସାଂଗତ ସ୍ଥାନରେ ନାଶାଂଗତ ପାଠଅଛି ।
୮୨।୨   ଶୁକ୍ଳାମ୍ବର ବିଷ୍ଣୁ ତହିଂ ଆସନ ଶୟନ ପ୍ରସିଦ୍ଧି । ( ଝ, ଛ )

ଅନନ୍ତ ବଇକୁଣ୍ଠ ତଳେ ନୀଳ ବଇକୁଣ୍ଠ
ନୀଳାମ୍ବର ନାରାୟଣ ତହିଂ ଯୋଗରେ ଅଭିଷ୍ଟ । ୮୪ ।
ତହିଂର ତଳେ ଯେ ବଇକୁଣ୍ଠ କାଳନ୍ଦୀ
କାଳନ୍ଦୀ ନାରାୟଣ ଆସନ ସମ୍ବାଦ । ୮୫ ।
ଆହୋ ବିଷ୍ଣୁ ଯେଥୁଂ ସେହି ଜାତ ଅବତାର ରାମ
କଳା କୃଷ୍ଣବର୍ଣ୍ଣ ଆବର ମତ୍ସ୍ୟ କୂର୍ମ । ୮୬ ।
କୋଳରୂପ ନରସିଂହ ବାମନ ବଳରାମ
ରେଣୁକା ଗର୍ଭୁଂ ଜାତ ହୋଇଲେ ପ୍ରଶୁରାମ । ୮୭ ।
କଉଶଲ୍ୟାର ଗର୍ଭୁ ଶ୍ରୀରାମଚନ୍ଦ୍ର ଜାତ
ଦେବକୀର ଗର୍ଭୁ ଶ୍ରୀକୃଷ୍ଣ ସମ୍ଭୂତ । ୮୮ ।
ବଉଦ୍ଧ କଳଂକୀ ଦଶ ଅବତାର
ସେ ନିରାକାର ତହୁଂ ସମସ୍ତ ବାହାର । ୮୯ ।
ବ୍ରହ୍ମ ବଇକୁଣ୍ଠ ଅଛି ତହିଂର ତଳେ
ବ୍ରହ୍ମ ନାରାୟଣ ତହିଂ ବିଜୟେ ସର୍ବକାଳେ । ୯୦ ।
ସେ ବ୍ରହ୍ମ ନାରାୟଣ ନାଭିରୁ ବାହାର ପଦ୍ମନାଭ ଗୋଟି
ଅଶୀ ପଦ୍ମ ଯୋଜନ ସେ ବ୍ରହ୍ମାଣ୍ଡ ଯାକ ଘୋଟି । ୯୧ ।
ସେ ପଦ୍ମ ଗୋଟି ଅମଳାନ ସର୍ବକାଳେ
ଅତୁଟ ଅକାଟ ହୋଇଥାଇ ସର୍ବଦା ଥାଇ ଜଳେ । ୯୨ ।
ସେ ପଦ୍ମ ଗୋଟିକରେ ରାତ୍ର ଦିବସ ଥାଇ ଯେ ବିଧାତା
ଦିବା ରଜଣୀ ନ ଛାଡଇ ସେ ବିଷ୍ଣୁର ଆଶ୍ରିତା । ୯୩ ।
ସେ ପଦ୍ମ ଗୋଟିକରେ ନିତ୍ୟ କର୍ମ ଆହାର ନିଦ୍ରା ନାହିଂ
ତେଣୁ ପିତାମହ ପଦ୍ମଯୋନି ନାମ ବହି । ୯୪ ।
ସେ ପଦ୍ମ ଗୋଟିକରେ ନିଦ୍ରାଗତ ଧାତା
ସେ ପଦ୍ମ ପାଖୁଡ଼ା ପରିହରଣ ହୋଇ ଥାଇଟି ନିଶ୍ଚିନ୍ତା । ୯୫ ।
ଦିବସ ରଜଣୀ ଯେ ନିଦ୍ରାଗତ ସୁଖେ
ନିଦ୍ରା ଭାଙ୍ଗିଲେ ଚେତି ଉଠଇ ଚଉମୁଖେ । ୯୬ ।

---

୮୫।୨ { କଳଂକୀ ନାରାୟଣ ତହିଂ ଆସନ ସମ୍ବାଦ ( ଗ, ଙ, ଠ )
{ କଳପି ନାରାୟଣ ତହିଂ ଆସନ ସମ୍ବାଦ । ( ଊ, ନ )

ସୃଷ୍ଟି ନ ଦେଖି ସେ ଭାଳଇ ବିରଞ୍ଚି
ସେ ପଦ୍ମରୁ ମଞ୍ଜି ପକାଇ ମେଦିନୀ ପୁଣ ସଞ୍ଚି । ୯୭ ।
ଦେବ ଦାନବ ମାନବ ନାଗଲୋକ ହେତୁ
ଯେହ୍ନାଂକର ମୂଳେ ଗୃହଖାନ ଚଉରାଶୀ ଲକ୍ଷ ଜୀବଜନ୍ତୁ । ୯୮ ।
ସ୍ୱେଦଜ ଅଣ୍ଡଜ ଜରାୟୁଜ ଉଦ୍ଭିଜ
ସସ୍ଥୂଳ ସଞ୍ଚିତ ନାଥ ସକଳ ବୃତ୍ତି ସିର୍ଜଜ । ୯୯ ।
ସୂର୍ଯ୍ୟବଂଶ ସୋମବଂଶ ମୂଳେଣ ଯେହ୍ନାଂକର
ବ୍ରହ୍ମା ରୁଦ୍ର ଅନନ୍ତ ବଂଶ ଯେ କେଶରୀ । ୧୦୦ ।
ବୃଷ୍ଣି ବଂଶ ଯଦୁବଂଶ ଭୋଜବଂଶ ହଇହର ବଂଶ
କଶ୍ୟପ ଅଙ୍ଗିରା ଭୃଗୁ ଆଦି ବିଶେଷ । ୧୦୧ ।
ପ୍ରଚଣ୍ଡ ଦୁର୍ଦ୍ଦଣ୍ଡ କାଶୀ କଉଶିକ
କନ୍ଧ ମହ୍ଲାର ଶବର ଅଠର ବଂଶ ଲୋକ । ୧୦୨ ।
ସତ୍ତ୍ୱେଣ ମଇଂଷାସୁରକୁ ବଧ କଲେ ଦୁର୍ଗା
ଚଉରାଶୀ ଖଉଣୀ ବଳ ମାଇଲେ ଦେବୀ ଯୋଗା । ୧୦୩ ।
ଅସୁର ବଂଶେ ଯାତ ହୋଇଲା ହିରଣ
ନରସିଂହ ରୂପେ ତାକୁ କଲେକ ବିଦାରଣ । ୧୦୪ ।
ଅସୁର ବଂଶରେ ଜାତ ହୋଇଲା ରାବଣ
ସୂର୍ଯ୍ୟବଂଶେ ଜାତ ଶ୍ରୀରାମ ଲଇକ୍ଷଣ । ୧୦୫ ।
ତ୍ରେତୟା ଯୁଗରେ ଯେ ହରଣ କଲା ସୀତା
ଶ୍ରୀରାମ ନାରାଜେ ରାବଣ ହୋଇଲା ନାଶଂଗତା । ୧୦୬ ।
ଇନ୍ଦ୍ରଜିତ କୁମ୍ଭକର୍ଣ୍ଣ ରାବଣ ମାଇଲେ
ସପତଶାଳା ଛେଦି ବାଳୀକି ବଧ କଲେ । ୧୦୭ ।
ଆହୋ ଗାଙ୍ଗେୟ ତ୍ରେତୟା ଅନ୍ତରେ ହୋଇଲା ଦ୍ୱାପର ଯୁଗ
ରଙ୍ଗା ଅବତାରେ ପୁଣି ଜନମିଲେ ଶ୍ରୀରଙ୍ଗ । ୧୦୮ ।
ସକଳ ଗୋପାଙ୍ଗନା ସଙ୍ଗରେ ବିହରି
କଂସକୁ ମାରି କରି ଅବନୀ ଭାର ଉଦ୍ଧରି । ୧୦୯ ।

---

୧୦୧।୧ ହଇହର ବଂଶ—ହୈହୟ ବଂଶ ।

ଜାଦ୍ବ ନାରକା ଯେ କାଳଦମନ
ଗୋସିଂହ ଦଇତ ବିପୁରୀ ଅନେକ ଅସୁରମାନ । ୧୧୦ ।
ସକଳ ସଂହରିଲେ ଦେବ ମଧୁହାରୀ
ପାଣ୍ଡବଂକ ହାତେ ଅବନୀରେ ଜାତ ହରି । ୧୧୧ ।
କଉରବେ ପାଣ୍ଡବ ତୁମ୍ଭେ ଅଟ ସହୋଦର ବେନି
ବଳରାମ ଦୁର୍ଯୋଧନ ବିଷ୍ଣୁ ଯେ ଫାଲଗୁନି । ୧୧୨ ।
ସମର କରିବାକୁ ହୁଅନ୍ତେ ଅନ୍ୟୋଅନ୍ୟ
ତୁମ୍ଭରେ ଘରଭର ଉଶ୍ୱାସ ହୋଇବ ମେଦିନୀ । ୧୧୩ ।
ବାମଦେବ ବୋଇଲେ ଯେନ ଅନୁକୂଳ
ଯେତେ ବାଗେ ସପତାଙ୍ଗ ପାଞ୍ଜିରି ନିଚଳ । ୧୧୪ ।
ଯେତେ ମାର୍ଗେ କହିଲେ ଚରିତ ସକଳ
ଯୁଦ୍ଧ କରିବାକୁ ମାଗିଲୁ ଅନୁକୂଳ । ୧୧୫ ।
ମହାମନ୍ତ୍ର ବଳେ ଗାୟତ୍ରୀ ଅର୍ଥ ସଞ୍ଜ
ଜପୁ ତୁ ଜଗତ ତାରଣ ବିରଞ୍ଚି । ୧୧୬ ।
ଅନାଦି ଯୋଗାଧିନାଥ ତୁ ତାରନ୍ତା ସପୂଳ
ଯାବତ ଚନ୍ଦ୍ର ଦିବାକର ଆଦିମୂଳ । ୧୧୭ ।
ପୃଥୀ ଆପ ତେଜ ଯେ ବାୟୁବ୍ୟ ଆକାଶ
ଯେ ପଞ୍ଚ ଧାତୁ ଯେନି ଚଳଇ ମହାରସ । ୧୧୮ ।
ଦେବଂକର ମୂଳ ତୁ ଯେ ମନ୍ତ୍ରଂକର ମୂଳ
ଧାତୁ ବିଦ୍ୟା ପୁରୁଷ ଚତୁର୍ଦ୍ଦଶ ବିଦ୍ୟା ସକଳ । ୧୧୯ ।
ଅକ୍ଷୟେ ପୁରୁଷ ତୁ ଅଭୟେ କାଳ ବଞ୍ଚା
ଯେ ଘୋର ସଂକଟ ନାଥ ତୁହି ସେ ତାରନ୍ତା । ୧୨୦ ।
ଅନର୍ପିପ କର୍ମ ଯେ କରତା ମନ ସଞ୍ଚା । ୧୨୧ ।
ଯେ ସଂସାର ସାଗର, ସାର ଅନ୍ତୁ ତୁହି
ପରମ ଗ୍ୟାତା ନାଥ ମୋତେ ଶାସ୍ତ୍ର ଦେବା କହି । ୧୨୨ ।

---

୧୧୭।୧ { ଅନାଦି ଯୁଗାଦି ନାଥ ତୁ ତାରନ୍ତା ସକଳ । ( ଙ, ଞ, ଥ )
କାରଣ ତାରଣ ନାଥ ତୁ ସଂସାର ( ଅନନ୍ତ ) ସପୂଳ । ( କ, ଟ )

ତୁ ସିର୍ଜିଲୁ ନାଥ କାଠ ପାଷାଣ ମୃତ୍ତିକା
ଲୁହା ତମ୍ବା ପିତଳ କଂସା ସୁବର୍ଣ୍ଣ ରୂପା ରେଖା । ୧୨୩ ।
ଯେତେ ବାଗେ ଘଟଣ କରଇ ବନ୍ଧାଣି
ତୋହୋର ଜୀବନ୍ୟାସେ ତାକୁ ଦେବତା ବୋଲି ଜାଣି । ୧୨୪ ।
ହରି ହର ଇନ୍ଦ୍ର ଚନ୍ଦ୍ର ପବନ ବରୁଣ ବଣ୍ୟାନର ତପନ
ଦିଗପାଳ ମୂର୍ତ୍ତି ଦେବ ତୁହ୍ମ ସେ ହାଦେ ଧ୍ୟାନ । ୧୨୫ ।
ନାନା ମୂର୍ତ୍ତି ଧରି ବସନ୍ତ ସକଳ ଦିଗପାଳ
ସମସ୍ତ ପୂଜା ଘେନନ୍ତି ନାଥ ତବ ମନ୍ତ୍ର ବଳ । ୧୨୬ ।
ସର୍ବ ମୂର୍ତ୍ତି କରୁ ନାଥ ତୁ ଆପଣେ ଅମୂର୍ତ୍ତି
ନ ଇଚ୍ଛିଲୁ ପୂଜା ତୁ ଶୂନ୍ୟେଣ ଶାନ୍ତ ମୂର୍ତ୍ତି । ୧୨୭ ।
ସ୍ୱାମୀ ତୋହୋର ମନ୍ତ୍ର ଘେନି ସମସ୍ତେ ପାଆନ୍ତି ପୂଜା
ତୋତେ ପୂଜିବାକୁ କେ ବ୍ରହ୍ମାଣ୍ଡେ ଅଛି ଦୁଜା । ୧୨୮ ।
ତୋହୋର ପ୍ରସନ୍ନେ କାଷ୍ଠ ପାଷାଣ ଗୋଟିକି ଦେବତା କଲେ
କେ ତାହା ଜୀବନ୍ୟାସ କରିବ କାହାର ବେଳେ । ୧୨୯ ।
ନ ବିଗୃରି ସଂସାର ଯେ ହୋଉଅଛି ବଣା
ଅପୂଜା ବୋଲି ତୋତେ ମୂର୍ଖେ ଦେ କହଣା । ୧୩୦ ।
ବାମେ ଗୁରୁ ବଦନେ ଅଥର୍ବ ଉଚ୍ଚାରି
ପଶ୍ଚିମ ବଦନରେ ବିରଞ୍ଚି ଋକବେଦ ଘୁରି । ୧୩୧ ।
ଡାହାଣେ ସଞ୍ଚିତ ଯେବଣ ବଦନ ବିଧାତା
ମହାବ୍ରହ୍ମ ଭେଦ ସାମ ଯେ ସଂହିତା । ୧୩୨ ।
ଆଗେ ବ୍ରହ୍ମ ବଦନେ ଯଜୁର୍ବେଦ ଘୂରି
ଚତୁର ମୁଖେ ଗୃରି ବେଦ ଧ୍ୟାନ କରି । ୧୩୩ ।
ସ୍ୱାମୀ ନ ପାଇଲି ପଦମନ୍ତ୍ର ନ ଗଲି ନାନା ତୀର୍ଥ
ନ ସାଧିଲି ଯୋଗଲିପ୍ତେ ନ ଅଭ୍ୟାସିଲି ମନ୍ତ୍ର । ୧୩୪ ।

---

୧୩୦।୨ ଅପୂଜ୍ୟକ ବୋଲି କହନ୍ତି ତୋତେ ମୂର୍ଖେ ହାଦେ କହଣା । ( ଚ, ଘ, ଛ)
୧୩୩।୨ ଗୃରମୁଖେ ସ୍ୱାମୀ ଯେ ଗୃରବେଦ ଉଚ୍ଚାର । ( ଙ, ଥ, ଓ, କ )
୧୩୪।୨ ନ ପଶିଲି ଯୋଗବଳେ ନ ସାଧିଲି ପଦମନ୍ତ୍ର ( ଚ, ଘ )

ନ ପଢିଲି ମନ୍ତ୍ର ମୁଂ ନ ଶିଖିଲି କଛୁ
ଅପ୍ରସନ୍ନେ ପ୍ରସନ୍ନ ମୋତେ ଦେବା ହିଙ୍ଗୁଳାଛୀ । ୧୩୫ ।
ସଫୁଳ ଜନ ଚନ୍ତାମଣିଂକ ମୁଂ ଭାବଇ ହୃଦଗତେ
ପାଇଲି ପରମ ଗତି ଅଣ ଅଭଗତେ । ୧୩୬ ।
ନମୋ ନମୋ ବ୍ରହ୍ମା ରୁଦ୍ର ତୁ ସିଦ୍ଧ ଯୋଗ ପଞ୍ଚମୁଦ୍ରା
ପାର୍ବତୀ ପ୍ରାଣନାଥ କରେ ତ୍ରିଶୂଳ ଗଦା । ୧୩୭ ।
ଅନେକ ତ୍ରିପୁରାନ୍ତେକ ନାଶିଲୁ ଈଶିତେ ତୋହୋର କୋପେ
କାମ ଦହନ ହେଲା ତୋର ଅନଳ ଦୃଷ୍ଟି ତାପେ । ୧୩୮ ।
ଜୟ ତୁ ପରମଈଶ୍ୱର ଅଭୟେ ନିରାକାର
ଜୟ ତୁ ପରମେଶ୍ୱର ପରମ ଯୋଗେଶ୍ୱର । ୧୩୯ ।
ଜୟ ତୁ ମାଧବ ମଙ୍ଗଳ ଶୁଭ ବାଞ୍ଛା
ଜୟ ତୁ ପରମେଶ୍ୱର ସଂସାର ଜନ ରକ୍ଷା । ୧୪୦ ।
ଜୟ ତୁ ମାଧବ ଯେ ଜଗତ ଚିନ୍ତାମଣି
ଜୟ ତୁ ମାଧବ ଯେ ତ୍ରିଭୁବନ କାରେଣୀ । ୧୪୧ ।
ଜୟ ତୁ ପରମେଶ୍ୱର ଲକ୍ଷ୍ମୀର ବଲ୍ଲଭ
ଜୟ ତୁ ପରମେଶ୍ୱର ତୁଳସୀ ପ୍ରିୟଭାବ । ୧୪୨ ।
ଜୟ ତୁ ମାଧବ ଯେ ଶବରୀ ବଲ୍ଲଭ
ଜୟ ତୁ ମାଧବ ଯେ ମାଳତୀ ପ୍ରିୟଭାବ । ୧୪୩ ।
ଜୟ ତୁ ମାଧବ ଯେ ଭାରତୀର ପ୍ରାଣମଣି
ଜୟ ତୁ ପରମେଶ୍ୱର ଦେବ ଚକ୍ରପାଣି । ୧୪୪ ।
ସ୍ୱାମୀ ସ୍ତମ୍ଭନ ମୋହନ ଯେ ବଶ ଉଚ୍ଚାଟନ ବିଦ୍ୟା
ଧରଣ ଧାରଣ ଉଲ୍‌କ ଗ୍ରନ୍ଥିକା ପରସିଦ୍ଧା । ୧୪୫ ।
ବେନିସହସ୍ର ଜିହ୍ୱାରେ ଯେ ବାସୁକି ନାଗବର
ତବ ଚରିତ କହି ଯେ ନ ପାରଇ ବେଦବର । ୧୪୬ ।

---

୧୩୭।୧ ନମୋ ବିରଞ୍ଚି ପରମ ବ୍ରହ୍ମ ମୁଦ୍ରା । ( ଘ, ଙ, ଝ, ଟ )
୧୩୫।୨ . ହିଙ୍ଗୁଳାଛୀ—ହିଙ୍ଗୁଳାକ୍ଷୀ ।
୧୩୮।୧ ଈଶିତା—ସ୍ୱାମୀ, ପ୍ରଭୁ ।

ସ୍ୱାମୀ ସଚରାଚର ବ୍ରହ୍ମଥାଇ ଯାହାର ହୃଦବସ ଥିଲେ
ପ୍ରଳୟ ହୋଇ ନାଥ ତୋହୋର ନିଦ୍ରାଗଲେ । ୧୪୭ ।
ମନୁଷ୍ୟ ଧାରଣ ନାଥ ଜଗତଜନ ଶନ୍ତା
ମୁହିଂ ମାନବ ଜନ୍ମ ତୋତେ କସ ଯେ ସେବନ୍ତା । ୧୪୮ ।
ସତ୍ୟଭାମା ଜାମ୍ବବନ୍ତି କାଳନ୍ଦୀ କମଳା
ତୁଳସୀ ସଉଭାଗ୍ୟବନ୍ତି ରୁକ୍ମଣୀ ଯାହାର ଅବଳା । ୧୪୯ ।
ଶିବ ସୁର ଧାତା ଯାହାର ଚରଣତଳେ ବନ୍ଦେ
ଶୁକ ନାରଦ ବ୍ୟାସ ପାରେଶ୍ୱର ଯାରେ ସେବେ । ୧୫୦ ।
ଧ୍ରୁବ ପ୍ରହଲ୍ଲାଦ ହନୁ ଗରୁଡ ଭୂଷଣ୍ଡ
ଅମର ହୋଇଲେ ଜପି ଆବର ମାରକଣ୍ଡ । ୧୫୧ ।
ସମୂଳ ସଂସାର ନାଥ ତୋ ଚରଣେ ଶିର ଲୁଣ୍ଠ
ଗିରିଜା ପ୍ରସନ୍ନେ କହିଲା ଚଉ ମୋହୋର ଆନେ ଯେ ଜ ବଳ୍ଗ । ୧୫୨ ।
ବ୍ରହ୍ମବେଷ୍ଟ ଅଗସ୍ତି ଚରଣେ ମମ ଧ୍ୟାନ
ଶୂଦ୍ରମୁନି ସାରେଳା ଦାସ ଭବଇ କୁମ୍ଭ ଋଷିର ନନ୍ଦନ । ୧୫୩—୭୩୨ ।

---

## କୌରବ ପାଣ୍ଡବଙ୍କର ଯୁଦ୍ଧ ସଜ୍ଜା

ମକର କୃଷ୍ଣ ଦ୍ୱିତୀୟା ବାର ବୃହସ୍ପତି
ଅଶ୍ଳେଷା ନକ୍ଷତ୍ର ସେହି ଦିନର ପାହାନ୍ତି । ୧ ।
ବାଣିଜ୍ୟ ନାମେ କରଣ ସଉଭାଗ୍ୟ ନାମେ ଯୋଗ
ମକର ସଂକରାନ୍ତିକ ତିନଦିନ ଭୋଗ । ୨ ।
ଭ୍ରମନ୍ତି କାତ୍ୟାୟିନୀ ମହାଲକ୍ଷ୍ମୀ ମୂର୍ତ୍ତି
ମଗର ବାହାନେ ଯୋଗିନୀ ଉତ୍ତରରେ ସ୍ଥିତି । ୩ ।
ତାରବାର ଯୋଗ ତିଥି ନକ୍ଷତ୍ର କରଣ
ସମସ୍ତ ସିଦ୍ଧ ବୋଲି କହିଲେକ ପୁଣ । ୪ ।

---

୪।୧ ଦ୍ୱିଷ୍ଟି ବ୍ୟତିପାତ ଯେନ୍ନ ଦେଖି କରଇ ଗମନ । (ଘ, ଟ)
୧୫୨।୧ ଲୁଣ୍ଠ—ଲୋଟ ।

ବାମଦେବ ପଣ୍ଡିତେ କହିଲେ ସପତମେ
ଏକାଦଶ ବୃହସ୍ପତି ପୃଷ୍ଠା କକଡା ଅନୁକ୍ରମେ । ୫ ।
ଯୋଗିନୀ ଚକ୍ର ଖଣ୍ଡ ପାତିଲେ ପ୍ରୋହିତେ
ଅଷ୍ଟ କୋଣେ ଗୃହ ଦ୍ୱାରେ ଚଳନ୍ତି ଯେମନ୍ତେ । ୬ ।
ପ୍ରଥାପ ନବମୀ ମାହେଶ୍ୱରୀ ପ୍ରବେଶ ପଲାଣି
ହଂସ ପିଠିରେ ଯେ ଚଳଇ ବ୍ରହ୍ମାୟଣୀ । ୭ ।
ଦୁଷ୍ଟାୟା ଦଶମୀ ଯୋଗିନୀ ଉତ୍ତର ଭାଗେ
ଚଳଇ ମାହେଶ୍ୱରୀ ବୃଷଭ ଚଢି ବେଗେ । ୮ ।
ତୃତୀୟା ଏକାଦଶୀ ଅଗ୍ନିକୋଣେ ଉଦେ
ଚଳଇ କଉମାରୀ ମୟୂର ବାହାନେ ହାଦେ । ୯ ।
ଚତୁର୍ଥୀ ଦ୍ୱାଦଶୀ ନଇଋତେ ନାରାୟଣୀ
ଖଗେଶ୍ୱର ବାହାନେ ଚଳଇ ହାଦେ ପୁଣି । ୧୦ ।
ପଞ୍ଚମୀ ତ୍ରୟୋଦଶୀରେ ଚଳଇ ଦକ୍ଷିଣେ
ମହିଷ ବାହାନେ ବାରାହୀ କରଇ ପୟାଣେ । ୧୧ ।
ଷଷ୍ଠୀ ଚତୁର୍ଦ୍ଦଶୀରେ ଚଳଇ ପଶ୍ଚିମେ
ଇନ୍ଦ୍ରାୟଣୀ ଗମଇ ମହାନାଗର ବାହାନେ । ୧୨ ।
ସପତମୀ ପୂର୍ଣ୍ଣିମାରେ ବାୟୁବ୍ୟେ ଚାମୁଣ୍ଡା
ମୃତ୍ତପିଣ୍ଡ ବାହାନେ ଚଳଇ କରେ ଧରି ଖପର ଖଣ୍ଡା । ୧୩ ।
ଅଷ୍ଟମୀ ଅମାବଇ ଯେ ବଜୟେ ଈଶାନ୍ୟେ
ଚଳଇ ମହାଲକ୍ଷ୍ମୀ ମଗର ବାହାନେ । ୧୪ ।
ଏ ବଧି ଅଷ୍ଟ କୋଣେ ଷୋଳହ ଘଡି ବେଳା
ଚତୁର୍ଥ ଦଣ୍ଡେ ଚଳାଇ ଦେବୀ ଶ୍ରୀ ସର୍ବ ଯେ ମଙ୍ଗଳା । ୧୫ ।
ପ୍ରହରକ ମଧ୍ୟରେ ଭ୍ରମଇ ସେ ଦେବୀ ମହୀ
ଅଷ୍ଟ ପହଣ୍ଡ ବଢାବଇ ପୁଣିହିଂ ହାଦେ ରହି । ୧୬ ।
ଏମନ୍ତେ ଯୋଗିନୀ ମୁଖେ ପଡଇ ଯେଉଂ ଜନ
ଆୟୁଷ୍ୟ ଶିରୀ ଭୁଞ୍ଜଇ ସବ କାର୍ଯ୍ୟ ହୁଅଇ ନଧାନ । ୧୭ ।

---

୧୬।୨ ପ୍ରହରେକ ଅର୍ଦ୍ଧେଣ ଭ୍ରମଇ ଦେବୀ ମହୀ ( କ, ଚ, ନ )

ସାତବାର ଯୋଗ୍ନୀ ରହନ୍ତ ଯେ ପାଢଲେ ବାମଦେବ
ରବିବାରେ ଉଦେ ପୂର୍ବଦିଗ ଭାଗ । ୧୮ ।

ଶନିର ବାରେ ଦେଖା ବାୟୁବ୍ୟ କୋଣେ ରହଇ
ପଣ୍ଡିତ ବାରରେ ଅଗ୍ନିଶାନ୍ୟ କୋଣରେ ଚଳଇ । ୧୯ ।

ବୃହସ୍ପତି ବାରେ ଯୋଗ୍ନୀ ଦକ୍ଷିଣ ଦିଗେ ଥିତି
ଚନ୍ଦ୍ର ବାରେ ଦେଖା ଯେ ଉତ୍ତରେ ରହନ୍ତି । ୨୦ ।

ମଗର ବାହାନେ ଯେ ମହାଲକ୍ଷ୍ମୀ ମୂର୍ତ୍ତି
ଦେଖାର ବଦନ ଯେ ନିର୍ମଳ ଚନ୍ଦ୍ର ଜ୍ୟୋତି । ୨୧ ।

ମଙ୍ଗଳବାରେ ଦେଖା ଯେ ପଶ୍ଚିମ ଦିଗେ ଚଳି
ଭୃଗୁବାରେଣ ଯୋଗିମା ପୂର୍ବ ଦିଗେ ଚଳି । ୨୨ ।

ପ୍ରତାପ ଗୁରୁବାରେ ପୂର୍ବ ଦିଗେ ଉଦେ
ଭୁମନ୍ତ ଗୃହଦଣ୍ଡ ଉତ୍ତାରୁ ଶୁଭ ହେବ ହାଦେ । ୨୩ ।

ବେନଘଡି ଉତ୍ତାରୁ ଚଳିବ ତୋ ରଥ
ସକଳ କାର୍ଯ୍ୟ ତୋତେ ହୋଇବ ପ୍ରାପତ । ୨୪ ।

ଦଧିବାବନ ସୁମରଣ ଶୁଭ ଅନକୂଳେ
ଉଠିଲେ କଉରେବ ବଳ ଶୁଭ ଯେ ମଙ୍ଗଳେ । ୨୫ ।

ଚଳିଲେ ସର୍ବ ବୀରେ ଯେ ଯାହା ଭୁବନେ
ନିତ୍ୟ କର୍ମ ସାରି ରାଜା ଭୁଞ୍ଜିଲେ ଅମିୟ ଭୋଜନେ । ୨୬ ।

ମଣ୍ଡନ୍ତି ରଥବର ନିଯୋଜି ମସ୍ତ୍ରେମଲ୍ଲ
ଗଜ ଅଶ୍ୱ ସୁଲକ୍ଷଣମାନ ସଜାଉନ୍ତି ମହାରଥୀ । ୨୭ ।

ତୋଳନ୍ତି ଧନୁ ଯେ ମାଜନ୍ତି ଧନୁଗୁଣ
ନାରାଜ ତୀକ୍ଷମୂନା ଆୟୁତନ କରନ୍ତି ବୋଣ । ୨୮ ।

ବାଜନ୍ତି ବୀର ତୂର ଯେ ଅତିଅ କୁତୂହୋଳେ
ନିଶାଣର ଘାୟେ ଯେ କୁରୁମ ଉଛୁଳେ । ୨୯ ।

---

୨୮।୧ ସୁବର୍ଣ୍ଣର ଧନୁକୁ ସାଜନ୍ତି ସର୍ବଗୁଣ । ( ଥ, ନ, ଡ )

ସକଳ ଯୋଦ୍ଧାଂକର ଘରେଣ ଉତ୍ସବ
ଯେ ଯାହାର ମତେ ସଜ ଅସ୍ତ୍ର ସମ୍ଭବ । ୩୦ ।
ଚିହ୍ନ ଚବାଳ ରଥେ ଯେ ଉଡନ୍ତ ଗଗନ ମାର୍ଗେ
ରଥଂକର ଶିଖାୟେ ଗଗନ ମାର୍ଗେ ଲାଗେ । ୩୧ ।
ସୁବର୍ଣ୍ଣର ରଥେ ଯେ ଶାର୍ଦ୍ଦୋଳା ଚର୍ମ ଘୋଇ
କେଶରୀ ଧ୍ୱଜ ବାନା ରଥ ଉପରେ ଉଡଇ । ୩୨ ।
ଦଧିବାମନ ସୁମରି ମହାମନ୍ତ୍ର ଅପରାଜିତା
ନରସିଂହ କବଚ ମନ୍ତ୍ର ସହସ୍ର ନାମ ଭଣିତା । ୩୩ ।
ଇନ୍ଦ୍ରାୟଣୀ ଯୋଗିନୀ ଯେ ସହସ୍ରନାମ ପଠନା
ଅନେକ ବେଦମନ୍ତ୍ର ସାଧନ୍ତି ଅପର୍ଣ୍ଣା । ୩୪ ।
ଦଧିବାମନ ଚିନ୍ତା କରୁଥାନ୍ତି ନିତ୍ୟେ
ପଢନ୍ତି ବ୍ରାହ୍ମଣେ ଆପଦ ଶାନ୍ତି ଅର୍ଥେ । ୩୫ ।
ଯେସନେକ ସମୟେ ଗୁପତେଣ ମୁନୀନ୍ଦ୍ର
ବାରୁଣାବନ୍ତେ ଯାଇଂ ପାଣ୍ଡବଂକର ଅଗ୍ରତେ କହି । ୩୬ ।
ସ୍ୱାମୀ ଆସନ ସମାର୍ଜନ କଲେ କଉରବେ
ପ୍ରଥମେ ସେନାପତି ହୋଇଲେ ଗାଙ୍ଗେବେ । ୩୭ ।
ଦ୍ରୋଣ କର୍ଣ୍ଣ ଶଲ୍ୟ କୃପାଚାର୍ଯ୍ୟ ଭୂରି
ସୋମଦତ୍ତ ବାହ୍ଲିକ ଯଦ୍ୟରଥ କେଶରୀ । ୩୮ ।
ଯେତେକ ରଥୀ ମୂଳେ ଅନେକ ମହାଯୋଧୀ
ଯେକା ମାତ୍ର ଅଶ୍ୱତ୍ଥମାକୁ ମୁକୁଟ ନ ବାନ୍ଧି । ୩୯ ।
ଯୁଧିଷ୍ଠିର ବୋଇଲେ ଯେତେ ବଡ ଛତ୍ରୀ
କି ଅର୍ଥେ ବରଣ ତାକୁ ନ କଲା କୁରୁପତି । ୪୦ ।
ସହଦେବ ବୋଇଲା ଦେବ ଅଶ୍ୱତ୍ଥମା ମନ୍ଦ କୃତ୍ୟ କଲା
ଛତ୍ରୀ ହୋଇ ନିର୍ଜ୍ଜିବ ବର ସେ ମାଗିଲା । ୪୧ ।

---

୩୪ { ଆଉର କ୍ୟୋଢ ଧନୁ ଶିଶ୍ମୁନା ।
ଅନେକ ମଙ୍ଗଳ ଯୋଗାବନ୍ତି ଦିବ୍ୟ ବାରାଙ୍ଗନା । ( କ, ଛ, ଡ )

ମାନଗୋବିନ୍ଦ ରାଜା ସେ ଅଟଇ ମହାଭାଗ୍ୟଂ
ଶୂରବନ୍ତ ପଣ୍ଡିତ ସେ ଅଟଇ ସର୍ବଗ୍ୟଂ । ୪୨ ।
ମରଣକୁ ନିସତ ହୋଇଣ ଯେଉଣ ଯୋଧୀ
ତେଣୁ ସେ ମାନଗୋବିନ୍ଦ ଅଶ୍ୱତ୍ଥମାକୁ ମୁକୁଟ ନ ବାନ୍ଧ । ୪୩ ।
ସହଦେବ ବାକ୍ୟ ଶୁଣି ଯେ ମଧୁରିପୁ
ଜୟଶଙ୍ଖ ଧ୍ୱନି କଲେ ଜଗତ ଆଧିପୁ । ୪୪ ।
ଗୋବିନ୍ଦେ ବୋଇଲେ ତୁମ୍ଭେ ଶୁଣ ଧର୍ମରାୟେ
ସେ ପଞ୍ଚୁ ରାଜ୍ୟ ପ୍ରାପତ ତୋତେ ହୋଇଲା ନିଚୟେ । ୪୫ ।
ନିଙ୍କବ ଅଶ୍ୱତ୍ଥମା ଅଟଇ ଅମର ଯୋଧୀ
ବଜ୍ରସେହ୍ନା ଶରୀର ତା ଶସ୍ତ୍ର ନ ଭେଦ । ୪୬ ।
ସ୍ୱାମୀ ସଞ୍ଜୟେ ନିଶୋଧନ ତାକୁ କଲକ ସରସ୍ୱତୀ
ଅଶ୍ୱତ୍ଥମାକୁ ଅବରଣ କଲା ଯେ କୁରୁପତି । ୪୭ ।
ସେନାପତି କରି ଯେବେ ଅଶ୍ୱତ୍ଥମାକୁ ମୁକୁଟ ବାନ୍ଧିଲା
ବଡାଇ ଦୁରପଦ ଦେବ ଆମ୍ଭନ୍ତ ପଡନ୍ତା । ୪୮ ।
ତୁଲ ମାସ ଅନ୍ତେ ଯେ ମଗୁଶିର ଶୁକଳ ପୂର୍ଣ୍ଣିମୀ
ସେ ଦିନ ପାଣ୍ଡବେ ଯେ ଗୃଡିଲେ ବାରୁଣାବନ୍ତ ଭୂମି । ୪୯ ।

ମାଘମାସ କୃଷ୍ଣ ପକ୍ଷ ଭୃଗୁବାର ଦିନ
ଉତ୍ତର ଫାଲଗୁନି ଗତେ ହସ୍ତା ଭୋଗ ଜାଣ । ୫୦ ।
କୃଷ୍ଣପକ୍ଷ ଭୃଗୁବାର ଉତ୍ତର ଫାଲଗୁନି ପଡିଲେ
ଅମୃତ ଯୋଗରେ କାର୍ଯ୍ୟ ସିଦ୍ଧି ହୁଏ ଭଲେ । ୫୧ ।
ତିଥି ବାର ନକ୍ଷତ୍ର ଯୋଗ କରଣ ବାର
ବିଜୟେ ପାଣ୍ଡବେ ଯେ ଜୟନ୍ତା ନାମେ ପୁରୀ । ୫୨ ।

ଯମୁନା ନଦୀ ବହଇ ଉତ୍ତର ବାହିନୀ
ବିଜୟେ ଧର୍ମନନ୍ଦନ ଶୁଭ ଅନକୂଳ ଘେନି । ୫୩ ।
ବିରାଟ ଦ୍ରୁପଦ ଧୃଷ୍ଟ ଯେ ଦ୍ୟୁମନେ
ଶିଖଣ୍ଡୀ ସହିତେ ପଣ୍ଡୁର ପଞ୍ଚୁ ନାନେ । ୫୪ ।

ବିରାଟର ନନ୍ଦନ ଯେ ଶଙ୍ଖ ଶ୍ୱେତ ଉତ୍ତର
ପ୍ରଶୁରାମ ସାରକ୍ଷେ ସେ ଅଟନ୍ତି ଧନୁର୍ଦ୍ଧର । ୫୫ ।

ଅର୍ଜୁନର ନନ୍ଦନ ଯେ କୁମାର ଅଭିମନ୍ୟୁ
ବାହୁତ ଯୋଦ୍ଧା ଯେ ଅଟନ୍ତି ଛତ୍ର ତନୁ । ୫୬ ।
କଣ୍ଠି ମୁକୁଟ ଶ୍ରୀକୃଷ୍ଣ ଘେନିଣ ଶ୍ରୀହସ୍ତେ
ମୁକୁଟ ବାନ୍ଧିଲେ ନେଇଣ ଅର୍ଜୁନର ମାଥେ । ୫୭ ।
ଅମର ମଣ୍ଡଳେ ଯେ ନିବାତକବଚ ବଧକାଳେ
ଜୟେମାଳା କଣ୍ଠି ଅର୍ଜୁନକୁ ଦେଲେ ଆଖଣ୍ଡଳେ । ୫୮ ।
ଦୁଃଖଯେ ପିନାକ ଅକ୍ଷୟେ ତୋଣ ବେନି
କେଶବ ଖଞ୍ଜିଲେ ଯେ ଶ୍ରୀକରେ ତାହା ଘେନି । ୫୯ ।
ପାତାଳୁଂ ମନଭେଦୀ ଶର ଦେଲେକ ବହନ୍ତି
ଶ୍ରୀଭୁଜେ ଧଇଲେ ତାହା ହରିଶ୍ଚନ୍ଦ୍ରର ନାତି । ୬୦ ।
ପାଶୁପତ ଶର ବନେ ଦେଲେକ କୈଳାସବାସୀ
ଯେଉଣ ଶର ଘେନି ହର ଅଗ୍ନିକ ତ୍ରିପୁର ବିନାଶି । ୬୧ ।
ବ୍ରହ୍ମ ଶକତି ଶୂଳ ଯେ ଶକତି ବଜ୍ର ଯେ ଶକତି
ଅମୋଘ ଶକତି ବାରୁଣୀ ଶକତି ଯେ ସୂର୍ଯ୍ୟାସ୍ତ୍ରତେଜ ଜ୍ୟୋତି । ୬୨ ।
ବୈଷ୍ଣବୀ ଚକ୍ର ଯେ ଗିରିଜାର ଦେଲା
ସେ ଚକ୍ର ଘେନି ଅର୍ଜୁନ ଅନେକ ଦଇତ ମାଇଲା । ୬୩ ।
ସୂର୍ଯ୍ୟାସ୍ତ୍ରତେଜ ଚକ୍ର ମାଳ ଚକ୍ର ଆବର ଚକ୍ର ସୁଦର୍ଶନ
ଶ୍ରୀଭୁଜେ ଧରି ରଥେ ଥୋଇଲେ ଭଗବାନ । ୬୪ ।
ଅନେକ ବେଶ ବେଶନ ଯେ ହୋଇଣ ଫାଲଗୁନ
ଦିବ୍ୟ ଅବତାର କଲେକ ହରି, ଅର୍ଜୁନକୁ ଅନେକ ରତ୍ନମାଳାକୁ ଘେନି
ଅନନ୍ତ କୋଟି ବ୍ରହ୍ମାଣ୍ଡର ଠାକୁର ଚକ୍ରପାଣି
ଅମୂଲ୍ୟ ରତ୍ନମାନ ନନ୍ଦଘୋଷେ ଆପଣେ ମଣ୍ଡିଲେକ ଆଣି । ୬୬ ।
କଣ୍ଠେ ଝଲକ ପତର ହୀରା ମାଣିକ୍ୟ ରତ୍ନ ଖଞ୍ଜି
ମଧ୍ୟରେ ଗଜ ମୁକୁତା ଯେ ଶୋଭିତ ପୁଞ୍ଜି ପୁଞ୍ଜି । ୬୭ ।
ଯେବଣ ରତ୍ନମାନେ ଶୂନ୍ୟେ ପ୍ରବେଶ ଭୁଲେ ନୁହନ୍ତି ଘର
ବାଛୁଣି ଖଞ୍ଜିଲେ ଯେ ପ୍ରଭୁ ଦେବ ହରି । ୬୮ ।

---

୬୫।୧ ଅନେକ ଆଭରଣ ଯେ ହୋଇଣ ଫାଲଗୁନ । (ଥ, ଛ)

ବିଶାଳଚିତ୍ତେ ପନସ୍ପାଗ୍ର ରଥରେ ପାବଞ୍ଛେ
ତରୁଣ ଅର୍କ ଜାଣି ଯେ ଲୁଳଇ ଚଉକଞ୍ଛେ । ୬୯ ।
ଲୋହିତ ବର୍ଣ୍ଣ ପୁଷ୍ପ ଜାଣି ଗଜଗିରି ପାଟସୂତା
ତହିର ଉପରେ ନେଇ ଖଞ୍ଜିଲେ ଗଜ ଯେ ମୁକୁତା । ୭୦ ।
ତହି ଉପରେ ଶୋଭେ ମାଣିକ୍ୟର ଝରା
ରଥ ଗୃହପାଖ ଗୃହଲକ୍ଷ ମାରଗ ଚଉସରା । ୭୧ ।
ନିର୍ମଳ ମେଘେ ଯେହ୍ନେ ନକ୍ଷତ୍ର ବିରାଜେ
ଅନ୍ତରେ ମଣ୍ଡଣି ନନ୍ଦିଘୋଷ ରଥ ସାଜେ । ୭୨ ।
କହନ୍ତେ ନ ସରଇ ସେ ନନ୍ଦିଘୋଷ ରଥର ମହିମା
ଭାର ନିବାରଣେ ଯେହୁ ସଞ୍ଚିଲେ ବେଦବ୍ରହ୍ମା । ୭୩ ।
ପୃଥିବୀ ପ୍ରଳୟ କାଳେ ସେ ରଥ ନ ଭୁଟଇ
ଶହସ୍ର ବିଘାତ କଲେ ସେ ରଥ ନ ଫାଟଇ । ୭୪ ।
ଅନଳେ ସେ ରଥ ନୋହଇ ନା ଦହନ
ସମର କାଳେ ତହିଂ ନ ଲାଗେ ଶକତିର ତେଜ । ୭୫ ।
ମହାଭାରଥ ଯୁଦ୍ଧ ସରଇ ଯେତେବେଳେ
ପ୍ରଜାପତି ତାହା ନେଇ ସଂହରଇ ପାତାଳେ । ୭୬ ।
ଚତ୍ୱେକ ଗଲେ ପୁଣ ହୋଯ୍ୱେ ମହା ଯେ ଭାରଥ
ପୁଣ ଆସି ଉପଗତ ହୁଅଇ ସେହୁ ରଥ । ୭୭ ।
ଅନନ୍ତ କୋଟି ବ୍ରହ୍ମାଣ୍ଡ ଗଳ୍ପନ ଯେତୁଥେ ବହି
ଭାର ନିବାରଣ ଅର୍ଥେ ସେ ରଥ ଥାଇ ରହି । ୭୮ ।
ଦେବଦତ୍ତ ଶଙ୍ଖ ମାଳଚନ୍ଦ୍ର ମନଭେଦୀ ଶର ଅମୋଘ ଶକତି
ସେ ରଥ ଭିତରେ ତାହା ଥୋଇଣ ଥାଇ ପ୍ରଜାପତି । ୭୯ ।
ହନୁମନ୍ତକୁ ହକାରି ଆଜ୍ଞାଂ ଦିଲେକ ଦେବରାଜେ
ତୁ ଯାଇଂ ବିଜେକର ଭାରଥ ଯୁଦ୍ଧେ ନନ୍ଦିଘୋଷ ରଥ ଧ୍ୱଜେ । ୮୦ ।
ନାରାୟଣଂକ ବଚନେ ବିସ୍ତରଇ ପାବେନ
ନାରାୟଣ ଉତପତ୍ତି ହୋଇଲେ ମାନବ ଦେହ ଘେନ । ୮୧ ।

---

୭୩।୨ ଭାରାଭର ନିବାରଣେ ସୃଜିଲେ ବିଶ୍ୱକର୍ମା । (ଘ, ଙ, କ, ଛ, ଟ)
୭୭।୧ ମନୁ ଯେତ୍କ ଅନ୍ତରେ ପୁଣ ହୋଯ୍ୱେ ମହା ଯେ ଭାରଥ । ( ଠ, ଖ )

କୁଟୁମ୍ବ ସମ୍ଭୋଗେ ପଡ଼ ମତ୍ତଭୋଳ ହେଲେ
ତ୍ରେତୟା ଯୁଗର କଥା ସମସ୍ତ ପାଶୋରିଲେ । ୮୨ ।
ଶୁଣ ବଇବସୁତ ମନୁ ବଦଯୁନ୍ତ ଅଗସ୍ତି
ହନୁମନ୍ତ ପାହା ବିସ୍ମରିଲା ପୂର୍ବର ସଙ୍ଗତି । ୮୩ ।
ତ୍ରେତୟା ଯୁଗରେ ସମର କଲେ ନାରାୟଣ
ମହା ସାଂଗ୍ରାମ ହୋଇଲା ଶ୍ରୀରାମ ରାବଣ । ୮୪ ।
ସେତୁବନ୍ଧ ବାନ୍ଧିଲେ ଯେ ଅଗାଦ ସାଗର
ବତିଶ ଯୁଣ ଓସାର ଉତ୍ସର୍ଗ ଯୁଣ ବାର । ୮୫ ।
ଶତେ ଚଉବିଂଶ ଯୋଜନ ଯେ ଲଂକା ଯାଏ
ବେନି ବଳ ଥାଠ ଉଭିରିଲେ ସେ ଯୁଦ୍ଧର ସମୟେ । ୮୬ ।
ଚତୁର୍ଥ ଦିବସର ଅନ୍ତେ କୁମ୍ଭକର୍ଣ୍ଣର ବିବାଦେ
ହଂନୁମନ୍ତ ରାଗେଣ ଧାପେ ଉଠିଲା ସେତୁବନ୍ଧେ । ୮୭ ।
ବେନି ସଇନ ଥିଲେ ବନ୍ଧର ଉପରେ ଉଠି
ତେତେ ବଡ଼ ମହାବନ୍ଧ ପଡ଼ ଛି ଲେଉଟି । ୮୮ ।
ପୂର୍ବ ଆଡ଼ୁ ଲେଉଟିଲା ପଶ୍ଚିମ ଆଡ଼କୁ
ଶ୍ରୀରାମଚନ୍ଦ୍ର ଚାହିଁଲେ ହନୁମନ୍ତର ମୁଖକୁ । ୮୯ ।
ବାବୁ ତୋର ବିଶ୍ୱରୂପକୁ ନ ସହଇ ଏହି ବନ୍ଧ
ସମସ୍ତେ ପଡ଼ିବାଟି ଅଗାଦ ସିନ୍ଧୁ ମଧ୍ୟ । ୯୦ ।
ସ୍ୱାମୀଂକର ବଚନେ ହନୁମନ୍ତ ହୋଇଲାକ ଶାନ୍ତ
ବାହୁଡ଼ ବନ୍ଧରୁ ଉଭୁରିଲା ତତକ୍ଷଣାନ୍ତ । ୯୧ ।
ସାମାନ୍ୟ ରୂପ ଧରି ରହିଲା ହନୁମନ୍ତ
ତେବେ ସେ ରାମଚନ୍ଦ୍ର ହୋଇଲେ ତୋଷ ଚିତ୍ତ । ୯୨ ।
ଏହି ସର୍ବ କଥାମାନ ମନେ ଭାଳଇ ହନୁମନ୍ତ
ଏହି କସ ମହିବ ମାନ ମୋତେ କାଠ ନନ୍ଦଘୋଷ ରଥ । ୯୩ ।
ହନୁମନ୍ତର ଛଳନ୍ତେଣ ସହଦେବ ହସି
ସହଦେବ ହସନ୍ତେ ଜାଣିଲେ ହୃଷିକେଶୀ । ୯୪ ।
ସହଦେବ ହସନ୍ତେ ହନୁମନ୍ତ ମହାକୋପୀ
କଖଣେ ନମନ୍ତେ ଶରୀର ମହାକୋପୀ ବିଶ୍ୱବ୍ୟାପି । ୯୫ ।

ସହଦେବ ବୋଇଲେ ସ୍ୱାମୀ ତୁମ୍ଭ ସେ ବନ୍ଧନ୍ତା
ତୁମ୍ଭ ସେ ସମସ୍ତ କଷଣୁଂ ଉଦ୍ଧରନ୍ତା । ୯୬ ।
ଅଶକ୍ୟ ଅଥବା ତୋତେ ପଡବ ଯେତେବେଳେ
ବ୍ରହ୍ମାଣ୍ଡ ନାଶଯିବ ପଡବ ଗ୍ରସାନ୍ତଲେ । ୯୭ ।
ସହଦେବର ବଚନେ ପ୍ରଭୁଂକ ଲାଗିଲା ମନେ ଚିନ୍ତା
ଧ୍ୟାନେ ସୁମରିଲେ ଦେବ ଦିଗପାଳ ଦେବତା । ୯୮ ।
ନାରାୟଣ ସୁମରନ୍ତେ ସମସ୍ତେ ହୋଇଲେ ଦୃଶ୍ୟ
ବିନୟ ଭାବ ହୋଇଣ ସେ ସମସ୍ତେ ମିଳିଲେ ଶ୍ରୀକୃଷ୍ଣଂକ ପାଶ । ୯୯ ।
ଶ୍ରୀହରି ବୋଇଲେ ଯେ ମହାଭାରଥ ସମରେ
ମୋତେ ଆଜ୍ଞାଂ ଦେଇଛନ୍ତି ବ୍ରହ୍ମା ଶ୍ରୀମୁଖରେ । ୧୦୦ ।
ଯେତେବେଳେ ପର୍ଯ୍ୟନ୍ତେ ମୋର ଥିଲା ଶକ୍ୟ ହୋଇ
ତେତେବେଳ ପର୍ଯ୍ୟନ୍ତେ କାହାକୁ ନ କହିଲା ମୁହିଂ । ୧୦୧ ।
ଯେବେ ଅଗୋଚର ମୋତେ ହୋଇଲାକ ଯୁଦ୍ଧ
ଯେବେ ସମସ୍ତେ କୁତୂହୋଳ ଦେଖିବା ରଣ ମଧ୍ୟ । ୧୦୨ ।
ଦିଗପାଳେ ବୋଇଲେ ହରି ଯେ ତୋହୋର ଆଜ୍ଞାଂ
କାହାର ବଳେ କେ କରିବ ତାହା ଯେ ଅବଜ୍ଞାଂ । ୧୦୩ ।
କେଶବ ବୋଇଲେ ତୁମ୍ଭେ କାଳ ଅନଳ ବହ୍ନିତ
ରଥର ଅଗ୍ନିକୋଣେ ଥିବଟି ଦିବାରାତ୍ରି । ୧୦୪ ।
ରୁଦ୍ର ଦେବତାନ୍ତ ବୋଇଲେ ଥିବଟି ଈଶାନ କୋଣ କାଣ୍ଡେ
ବଜ୍ରେକର ଦେବ ନ ଗ୍ରାସିବ ଦଣ୍ଡେ । ୧୦୫ ।
ଆଜ୍ଞାଂ ଦିଲେ ହରି ପ୍ରଚଣ୍ଡ ପବନକୁ
ତୁ ଯାଇଂ ବଜ୍ରେ କରିବୁ ବାୟବ୍ୟ କୋଣ କାଣ୍ଡକୁ । ୧୦୬ ।
କୁବେର ପୁରୁଷକୁ ଗାଇ ଆଜ୍ଞାଂ ଦିଲେ ନାରାୟଣ
ତୁମ୍ଭେ ସ୍ତମ୍ଭ ହୋଇବଟି ଉତ୍ତର କାଣ୍ଡ କୋଣ । ୧୦୭ ।
ନଇଋତ ନୃପତି ଦିଗପାଳ ଦେବ ଆଦି
ନଇଋତ କୋଣେ ସେହୁ ଥମ୍ଭେକ ସମ୍ପାଦି । ୧୦୮ ।
ରତ୍ନାକର ଦେବତା ବାରାନିଧି ବରୁଣ
ବାରାନିଧି ଯେନଥିବ ତୁମ୍ଭେ ପଶ୍ଚିମ ଯେ କୋଣ । ୧୦୯ ।

ଇନ୍ଦ୍ର ଦେବତାନ୍ତ ବୋଇଲେ ତୁମ୍ଭେ ଥିବ ପୂର୍ବକାଣ୍ଡ କୋଣ
ଯମ ଦେବତାନ୍ତ ବୋଇଲେ ତୁମ୍ଭେ ଥିବ ଦକ୍ଷିଣ କାଣ୍ଡେଣ । ୧୧୦ ।
ରଥର ଚାରିକୋଣ ଅମ୍ଭ ଚାରିକାଣ୍ଡ
ଅଷ୍ଟଦିଗପାଳେ ଆବୋରିଲେ ଉପର ପୀଠ ଖଣ୍ଡ । ୧୧୧ ।
ଆବର୍ତ୍ତିକ ସମ୍ବର୍ତ୍ତିକ ଦ୍ରୋଣ ଯେ ପୁଷ୍କର
ଏହି ଚାରି ମେଘନ୍ତ ଚାହିଁ ଆଜ୍ଞା ଦିଲେ ଦାମୋଦର । ୧୧୨ ।
ତୁମ୍ଭେ ଚାରି ମେଘେ ହୁଅ ଚାରି ପୀଢ଼ା
ସମସ୍ତେ ସହିବଟି ହନୁମନ୍ତର ଭରା । ୧୧୩ ।
ନାରାୟଣ ବଚନେ ସମସ୍ତ ଦିଗପାଳେ
ଯେ ଯାହାର ଅନରୂପେ ବସିଲେ ସକଳେ । ୧୧୪ ।
ଉତ୍ତର ଦକ୍ଷିଣ ଯେ ପୂର୍ବ ପଶ୍ଚିମ ଦିଗ ଚାରି
ଏହି ଚାରି ଦିଗେ ହୋଇଲେ ରଥ ଚାରି ଚୂଳ । ୧୧୫ ।
ସତ୍ୟ ତ୍ରେତୟା ଦ୍ୱାପର ଆବର ଯୁଗ କଳି
ଏହି ଚାରି ଯୁଗେ ହୋଇଲେ ରଥର ଅଖ ନଳି । ୧୧୬ ।
ଦିଗପାଳମାନନ୍ତ ରଥରେ ଦେଖିଲେକ ଯହୁଂ
ହନୁମନ୍ତର ବିଶ୍ୱରୂପକୁ ଭୟେ ଆଉ କାହୁଂ । ୧୧୭ ।
ଶ୍ରୀହରି ଆଜ୍ଞାଂ ଦିଲେ ଶୁଣ ବାବୁ ହନୁ
ନନ୍ଦିଘୋଷ ରଥେ ବିଜେକର ଅଞ୍ଜନାର ତନୁ । ୧୧୮ ।
ପବନର ନନ୍ଦନ ଯେ କଇଲା ଜଗଜ୍ଜେଠୀ
ବିଶ୍ୱରୂପ ଧରି ଯାଇଂ ନନ୍ଦିଘୋଷ ରଥେ ଉଠି । ୧୧୯ ।
ଗଳାରେ ବନମାଳା ତାର ଲକ୍ଷେକ ପର୍ବତ
ମହାବିଶ୍ୱରୂପେ ଆସି ରଥେ ଢୋକିଲା ହନୁମନ୍ତ । ୧୨୦ ।
ହନୁମନ୍ତ ମହାଭରିଏ ରଥ ଯେ ପଶିଲା ପାତାଳକୁ
ଗୋବିନ୍ଦ ଆଜ୍ଞାଂ ଯେ ଦିଲେ ଭୀମସେନକୁ । ୧୨୧ ।
ବେନି ଭୁଜେ ରଥ ଧରି ହୋ ଭୀମସେନ
ହନୁମନ୍ତର ଭରା ନ ସହିବ ନନ୍ଦିଘୋଷ ଯାନ । ୧୨୨ ।
କରପଦ୍ମ ଯୋଡ଼ିଣ ଯେ ଭୀମସେନ ବୋଲଇ
ଏହି ରଥେ ହନୁମନ୍ତ ବିଜେ କରିଛଇ । ୧୨୩ ।

ଯେତ୍ବାର ବଜ୍ର କାଛେଣ୍ଟୀରୁ ସୂତା ନାଡ଼େ ପଡ଼
ଟୋଳି ନ ପାରିଲ ଯେ ପଡ଼ିଲ ମୁଂହ ମାଡ଼ । ୧୨୪ ।
ରଥର ଧ୍ୱଜେ ଯେବେ ବଜସ୍ତେ ମହାମେରୁ
କେମନ୍ତେ ଧରିବ ରଥ ତିନ ଭୁବନରୁ ଗରୁ । ୧୨୫ ।
ଗୋବିନ୍ଦ ବୋଇଲେ ଭୀମ ରଥ ଧ୍ୱଜ ଟୋଳ
ଆମ୍ଭେ ତୋର ଦେହରେ ହୋଇବୁ ମହାବଳ । ୧୨୬ ।
ନନ୍ଦିଘୋଷ ରଥ ତୁ ସମ୍ଭାଳ ବ୍ରିକୋଦର
ଜଗନ୍ନାଥଂକ ବଚନେ ଭୀମ ବସାଇଲା ଭୂଜର ଉପର । ୧୨୭ ।
ନୃସିଂହ ମୂରତି ଭୀମସେନ ଅବତରି
ନନ୍ଦିଘୋଷ ରଥ ଟୋଳଇ ବେନି ଭୁଜେ ଧରି । ୧୨୮ ।
ବେନି ଭୁଜ ଉପରେ ବସାଇଲା ଷୋଳ ଚକ
ଭୂମିରୁ ଛଡ଼ାଇ ଧଇଲା ବେନି ଦଣ୍ଡ ପର୍ଯ୍ୟନ୍ତେକ । ୧୨୯ ।
ବେନି ଦଣ୍ଡ ପର୍ଯ୍ୟନ୍ତେ ଧଇଲା ମହାବଳୀ
ଶାନ୍ତ ମୂର୍ତ୍ତି ହୋଇଣ ହନୁମନ୍ତ ମନେ ଭାଳି । ୧୩୦ ।
ବ୍ରହ୍ମାଣ୍ଡ କମ୍ପଇ ଯେ ଯାହାର ବିଶ୍ୱରୂପେ
ସେ ନନ୍ଦିଘୋଷ ନ ଲସିଲା ମୋହୋର ପରତାପେ । ୧୩୧ ।
ବୋଲଇ ହନୁମନ୍ତ ପାଣ୍ଡବ ତୁମ୍ଭର ଜୀବନ ସାଧୁ ସାଧୁ
କେତେ ଜନ୍ମ ଖଟି ମନାଇଲ ଜଗବନ୍ଧୁ । ୧୩୨ ।
ସେତେକ ସଦୟ ଅଛି ଶ୍ରୀକୃଷ୍ଣଂକର ଯାହାକୁ ହୃଦପଦ୍ମେ
ପାଇଲ ପରମଗତି ଶ୍ରୀ ଜଗନ୍ନାଥଂକ ପରସାଦେ । ୧୩୩ ।
ଯେବେ ସେ ଜାଣିଲ ମାନଗୋବିନ୍ଦ ବଡ଼ ମୂର୍ଖ
ମନ୍ତ୍ରୀହିଂ ନାହିଂ ତାହାର ସେତେକ ଅବିବେକ । ୧୩୪ ।
ନାରାୟଣଂକ ଅଭେଦ ଚିହ୍ନନ୍ତି ଯାହାଂକୁ
କଉଶେବେ ମନ୍ଦ କର୍ମେ ଚିନ୍ତନ୍ତି ତାହାଂକୁ । ୧୩୫ ।
ଯଦ୍ୟପି ଇନ୍ଦ୍ର ଚନ୍ଦ୍ର କୁବେର ନ ଥାଆନ୍ତେ ରଥେ
ହନୁ ବିଶ୍ୱରୂପ ସେ ସହନ୍ତେ କେମନ୍ତେ । ୧୩୬ ।

---

୧୩୪।୨ ମନ୍ତ୍ରୀହିଂ ନାହିଂ ତାହାର ସେତେକ ନରେଖ । ( ଗ, ନ, ଙ, ଥ, ଛ )

ସେ ରଥେ ବିଜୟେ ଦେବ ତେତିଶ କୋଟି
ତେଣୁ ରକ୍ଷାଗଲା ନନ୍ଦଘୋଷ ରଥ ଗୋଟି । ୧୩୭ ।
ହନୁ ବିସ୍ତରଇ ସେହା ଜାଣିବା ତଦନ୍ତ
କେବଣ ଅଶ୍ବ ପ୍ରାକ୍ରମେ ଚଳିବ ସେ ରଥ । ୧୩୮ ।
ସେତେ ଭଳି ହନୁମାନ ଖର୍ପ ରୂପ ଧରି
ରଥ ଧ୍ବଜ ନିକଟେ ବସିଲା ଲଂକାର ଅରି । ୧୩୯ ।
ଦିବ୍ୟ ବେଶ ଅଳଂକାର ହୋଇଣ ଫାଲଗୁନି
ରୂପେଣ ମୋହିଲା ସେ ବ୍ରହ୍ମାଣ୍ଡ ଖଣ୍ଡ ତିନି । ୧୪୦ ।
ବାମ ଡାହାଣେ କଢ଼ିଲା ଅକ୍ଷୟେ ତୋଣ ବେନି
ପୂର୍ବେ ଯାହା ଦେଇଛନ୍ତି ଈଶ୍ବର ଭବାନୀ । ୧୦୧ ।
ଗୋଟିଏ କାଢ଼ିଲେ ନାରାଜ ସହସ୍ରେ ଗୁଣରେ ପୂର୍ଣ୍ଣ ହୋଇ
ଦିବାରାତ୍ରି ବିନ୍ଧନ୍ତେ କିଛି ନ ସରଇ । ୧୪୨ ।
ଯଦ୍ୟପି ସହସ୍ରେ ବର୍ଷ ହୋଇବ ସାଂଗ୍ରାମ
ତେବେହେଁ ନ ସରଇ ଅକ୍ଷୟେ ତୋଣ ନାମ । ୧୪୩ ।
ଇନ୍ଦ୍ର ଦେବତା ଦିଲେ ମୁକୁଟ କିରୀଟୀ
ମାଧବ ଖଞ୍ଜିଲେ ନେଇ ଅର୍ଜୁନର ଲଲାଟ ପାଟି । ୧୪୪ ।
ଦିବ୍ୟ ଅବତାର ରୂପ ହୋଇଣ ଫାଲଗୁନି
ରୂପେଣ ମୋହଇ ପାର୍ଥ ବ୍ରହ୍ମାଣ୍ଡ ଖଣ୍ଡ ତିନି । ୧୪୫ ।
ଅନେକ ବୀର ବେଶେ ବିରାଟର ସୁତ
ବିଜୟ ମୁକୁଟ ବାନ୍ଧିଲେ ଶ୍ବେତର ଯେ ମାଥ । ୧୪୬ ।
ଅମରନାଥ ପ୍ରାୟେ ଦିଶଇ ଶିଖଣ୍ଡୀ
କୁଶମଣ୍ଡଳ ରଥ ଯେ ଅନେକ ରତ୍ନେ ମଣ୍ଡି । ୧୪୭ ।
ଧୃଷ୍ଟଦ୍ୟୁମନେ ଦିଶନ୍ତି ରୁଦ୍ରର ତେଜ ଜାଣି
ପଞ୍ଚାଶ ସହସ୍ର ବଳ ଧନୁ ଧରିଣ ନିଜ ପାଣି । ୧୪୮ ।
ଶଙ୍ଖ ନାମେ କୁମର ସେ ବିରାଟର ଶିଡି
କାର୍ତ୍ତିକେଶ୍ବର ପ୍ରାୟେ ତାହାର ତେଜ ଯେ ବିକାଶି । ୧୪୯ ।

ଦଧିବାବନ ଅନୁକୂଳେ ଘୋଷନ୍ତି ବନ୍ଦୀଜନେ
ଓଡାକନ୍ତି ଚଣ୍ଡିପୁଣେ କସ୍ୱୈବାର ବିଧାନେ । ୧୫୦ ।
ସୁଲଭ କାମିନୀ ଯେ ଫେନ୍ଦଣ କରେ ଅର୍ଘ୍ୟଥାଳି
ଦଧିବାବନ ସୁମର ସେ ଦଅନ୍ତି ହୁଳହୁଳି । ୧୫୧ ।
ମାହେନ୍ଦ୍ର ଲଗ୍ନ ବେଳେ ଶୁଭ ଅନୁକୂଳେ
ପ୍ରଣପତ୍ତି ଅର୍ଜୁନ ଯୁଝନ୍ତି ପାଦତଳେ । ୧୫୨ ।
ବହୁତ ସାନନ୍ଦ ଯୁଝନ୍ତି, ହରି ଅର୍ଜୁନଂକୁ ଦେଖି
ଆନନ୍ଦେ ଅଶ୍ରୁଜଳ ବହଇ ବେନି ଆଖି । ୧୫୩ ।
ଜୟ ତୁ ମାଧବ ଯେ ସର୍ବ କାର୍ଯ୍ୟ ସିଦ୍ଧି
ଜୟ ତୁ ମାଧବ ଯେ ପ୍ରସନ୍ନେ ବାରିନିଧି । ୧୫୪ ।
ଜୟ ତୁ ମାଧବ ସର୍ବ ଯେ ଶୁଭ ଅନୁକୂଳେ
ଜୟ ତୁ ମାଧବ ଦଇତ ବଧ କଲୁ କୁତୂହୋଳେ । ୧୫୫ ।
ଜୟ ତୁ ମାଧବ ଅଗାଦ ଦୁଖଭଞ୍ଜା
ଜୟ ତୁ ମାଧବ ଦୁରନ୍ତକ ବଳଗଞ୍ଜା । ୧୫୬ ।
ଜୟ ତୁ ମାଧବ ଅବ୍ୟୟେ ଚକ୍ରପାଣି
ଜୟ ତୁ ମାଧବ ସର୍ବ ଜନ ଚିନ୍ତାମଣି । ୧୫୭ ।
ଜୟ ତୁ ମାଧବ କଇଞ୍ଚା ଜଗଜେଠୀ
ଜୟ ତୁ ମାଧବ ସୁଲଭ ତବ ନାମ ଗୋଟି ।
ଜୟ ତୁ ମାଧବ ଶ୍ରବଣେ ସର୍ବ ଦୁଖ ଫିଟି । ୧୫୮ ।
ଜୟ ତୁ ମାଧବ ଯେ ଅଭୁଟ ମନବାଞ୍ଛା
ଜୟ ତୁ ମାଧବ ବ୍ରହ୍ମା ସୃଷ୍ଟି କରୁ ରକ୍ଷା । ୧୫୯ ।
ଜୟ ତୁ ମାଧବ ଯେ ଦୁଷ୍ଟକୁଳ ହରନ୍ତା
ଜୟ ତୁ ମାଧବ ଯେ ସକଳ ସୃଷ୍ଟି ରଞ୍ଜନ୍ତା । ୧୬୦ ।

---

୧୫୭।୧ ଜୟ ତୁ ମାଧବ ଅଭୟେ ଚକ୍ରପାଣି । ( ଘ, ଙ, ଥ, ଝ )
୧୫୭।୨ ଜୟ ତୁ ମାଧବ ଯେ ସନ୍ଥକୁ ପାଳେଣୀ । ( ଓ, ଙ, ଥ, ନ )
୧୫୦।୨ କସ୍ୱୈବାର—ସ୍ତୁତି ପାଠ, ସ୍ତୁତି ପାଠକ, ଯଶୋଗାନ ।

ଜୟ ତୁ ମାଧବ ଯେ ସ୍ୱାମୀ ଆନନ୍ଦାନନ୍ଦ କନ୍ଦେ
ଜୟ ତୁ ମାଧବ ଯେ ବନ୍ଦଇଁ ମମ ହୃଦେ । ୧୬୧ ।
ଜୟ ତୁ ମାଧବ ଯେ କମଳାର ବିଳାସ
ଜୟ ତୁ ମାଧବ ଯେ ଶ୍ରବଣେ ଅମିୟ ରସ । ୧୬୨ ।
ଜୟ ତୁ ମାଧବ ଯେ ବାକ୍ୟଦେବୀର ପତି
ଜୟ ତୁ ମାଧବ ଯେ ଅଗତିକୁ ଦେଉ ଗତି । ୧୬୩ ।
ଜୟ ତୁ ମାଧବ ଯେ ରୁକ୍ମିଣୀ ବଲ୍ଲଭ
ଜୟ ତୁ ମାଧବ ଯେ ତୁଳସୀ ପ୍ରିୟଭାବ । ୧୬୪ ।
ଜୟ ତୁ ମାଧବ ନାମ ସର୍ବ ସିଦ୍ଧି
ଜୟ ତୁ ମାଧବ ଯେ ଚନ୍ଦ୍ରକୂଟ ବୁଦ୍ଧି । ୧୬୫ ।
ଜୟ ତୁ ମାଧବ ଅଭୁତ ବଜ୍ର କାୟେ
ଜୟ ତୁ ମାଧବ ସୁମରନ୍ତେ ସର୍ବ ଜୟେ । ୧୬୬ ।
ଜୟ ତୁ ମାଧବ ଶରଣ ମୁଂ ନିତ୍ୟେ
ଜୟ ତୁ ମାଧବ ମୁଂ ଶ୍ରବଇ ଦିବାରାତ୍ରେ । ୧୬୭ ।
ଜୟ ତୁ ମାଧବ ଯେ ଦେବ ପୀତବାସ
ଶୂଦ୍ରମୁନି ସାରଳା ଦାସ ନିତ୍ୟେ ତବ ନାମ ଅଭ୍ୟାସ । ୧୬୮-୮୦୦ ।



## କୁରୁ ପାଣ୍ଡବ ସୈନ୍ୟସହ ସମର କ୍ଷେତ୍ରେ ପ୍ରବେଶ

ଯୁଧିଷ୍ଠିରଦେବେ ମାଧବ ନାମ କଲେକ ତଳୟେ
ମନୁ ଭ୍ରାନ୍ତି ଫିଟିଲା ସେ ହୋଇଲେ ନିର୍ଭୟେ । ୧ ।
କୃତ କୃତ ହୋଇଣ ବୋଲନ୍ତି ଧର୍ମନାନେ
ମନୁ ଭ୍ରାନ୍ତି ଫିଟିଲା ତୋହୋର ପ୍ରସନ୍ନେ । ୨ ।

---

୧୬୨।୨ ଜୟ ତୁ ମାଧବ ପଢନ୍ତେ ଅମିୟ ରସ । ( ଘ, ଙ, ନ )

ଶ୍ରୀହରିଙ୍କ ହନୋପି ଯେ ବୋଲନ୍ତି ଦେବ ଧର୍ମ
ତୁ ଦେବ ଜଗନ୍ନାଥ ପୁରୁଷଙ୍କ ଉତ୍ତମ । ୩ ।
ଛତ୍ରୀଧର୍ମ ଦେବ ଦୁର୍ଭାର ଯେ କଷ୍ଟ
ତୋତେ ପାଇଲି ଦେବ ମୋର ଫିଟିଲା ସଂକଟ । ୪ ।
ଅନ୍ତେଣି ପୁରୁଷ ତୁ ଅବ୍ୟୟେ ଅକ୍ଷୟେ
କଉତୁକେ ରଙ୍ଗା ଅବତାର ଜନ୍ମ ତୋର ହୋୟେ । ୫ ।
ସ୍ୱାମୀ ଯାବନ୍ତ ଜୀବଙ୍କୁ ଜଗନ୍ନାଥହିଂ ସେ ମୂଳ
ଜୀବ ଜନ୍ତୁ ଆର୍ଧନେ ନାଥ ସଞ୍ଚିତ ସମୂଳ । ୬ ।
ସମରେ ଜିଣିମି କ ମୁଂ ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମାକୁ
ମହନ୍ତ ପୁରୁଷ ହରି ମୁଂ ଯେ ଆଶ୍ରେ କଲି ତୁକୁ । ୭ ।
ହନ୍ଦକୁ ଭୟେ କରି ଘୁଞ୍ଚିଲା ପ୍ରେତକାଳ
ଧର୍ମକୁ ଜିଣି ଦୁଖ ସହିଲି ସକଳ । ୮ ।
ହରି ମୋହୋର କର୍ମ ବିପାକ କାଳ ଯେ ନୋହିଲେ
ଗୁରୁ ସୋଦରମାନେ ମୋତେ କିମ୍ପେ ଉପେକ୍ଷିଲେ । ୯ ।
ମୁଂ ଯେ ସର୍ବଦା ଆଶ୍ରେ କରିଥାଇ ତୋତେ
ତବ ପ୍ରସାଦେ ଜିଣିମି ଗାନ୍ଧାରୀ ଶତେ ପୁତ୍ରେ । ୧୦ ।
ଜଗତେ ବୋଲନ୍ତି ଯେ ପାଣ୍ଡବେ ବଳବନ୍ତା
ତବ ପ୍ରସାଦେ ମୁହିଂ ଶ୍ରୀବନ୍ତ ଶୂରବନ୍ତା । ୧୧ ।
ତୁ ସେ ଶିଖି ଆଇଷ ଦେଉଛୁ ଶ୍ରୀହରି
ନୋହିଲେ କ ପାଣ୍ଡବେ ଦୁର୍ଯୋଧନକୁ ଜିଣିପାରି । ୧୨ ।
ଶତେ ଭାଇ ତାର ଅଟନ୍ତି ଧନୁର୍ଦ୍ଧର
ଲକ୍ଷେ ରାଜା ଖଟନ୍ତି ପୟରେ ଯାହାର । ୧୩ ।

---

୪।୧ 　ଛତ୍ରିୟ ଲେକନ୍ତ ଦେବ ଦୁର୍ଭର ଥାଇ କଷ୍ଟ । ( ଙ, ଥ, ନ )
୧୦ 　{ ଦଧିବାବନ ଆଶ୍ରିତ ହୋଇ ସର୍ବକାଳେ ।
　　 { ଅଗତେ ଶୁଭ ବାଞ୍ଛା ମୋତେ ବାଞ୍ଛନ୍ତି ଯେ ସର୍ବମଙ୍ଗଳେ । ( କ, ଙ, ଝ )
୧୦ 　{ ତୁ ଦେବ ଅଶ୍ରେ ମୋତେ ହୋଇଥାଇ ସର୍ବକାଳେ ।
　　 { ତବ ପ୍ରସାଦେ ମୁହିଂ ଯେ ଜିଣିବି କୁରୁକୁଳେ । ( ଙ, ଥ, ନ )
୧ ହନୋପି—ହନସ୍ୱୀ ।

ସଖା ସଙ୍ଗ ନାହିଂ ମୋରସ୍ବେର ଭାଇ ବନ୍ଧୁଂ
କ ବୁଦ୍ଧି କରିବା ହରି କହସି ବଚନ୍ତୁଂ । ୧୪ ।
ଯୁଦ୍ଧେଷ୍ଟିଂକର ମୁଖରୁ ହରି ଯେସନକ ବାକ୍ୟ ଶୁଣି
ସାନନ୍ଦେ ମଧୁରସ୍ବୁ ବୋଲନ୍ତ ମୃଦୁବାଣୀ । ୧୫ ।
ସ୍ୱାମୀ ଯଦ୍ୟପି ଭୀଷ୍ମ ଦ୍ରୋଣ କର୍ଣ୍ଣ ବଳବନ୍ତା
ସମରେ ଅଶ୍ୱତ୍ଥମାଙ୍କୁ କେ ଅଛୁ ଜିଣନ୍ତା । ୧୬ ।
ସ୍ୱାମୀ ଅର୍ଜୁନ ନିପାତ କରିବ ସର୍ବଯୋଧୀ
ତାଙ୍କୁ ଅସାଧ ହୋଇଲେ ମୁହିଂ ପେଷିଣ ଚନ୍ଦେ ଛେଦି । ୧୭ ।
ଅର୍ଜୁନହିଂ ମାରିବ ଶରହିଂ ମନଭେଦୀ
କୁରୁଥାଠ ମନ୍ଥନ କରିବା ମୋର ବୁଦ୍ଧି । ୧୮ ।
ଯେସନ ବଚନରନ୍ତେ ସ୍ତିରୀଯେକ ଛିଂକଲା
ଶୁଭ ମଙ୍ଗଳ ବୋଲି ଶୁକସାରୀଯେ ଡାକ ଦିଲା । ୧୯ ।
ବାମେଣ ଯୋଗିନୀ ଅଗ୍ନି କୋଣେ ସ୍ଥିତ
ଈଶାନେ ଉଦଯେ ଯେ ମହାଲକ୍ଷ୍ମୀ ମୂରତ । ୨୦ ।
ସ୍ତ୍ରିଯା ନାମେଣ ଯେ ଯେକଇ ଗୁଆଳୁଣୀ
ଆଗେଣ ଡାକିଲା ସେ ଦଧିଭାଣ୍ଡ ଘେନି । ୨୧ ।
ଯମୁନାରୁ ଚଢଇଂ ପଡିଲା ଯେକ ରୋହି ମତ୍ସ୍ୟ
ସମ୍ମୁରେ ପଡିଲା ସେ ଦେଖିଲେ ପ୍ରତକ୍ଷ । ୨୨ ।
ଶଙ୍ଖଚିଲ ରବଇ ଯେ ପଶ୍ଚିମ ମୂରତି
ଉଡାଳେକ ପକ୍ଷୀ ଡାକିଲା ରମ୍ଭା ବୃକ୍ଷେ ସ୍ଥିତ । ୨୩ ।
ସର୍ବ ଅନକୂଳେ ହନୁ ଆଗେ ଦେଇ ଦୃଷ୍ଟି
ଅଦଭୁତେ ଆକାଶୁଂ ହୋଇଲା ପୁଷ୍ପ ବୃଷ୍ଟି । ୨୪ ।
ସ୍ୱରୂପାକ୍ଷେ ହିଲେ ଯେବଣ ଅନକୂଳ କାଠି
ତାହା ମାପନ୍ତେ ଯେ ପଞ୍ଚଦଶ ଅଙ୍ଗୁଷ୍ଠି । ୨୫ ।
କହିଲେ ପୁରୋହିତେ ଅମୃତ ଲଗ୍ନ ବେଳା
ରୋହିଣୀ ଘରେ ଗୁରୁ ଯୋଗେ ବିରାଜଇ ଚନ୍ଦ୍ରକଳା । ୨୬ ।
କ୍ଷୀର ସିନ୍ଧୁ ଭେଦି ଉଦଯେ ଦିନକର
ମଙ୍ଗଳ ଧ୍ୱନି ଶୁଭିଲା ଯେ ଗଗନ ଭିତର । ୨୭ ।

ବ୍ରାହ୍ମଣେକ ରୂପ ଧରି ବଶ୍ୟାନର ଦେବତା
ଅଦଭୁତେ ଆସିଣ ପଡନ୍ତି ଚଣ୍ଡୀ ଅପରାଜିତା । ୨୮ ।
ଅର୍ଜୁନ ପ୍ରଣପତ୍ୟ ସେ ବ୍ରାହ୍ମଣଙ୍କୁ ଦେଖି
କଲ୍ୟାଣ ବାଞ୍ଛା କରନ୍ତି ପିଙ୍ଗଳାକ୍ଷୀ ବିବର୍ଣ୍ଣିକ । ୨୯ ।
ଯେ ମୋ ଶରୀର ବାବୁ ହୋଇଲ୍ଲ ତୃପତି
ମୁଁ ପଞ୍ଚୁ କଣ୍ଠକେ ହୋଅ ଯେକାଙ୍ଗ ଚକ୍ରବର୍ତ୍ତୀ । ୩୦ ।
ଯେତେ ଶହସ୍ର ଦେଲ ମୁଂ ଖାଣ୍ଡବ ବନ ଦହନର କାଳେ
ସେମାନେ ପ୍ରାପତ ତୋତେ ହୋଅନ୍ତୁ ଯେତେବେଳେ । ୩୧ ।
ଅନେକ ନିଚଳ ବାଞ୍ଛା କରନ୍ତି ବଶ୍ୟାନରେ
କେ ତାହା ଅନ୍ତ କରି କହିବ ଯେ ତିନି ପୁରେ । ୩୨ ।
ସୁବର୍ଣ୍ଣର ଦୀପରେ ଗୁଆଘୃତ ପୂରେଇ
ଅଙ୍ଗୁଷ୍ଠ ପ୍ରମାଣେ ନେତର ବଳତା ଜଳଇ । ୩୩ ।
ଚଉବିଂଶ ଅଙ୍ଗୁଳି ଯେ ବହ୍ନିର ଶିଖା
ନିଚଳ ହୋଇଣ ବିକାଶିଲ୍ଲ ଯହୁଂ ଯେକ ରେଖା । ୩୪ ।
ଥିର ଲଗ୍ନରେ ଯେ ପାର୍ଥ ଯାତ୍ରା ଯୋଗ କରି
ବିଜୟେ ଫାଲଗୁନ ଦଧିବାବନ ସୁମରି । ୩୫ ।
ବାମେଣ ଯୁଧିଷ୍ଠିର ଦେବ ଡାହାଣେ ଜଗନ୍ନାଥ
ଆଗେ ଧୃଷ୍ଟଦ୍ୟୁମ୍ନନ ଯେ ପଛେ ବିରାଟ ଦ୍ରୁପଦ । ୩୬ ।
ଅମୃତ ଯୋଗ ବେଳେ ମାହେନ୍ଦ୍ର ବେଳା ଘେନି
ନନ୍ଦିଘୋଷ ରଥେ ଯାଇଂ ବିଜୟେ ଫାଲଗୁନ । ୩୭ ।
ଉତ୍ତାନ୍ତ ଦାସୀନେତ ଦଧିବାବନ ପାତାଙ୍ଗେ
ବିପୁଳ ପୁଲକ ଆଲମ୍ବ ଉଡଇ ଶୂନ୍ୟମାର୍ଗେ । ୩୮ ।
ଯେଉଂଶ ସ୍ୱାମୀକ ଲସ୍ୟ କରଇ ପଦ୍ମଯୋନି
ସେ ସ୍ୱାମୀ ଅର୍ଜୁନର ରଥେ ବସି କଲେ ଶଙ୍ଖ ଧ୍ୱନି । ୩୯ ।
ଯେମନ୍ତର ସମୟେ ଦ୍ରୁପଦର ଦୁଲାଳୀ
ଶ୍ରୀଭୁଜେ ପାଞ୍ଚାଳୀ ଯେ ଘେନିଣ ଅର୍ଘ୍ୟଥାଳୀ । ୪୦ ।

---

୩୧ । ୨ ସେମାନେ ସିଦ୍ଧ ହୋଅନ୍ତୁ ତୋତେ ଯେତେବେଳେ । ( ଟ, ଥ, ନ)

ତ୍ରଇଲୋକ୍ୟ ମୋହିନୀ ଯେ ଦ୍ରୁପଦର ବାଳା
ପରିହରଣ ଦେବାଙ୍ଗ ବସନ କେଶ ଯେ ମୁକୁଳା । ୪୧ ।
ପାଞ୍ଚାଳୀକି ଦେଖି ପ୍ରତିଉତ୍ତର ଦିଅନ୍ତି ନାରାୟଣ
ମା ଗୋ ସ୍ତ୍ରିୟ ଲଙ୍ଗ ମାନଙ୍କେ ତୋହୋର ଯେତେକ କଷାପଣ । ୪୨ ।
ଯେତେକ ଶୁଭଯୋଗ ସର୍ବମଙ୍ଗଳା ଯାହା ଅନକୂଳେ
ମହାଭାରତ ସମର ହେବ ଗୋ ସର୍ବମଙ୍ଗଳେ । ୪୩ ।
ସକଳ ସୁବ୍ବଧାନ ସୁଚୋଖଣ ଶୁଣ ହାଦେ କର ବାଞ୍ଛା
ଯେତେବେଳେ କେଶ ମୁକୁଳ ତୋର ଯେତେ ବଡ କଷା । ୪୪ ।
କେଶବ ବୋଇଲେ ଯେତେବେଳେ କେଶ ବନ୍ଧନ କର ମାୟେ
ସ୍ୱାମୀ ତୋର ସମରକୁ ଶୁଭେ କରନ୍ତୁ ବିଜୟେ । ୪୫ ।
ତୁ ପାଞ୍ଚାଳ ଦେଶ ମଣ୍ଡଣି ଆଗୋ ଯୁଧେଷ୍ଟି ପାଟବଂଶୀ
ନିକଳଂକ ନିର୍ଦ୍ଦୋଷୀ ତୁ ପାଣ୍ଡବଂକୁ ଶତେଗୁଣେ ଗରୁହଂସୀ । ୪୬ ।
ଅନେକ ପୁରସରି ଯତ୍ନଂ କହିଲେ ହୃଷୀକେଶୀ
କାନ୍ଦଣ ବଇକୁଲ୍ୟ ଦେବୀ କ୍ରୋଧଭରେ ଭାଷି । ୪୭ ।
କଦଳୀ ପତ୍ର ପ୍ରାୟେ କମ୍ପଇ ତାର ତନୁ
ମୁକ୍ତା ପ୍ରାୟେ ଅଶ୍ରୁଜଳ ବହଇ ନୟନୁ । ୪୮ ।
ଯା ଦେଖି ବଦନ୍ତି ଶ୍ରୀକୃଷ୍ଣ ମା ଗୋ କମର୍ଥେ ପାଞ୍ଚାଳୀ
ଆନନ୍ଦେ ଅଶ୍ରୁଜଳ କ ବଷାଦେ ଲୋ ଅଗୁଳି । ୪୯ ।
ପୁଣ ପୁଣ ନାରାୟଣ ବଦନ୍ତି ଅତି ସଧେ
ପ୍ରତିଉତ୍ତର ଦେଇ ନ ପାରଇ ସତୀ ଅତି କ୍ରୋଧେ । ୫୦ ।
କ୍ରୋଧ ସମ୍ଭାଳଣ ସେ ବୋଲଇ ଯିଦ୍ନସେନୀ
ଯେକ ଆତ୍ମା ଅଟ ତୁମ୍ଭେ କୃଷ୍ଣ ଫାଲଗୁନ । ୫୧ ।
ମୁଂ ତୋତେ କସ କହିବ ତୁମ୍ଭେ ଅଟତ ସର୍ବଗ୍ୟଂ
ପଣ୍ଡିତ ଧାର୍ମିକ ତୁମ୍ଭେ ଅଟ ବିବେକ ଶିରୋମଣି ମହାଭାଗ୍ୟଂ । ୫୨ ।
ଆପଣେ ଜାଣୁନା ହରି କପଟପଣା କାଳେ
ମୋତେ ଉଲଗ୍ନ କରି ପାଣ୍ଡବଂକୁ ବସାଇଲେ ସଭାତଳେ । ୫୩ ।

---

୫୧।୨ ଯେକ ରଥେ ଯେକ କାୟେ ସେ ତୁମ୍ଭେ କୃଷ୍ଣ ଫାଲଗୁନ । ( ଚ, ଘ, ଙ )

ମୋର କେଶ ଧରି ଆଣିଲା ମୂର୍ଖ ଧୁଶା
ସେ ହନୁଂ ହରି ମୋର ଜୀବନେ ନାହିଂ ଆଶା । ୫୪ ।
କେଶ ମୁକୁଳ ବୋଲି ଦୋଷ ବାଛୁ ମୋତେ
ହୀନ ଜୀବନ ମୋର ଧୁଶାସନ ଜୀଇଥିବା ପରିସନ୍ତେ । ୫୫ ।
ଭୀମସେନ ପ୍ରତିଜ୍ଞାଂ କଲେକ ସଭାତଳେ
ଧୁଶାସନ ବେନିଭୁଜ ଉପାଡିବି ବୋଲି କର ମାଇଲେ ବକ୍ଷସ୍ଥଳେ । ୫୬
ତାହାର ପ୍ରତିଜ୍ଞାଂକୁ ମୁଂ କରିଅଛି ଆଶ
ଯେତେକାଳ ପର୍ଯ୍ୟନ୍ତେ ମୁଂ ହୋଇଲି ନିରାଶ । ୫୭ ।
ବାବୁ ଅର୍ଜୁନ ତୁ ଭାରିରେଇମଲ୍ଲ କଇଛା ଜଗଜେଠୀ
ଯଇଲୋକ୍ୟେ ବନ୍ଦିତ ତୋହୋର ନାମ ଗୋଟି । ୫୮ ।
ସର୍ବ କାର୍ଯ୍ୟ ସିଦ୍ଧି ତୋର ହୋଉ ଧନୁର୍ଜୟେ
ରଣଯାଗ ମଧ୍ୟେ ତୋତେ ନୋହୁ ଅପ୍ରାଜୟେ । ୫୯ ।
ଶତ୍ରୁ ଦର୍ପ ମର୍ଦ୍ଦିଣ ପୁରଅ ମନୋବାଞ୍ଛା
ଆପଦ ଖଣ୍ଡଣୀ ଦୁର୍ଗା କରନ୍ତୁ ତୋତେ ରକ୍ଷା । ୬୦ ।
ଅନେକ ଶୁଭ ବାଞ୍ଛା କରିଣ ଯିଦ୍ଧନ୍ସେନା
ଶିରେ ଅର୍ଘ୍ୟ ବନ୍ଦାଇଲେ କୃଷ୍ଣଂକୁ ଦୂର୍ବା ଅକ୍ଷତ ଘେନା । ୬୧ ।
ଦୁଜେଣ ବନ୍ଦାଇଲେ ଅର୍ଜୁନର ମାଥେ
ପାଣ୍ଡବନ୍ତ ରକ୍ଷଣ ତୁ ସ୍ୱାମୀ କରସି ଜଗନ୍ନାଥେ । ୬୨ ।
ଦଧିବାବନ ସୁମରି ତୁ ସମରେ ପଶିବୁ
କେଶର କର୍ଷଣ କଥା ପୁଣ ପାସୋରୁଛି ରେ ବାବୁ । ୬୩ ।
ଦୁଜେଣ ବଜଯେ ଦେବୀ ନନ୍ଦର ଦୁଲଣୀ
ଶିରେ ଅର୍ଘ୍ୟ ବନ୍ଦାବନ୍ତ ଜଗନ୍ନାଥର ଭଯେଣୀ । ୬୪ ।
ସର୍ବ ଶୁଭ ବାଞ୍ଛା ମଙ୍ଗଳ ଧ୍ୱନି ବାଣୀ
ଜୟେ ଜୟେ ବାଣୀ ଭାଷନ୍ତ ସର୍ବ ସୁଲକ୍ଷଣୀ କାମେନୀ । ୬୫ ।

---

୫୯।୨ ରଣରଙ୍ଗ ସ୍ଥାନେ ତୋତେ ନ ପଡ଼ ଅପଚୟେ । (ଚ,ଘ,ଙ୍,ଙ)
୬୫।୨ ଜୟେ ଜୟେ ଶବଦ କରନ୍ତ ସ୍ୱେ ଅମର ତରୁଣୀ (ଧ,ଥ,ନ)

ଦିଗପାଳମାନନ୍ତ ଘେନି ହରି ବିଜେ ନନ୍ଦିଘୋଷ ରଥେ
ଅନନ୍ତ କୋଟି ବ୍ରହ୍ମାଣ୍ଡ ଯାର ବସିଛି ଗର୍ଭଗତେ । ୬୬ ।
ଦେଖିଲେ ବିଶ୍ୱରୂପେ ହନୁମନ୍ତ ବସିଅଛଇ ରଥ ଧ୍ୱଜେ
ସାଧୁ ସାଧୁ ପାଣ୍ଡବ ତୁମ୍ଭର ଜୀବନ ଗ୍ରାହ୍ୟଜେ । ୬୭ ।
କେତେ ଜନ୍ମ ଖଟି ମନାଇଲ ଦେବରାୟେ
କେବଣ ତପେ ହରି ତୁମ୍ଭଂକୁ ଯେତେକ ସଦୟେ । ୬୮ ।
ଯେ ଶ୍ରୀହରିର ଗର୍ଭେ ଅଶେଷ କୋଟି ବ୍ରହ୍ମାଣ୍ଡ
ରଥରେ ବସାଇଛି ମହୀ ନବଖଣ୍ଡ । ୬୯ ।
ମେରୁହୁଂ ଅଧିକ ନନ୍ଦିଘୋଷ ରଥର ଆୟତନ
କେବଣ ବାରାଶ୍ୱ ଚାଳିବେ ଜୀବନ ତାଂକ ଧନ୍ୟ । ୭୦ ।
କେବଣ ଅଶ୍ୱ ଚାଳିବେ ଦେଖିବାଟି ଆଜ
ଜାଣିମା ନା କେମନ୍ତେ ଭିଆଇଛନ୍ତି ଦେବରାଜ । ୭୧ ।
ମହା ବିଶ୍ୱରୂପ ଧରିଣ ପାବେନ
ଗାଢେଣ ମାଡି ବସିଲ ସେ ବିଷ୍ଣୁର ତେଜ ଘେନ । ୭୨ ।
ହନୁମନ୍ତ ବିଗ୍ରହନ୍ତେ ଜାଣିଲେ ଦେବ ହରି
ନୀଳ ବଇକୁଣ୍ଠକୁ ଧ୍ୟାୟେ ଲୟେ କରି । ୭୩ ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଆବର କାମପାଳ
ସେ ହରି ଅଶ୍ୱେ ଆସି ଭେଟିଲେ ତତକାଳ । ୭୪ ।
ପ୍ରଳୟ ଜନ୍ତୁରେଣ ସେ ଅଚିନ୍ତ ହୟେବର ହରି
ବିବାରିଷ ନ ଜାଣନ୍ତି ସେ କାଳ କାମ ଅପହରି । ୭୫ ।
ଅଗ୍ନିରେ ନ ପୋଡନ୍ତି ଜଳରେ ନ ବୁଡନ୍ତି
ମହା ପ୍ରଳୟ ହୋଇଲେ ସେ ହଂସରୂପେ ବିହଡନ୍ତି । ୭୬ ।
କୋଟି କୋଟି ଯୁଗେ କଳ୍ପ କଳ୍ପ ପ୍ରସରଇ
ତେବେ ସେ ହରି ବାରିସ ନିଶ୍ୱାସେକ ଛାଡଇ । ୭୭ ।
ଯେତେବେଳେ ପୃଥ୍ୱୀ ପ୍ରଳୟ ହୋଇଯାଇ
ତେବେ ସେ ହରିଅଶ୍ୱଂକୁ ବିବସେକ ହୋଇ । ୭୮ ।
ବ୍ରହ୍ମ ଶକତି ରୁଦ୍ର ଶକତି ଅମୋଘ ଶକତି ବଜ୍ର ଶକତି
ଅକ୍ଷୟେ ହୋଣ ପାଶୁପତ ଶର ଖଡଗ କୋନ୍ତ କାଣ୍ଡ । ୭୯ ।

ବ'ବଲ ଶର ଅଧାଚନ୍ଦ୍ର ଶର ବଜ୍ର ବାଣ ସୂଚି
ମାଳଚନ୍ଦ୍ର ବଇଷ୍ଣବୀଚନ୍ଦ୍ର ରୁଦ୍ରଚକ୍ର କାଳସୂଚି । ୮୦ ।
ମାଳବାଣ ବଜ୍ରବାଣ ନାରାୟଣୀ ଶର
ଯେଉଁ ଶର ନ ଭେଦଇ ତାହାଙ୍କର ଶରୀର । ୮୧ ।

ବ୍ରହ୍ମାଙ୍କୁ ଦିବସେକ ହୋଇଲେ ତାହାଙ୍କୁ ଦିବସେ
ଧାତା ନିଦ୍ରାଗଲେ ତାହାଙ୍କର ନିଦ୍ରା ଆସେ । ୮୨ ।
ଯାବତଚନ୍ଦ୍ର ଦିବାକରେ ଯେ ଥାଆନ୍ତି ସେମାନେ ସମସ୍ତେ
ସେ ଗୃହ ଅଶ୍ୱଙ୍କୁ ଶ୍ରୀପତି ଯୋଚିଲେ ନେଇ ନନ୍ଦିଘୋଷ ରଥେ । ୮୩ ।

ବଇବସ୍ୱତ ମନୁ ଯେ ପୁଚ୍ଛା କଲେ ଅଗସ୍ତିଙ୍କ
ସେ ଅଶ୍ୱଙ୍କର ମହିମାତ କହିଲ ଅସଂଖ୍ୟ ବାକ । ୮୪ ।

ଆଦ୍ୟହୁଁ ଯେଉଁ ଅଶ୍ୱେ ଉତପତ୍ତି ହୋଇଲେକ କାହୁଁ
ଯେବା ସଂକ୍ଷେପି ମୋତେ କହିବା ମହାପ୍ରଭୁ । ୮୫ ।

ବଦୟନ୍ତି ଅଗସ୍ତି ମହା ବ୍ରହ୍ମର ବାଳ ଲୀଳା
ଶୁଣ ହୋ ମନୁରଜା ତୁ ଷଷ୍ଟି ଯୁ ଅର୍ଗଳା । ୮୬ ।

ଶିବସଦନ ବୋଲି ଯେକଇ ସତ୍ୟ ଯୁଗେ
ଶୂଦ୍ରକ ନାମେକ ବ୍ରହ୍ମା ବସଇ ଅମର ସ୍ୱର୍ଗେ । ୮୭ ।

କର୍ଣ୍ଣସଦନ ନାମେ ଯେକଇ ବିରଞ୍ଚି
ଦ୍ୱାଦଶ ପୁରୁଷ ସେ ଚଉଦ ବିଦ୍ୟାଯେଣ ସଞ୍ଚି । ୮୮ ।
ଆରକ ବୋଲି କରି ଯେ ଯେକଇ ଅସୁର
ଗୃହ ଦିବା ଥାଇ ସେ ଚନ୍ଦ୍ରଭାଗା ତୀର୍ଥର । ୮୯ ।
ମାଘ ଶୁକଳ ଦ୍ୱାଦଶୀ ଅଟଇ ଗୁରୁବାର
ରୋହିଣୀ ନକ୍ଷତ୍ର ଭୋଗ ହୁଅଇ ସେ ଦିନର । ୯୦ ।

---

୮୨ { ପିତାଙ୍କୁ ଅବଦେକ ହୋଇଲେ ତାହାଙ୍କୁ ଅବଦେ ।
ଧାତାଙ୍କୁ ରଧେ ହୋଇଲେ ତାହାଙ୍କୁ ହୋଇ ନିଦେ । (କ, ଛ, ଘ ଟ)
୮୫।୧ ଅକ୍ଷୟେ ଅବ୍ୟୟେ ସେ ଉତପତ୍ତି ହୋଇଲେକ କାହୁଁ । (ଧ ନ ଥ ଡ)
୮୮।୧ ବନସଦନ ବୋଲି ଯେକଇ ବିରଞ୍ଚି । (ଙ, ଟ)

ବାୟବ୍ୟ ନାମେ କରଣ ପ୍ରୀତି ନାମେ ଯୋଗ
ବୃହସ୍ପତି ଚନ୍ଦ୍ର ଯେ ରୋହିଣୀ ବୃଷ ଘରେ ଭୋଗ । ୯୧ ।
ସେ ଦିନ ପ୍ରବେଶ ହେଲା ମକର ସଂକ୍ରମଣ
ଅର୍କତୀର୍ଥେ ଯାଇ ବିଜୟେ ବିରଞ୍ଚି ନାରାୟଣ । ୯୨ ।
ସୂର୍ଯ୍ୟମଣ୍ଡଳ ରଥେ ଅଶ୍ୱମାନ ହାଦେ ଯୋଚି
ଅର୍କ ବଟ ତଳେ ରଥ ନେଇ ଥୋଇଲେ ବିରଞ୍ଚି । ୯୩ ।
ଅରୁଣ ସାରଥିଙ୍କି ସେ ରଥରେ ବସାଇ
ଚନ୍ଦ୍ରଭାଗା ତୀର୍ଥେ ସ୍ନାନ କରନ୍ତି ଦେବ ଯାଇଁ । ୯୪ ।
ସେ ଅର୍କ ଦଇତ ଯେ ସମୁଦ୍ରେ ଥିଲା ପଶି
ସେ ମହାତୀର୍ଥରୁ ବାହାର ହୋଇ ଆସି । ୯୫ ।
ଅର୍କବଟ ମୂଳେ ଅର୍କ ଦୈତ୍ୟ କଲାକ ବିଶ୍ରାମ
ଦେଖିଲା ସୂର୍ଯ୍ୟମଣ୍ଡଳ ରଥ ଯେ ଅତି ଉତ୍ତମ । ୯୬ ।
ଦେଖିଣ କମ୍ପାଇ ଯେ ଅମ୍ବୁ ଦୈତ୍ୟ ବଳା
ବୋଇଲା ଯେ ତୀର୍ଥ ମୋର କେହୁ କଲା ଗୋଳା । ୯୭ ।
ଅତିଶୟ ଉଚ୍ଚର୍ଗ ସେ ଅସୁର ବିକଟି
ମହା ପ୍ରଳୟ ଉଦର ତାର ହୃଦୟ ଖଣ୍ଡ କ ଜାଣି ଗିରି ଗୋଟି । ୯୮
ସେ ଚନ୍ଦ୍ରଭାଗାୟେ ସ୍ନାନ କରୁଥିଲେ ଦେବଲୋକେ
ଅସୁର ଭୟେ ଗୋପ୍ୟ ହୋଇଲେ ବ୍ରହ୍ମାଅର୍କେ । ୯୯ ।
ଅରୁଣ ସାରଥି ଯେବା ସେହୁ ରଥେ ଲୁଚି
ଲୋଡଣ ଅର୍କ ଦୈତ୍ୟ ନ ପାଇଲା କିଛି । ୧୦୦ ।
ସେ ରଥ ଦଇତ କରେ ଧଇଲାକ ତୋଳି
ମେରୁ ସମ ରଥକୁ କଣ୍ଠତେ ହେଲା ଗିଳି । ୧୦୧ ।
ଗିଳଣ ଦୁରନ୍ତକ ଯେ ପଶିଲା ବାରିନିଧି
କଣ୍ଠଗତ ହରିଲା ସେ ବିରଞ୍ଚି ସମ୍ପ୍ରଧି । ୧୦୨ ।
ଜଳର ଭିତରୁ ବିରଞ୍ଚି ହୋଇଲେ ବାହାର
ସୂର୍ଯ୍ୟମଣ୍ଡଳ ରଥ ନ ଦେଖିଲେ କରତାର । ୧୦୩ ।
ଅରୁଣ ସାରଥିକ ନ ଦେଖିଲେ ମହାପ୍ରଭୁ
ଆବର ଉଦେ ଅସ୍ତ ହୋଇବାକ କାହୁଁ । ୧୦୪ ।

ବଦସୂକ୍ତ ବେଦବ୍ରହ୍ମା ଶୁଣିମା ବିରଞ୍ଚି
ତୋହରେ ଉଦେ ଅସ୍ତ ଦିବାରାତ୍ର ସଞ୍ଚି । ୧୦୫ ।
ତୁ କର୍ମେ ଉଦେ ନୋହୁ ହେ କରତାର
ସକଳ ଭୁବନ ଯେ ଦିଶଇ ଅନ୍ଧକାର । ୧୦୬ ।
ଧାତାର ବଚନେ ବଦସୂକ୍ତ ଯେ ବିରଞ୍ଚି
ରଥ ଅଶ୍ୱ ସାରଥି ମୋର ଅର୍କ ଦଇତ ଗିଳିଅଛି । ୧୦୭ ।
ଯେବେ ନିମିଷକେ ଲକ୍ଷେ ଯୂଣ ଗମନ୍ତ ଯେଉଣ ହୟେ
ତାହାଂକର ନ ଥିଲେ କେହ୍ନେ ମୁଂ ହୋଇବି ଉଦୟେ । ୧୦୮ ।
ଶୁଣି ବେଦବର ଚିନ୍ତିଲେ ଲୟେ କରି
ସତ୍ୟଯୁଗେ ଯେ ଦଇତକୁ ନୁଆଣିଲୁ ଆମ୍ଭେ ମାରି । ୧୦୯ ।
ଶୂଦ୍ରେକ ନାମେ ବ୍ରହ୍ମା କଲ୍ପିକ ମହାଯାଗ
ଲକ୍ଷେ ଅଠାଇଶି ସହସ୍ର ବରଷ ପରିଯନ୍ତେ ଦିଲ୍ଲିକ ହବିର୍ଭାଗ । ୧୧୦ ।
ଘୃତ ଦିଗକଇଂ ଅଷ୍ଟଭାଗ କରି ଦିଲ୍ଲିକ ଆହୁତି
ପ୍ରାଣ ତେଜ ବଶ୍ୟାନର କାଳିଅନଳ ବହନ୍ତି । ୧୧୧ ।
କୋଟିଏକ ଅନନ୍ତ ମନ୍ତ୍ରେ ଦିଲେ କୋଟିଏକ ଭାଗ
ତହୁଂ ଉତପତ୍ତି ହୋଇଲେ ଅଷ୍ଟ ଯେ ତୁରଙ୍ଗ । ୧୧୨ ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଆବର କାମପାଳ
ନିର୍ଘାତ କାଳିମେଘା ହରିତାଳ ବ୍ୟାଳୋକ । ୧୧୩ ।
ଯେ ଅଷ୍ଟ ଅଶ୍ୱ ଜାତ କଲେ ଶୂଦ୍ରେକ ନାମେ ବ୍ରହ୍ମା
ବିରଞ୍ଚିକ ରଥେକ ସେ ଦିଲେକ ମହାତ୍ମା । ୧୧୪ ।
ଅଷ୍ଟରଥ ଜାତ ହୋଇଲେ ପିତାମହଂକର ଆହୁତି
ସୂର୍ଯ୍ୟମଣ୍ଡଳ ରଥ ଚନ୍ଦ୍ରମଣ୍ଡଳ ରଥ ପୁଷ୍ପେକ ରଥ ସଚକେତ । ୧୧୫ ।
ଖେଚରି ରଥ ମନଦଣ୍ଡ ରଥ ନନ୍ଦିଘୋଷ ରଥ
ଆବର ତାଳଧ୍ୱଜ ରଥ ଯେ ଅଷ୍ଟ ରଥ ସେ ଯାଗରୁ ଉପଗତ । ୧୧୬ ।

---

୧୧୫।୨ ସୂର୍ଯ୍ୟମଣ୍ଡଳ ରଥ ଚନ୍ଦ୍ରମଣ୍ଡଳ ରଥ ପୁଷ୍ପେକ ରଥ ଆବର ରଥ ଶ୍ୱେତ ଶକତ । ( ଥ, ଙ, ନ )

ସେହୁ ଅଷ୍ଟରଥ ଯାଗ କୁଣ୍ଡରୁ ବାହାର
ସାତରଥ ଥୋଇଲେ ନେଇ କୁବେର ଭଣ୍ଡାର । ୧୧୭ ।
ସୂର୍ଯ୍ୟମଣ୍ଡଳ ରଥେ ଯେ ବଜସ୍ତେ କରତାର
ନେଇଣ ସମର୍ପିଲେ ଦେବ ଦନକର । ୧୧୮ ।
ସେ ଅଶ୍ୱମାନ ପିତାମହ ରଥେ ଯୋଚ
ସେ ଅଶ୍ୱ ଘେନ ଉଦେ ହୋଇଲେ ବରଞ୍ଚ । ୧୧୯ ।
ହରଦାସ ବୋଲଣ ସ୍ତେକ ସତ୍ୟଯୁଗ ଗୋଠି
ଆଦତ୍ୟ ଅର୍କ ଦତ୍ୟ ଚନ୍ଦ୍ରଭାଗା ହେଃଠା ହେଠି । ୧୨୦ ।
ଅନେକ ସମର କଲେ ବରଞ୍ଚ ଅର୍କ ଦଇତର ଭୁଲେ
ଗୁପ୍ତାକୁ ଦେଖାଇ ଦେବ ଅର୍କ ଦତ୍ୟକୁ ମାଇଲେ । ୧୨୧ ।
ଅନେକ ପ୍ରକାରେ ଦତ୍ୟ ବଧ ଯେ ନୋହିଲ
ସେହୁ ଛାର୍ଥେ ତାହାକଇଂ ମାଡଣ ବସିଲ । ୧୨୨ ।
ପୃଥିବୀର ଅଗ୍ନିକୋଣେ ସେ ଦଇତକୁ ବସିଲେକ ମାଡ
କୋଣାର୍କ ଛାର୍ଥ ଦେବ ମଉଦଧି କୂଳେ ମଣ୍ଡି । ୧୨୩ ।
ଶୁଣ ବଇବସ୍ୱତ ମନୁ ତୁ ଯାହା କଲୁ ପୁଚ୍ଛା
ଅର୍କ ଦତ୍ୟ ମାଡ ଦେବ ତ୍ରଇଲୋକ୍ୟ କଲେ ରକ୍ଷା । ୧୨୪ ।
ଅର୍କ ଦତ୍ୟ ଗିଳଥିଲା ଯେ ସୂର୍ଯ୍ୟମଣ୍ଡଳ ରଥ
ବକ୍ଷସ୍ଥଳଠାରୁ ଚର ପକାଇଲେ ଭୂମିଗତ । ୧୨୫ ।
ଅରୁଣ ସହତେ ଥିଲେ ଅସୁର ଉଦରେ
ସମସ୍ତ ସଞ୍ଜାମାନ ପାଇଲେ ଦେବ କରତାରେ । ୧୨୬ ।
ସେ ଅର୍କ ଦତ୍ୟ ଉଦର ଯେ ନବଶତ ଯୋଜନ ସ୍ଥଳ
ଆବର ପଞ୍ଚବଂଶ ଯୋଜନ ଅଛଇ ବକ୍ଷସ୍ଥଳ । ୧୨୭ ।
ଗର୍ଭ ଭତରେ ପଶି ଗୃହ୍ହଂଲେ ଦଶଇ ପୃଥିବୀ ପରସ୍ତେ
ସୁଖେଣ ବହରୁଥିଲେ ତହିଂରେ ବୃଶହସ୍ତେ । ୧୨୮ ।
ରଥ ଅଶ୍ୱ ସାରଥି ପାଇଣ ଅଂଶୁମାଳୀ
ସେ ରଥ ଆରୋହଣ ଦେବ ଗଗନେଣ ଚଳି । ୧୨୯ ।
ଶୂଦ୍ରେକ ନାମେ ବ୍ରହ୍ମା ଯେବଣ ଅଶ୍ୱ ଜାତକଲେ
ସେ ଅଶ୍ୱ ରଥ ନେଇ ବଇକୁଣ୍ଠେ ଥୋଇଲେ । ୧୩୦ ।

---

୧୩୦।୨ ସେ ଅଶ୍ୱ ରଥ ନେଇଂ ବାୟୁବ୍ୟ କୋଣେ ଥୋଇଲେ । ( ଙ, ଛ )

ଖାଣ୍ଡବ ବନ ଦହନ କାଳେ ସେ ବଶ୍ୟାନର ଦେବତାଏ
ବଇକୁଣ୍ଠୁଂ ଆଣି ଦେଲେ ଅଗ୍ନି ଟାଣ୍ଡବ ଧନୁର୍ଜଏ । ୧୩୧ ।
ସେ ଗୃହର ଅଶ୍ୱ ଯେ ଅକ୍ଷଏ ଅବ୍ୟଏ
ତାହାନ୍ତ ଆଣି ନନ୍ଦଘୋଷେ ଯୋଚଲେ ଦେବରାଏ । ୧୩୨ ।
ଯଦ୍ୟପି କୋଟିଏ ବ୍ରହ୍ମାଣ୍ଡ ହୋଇବାକ ଗରୁ
ନିମିଷେକେ ଉଡାଇ ପାରନ୍ତ ମହାମେରୁ । ୧୩୩ ।
ଶଙ୍ଖ ଗୋକ୍ଷୀର ଯେ ଶ୍ୱେତ କାମପାଳ
ଏହୁ ଗୃହର ଅଶ୍ୱେ ନେଇ ଯୋଚଲେ ଶୁଭବେଳେ ଦେବକୀର ବାଳ ।୧୩୪।
ଯାହା ତୁ ପୁଛାକଲୁ ମନୁ ମହାତମା
ଶୁଣିଲୁଟିକ ହେତୁ କର ଗୃହର ଅଶ୍ୱଂକ ମହିମା । ୧୩୫ ।
ଶ୍ରୀକରେ ଅର୍ଦ୍ଧ୍ୟଥାଳୀ ଘେନଣ ସଉଭଦ୍ରେ
ବନ୍ଦାଇଲେ ପାର୍ଥିକୁ ଯେ ପରମ ସାନନ୍ଦେ । ୧୩୬ ।
ସର୍ବ ସୁବଧାନେ ଯେ ସର୍ବ ଶୁଭ ମଙ୍ଗଳେ
ଆପଦ ମେଣ୍ଟଣି ଦୁର୍ଗା ତୋତେ ରଖନ୍ତୁ ସର୍ବକାଳେ । ୧୩୭ ।
ଅନେକ ମଙ୍ଗଳ ଯେ କଲେକ ଶଙ୍ଖ ଧ୍ୱନି
ରଥେ ବଜେକଲେ ଦେବ ଅର୍ଜୁନକଇଂ ଘେନି । ୧୩୮ ।
ସେ ଅଶ୍ୱଂକର ମହିମା ଶୁଣ ହୋ ଚଇତନ
ଗଗନେ ଉଡନ୍ତ ଅଶ୍ୱେ ଯେହ୍ନେ ପୁଷ୍ପେକ ବିବାନ । ୧୩୯ ।
କଳାମେଘେ ଯେହ୍ନେ ଉଡନ୍ତ ବକପନ୍ତ
ତେସନ ସରୂପ ଅଶ୍ୱଂକର ଜ୍ୟୋତି । ୧୪୦ ।
କୁରୁ ପାଣ୍ଡବ ବଳ ସାଗର ପ୍ରକାଶ
ତହିଂକ ଅଶ୍ୱେ ଯେ ଅଟନ୍ତ ଗରୁହଂସ । ୧୪୧ ।
କୁରୁଥାଠ ବଳକୁ ରଥ ସୁନ୍ଦର ଶୋହିଲା
ଶ୍ରୀକୃଷ୍ଣ ସାରଥି ଯେ ଜଗତ ଜନ ମୋହିଲା । ୧୪୨ ।

---

୧୪୦ { ଜଳ ଭିତରେ ଯେହ୍ନେ ଦିଶନ୍ତ ହଂସପନ୍ତ ।
{ ତେସନ ସାରଥେ ଯେ ଅଶ୍ୱଂକର ତେଜ କାନ୍ତ । ( ଖ, ଝ )

୧୪୨।୧ ଶୋହିଲା—ଶୋଭା ହେଲା ।

ପବନଦୃଂ ବେଗେ ସେ ଅଶ୍ୱେ ଶୂନ୍ୟମାର୍ଗେ ହାଦେ ଗମି
ଧାଡ଼କାରେ ଭେଟିଲେ ରଣଯାଗ ଭୂମି । ୧୪୩ ।
ଅନେକ ସମ୍ଭବେ ଯେ ପୂରିଛନ୍ତି କୁରୁବଳ ସଇନ
ସିନ୍ଧୁଘୋଷ ଜାଣି ଶୁଭଇ ଶଙ୍ଖ ଧୂନ । ୧୪୪ ।
ଉତ୍ତର ଦିଗର ଯେ ଗୁଳଶ ସହସ୍ର ନୃପତି
ରଥ ଗଜ ଅଶ୍ୱ ଯେ ଅସଂଖ୍ୟ ପାଦାନ୍ତି । ୧୪୫ ।
ପଶ୍ଚିମ ଦିଗର-ଯେ ପଞ୍ଚାଶ ସହ୍ର ରାଜା
ପ୍ରତଗ୍ୟାଂ କର ଆରମ୍ଭେ ସେ ବଜାନ୍ତି ଘୋର ବାଦ୍ୟବାଜା । ୧୪୬ ।
ପୂର୍ବ ଦିଗରେ ଯେ ତିନ ସହସ୍ର ଦଣ୍ଡଧାରୀ
ଥାଠ ସଇନ ଘେନ ଯେ ସମସ୍ତେ ଉଦ୍ଧାର । ୧୪୭ ।
ଦକ୍ଷିଣ ଦିଗର ସେ ସାତ ସହସ୍ର ରାଜପୁ
ଥାଠ ସଇନ ଘେନ ଯେ ସମରକୁ ଆସୁ । ୧୪୮ ।
ସମସ୍ତ ରାଜାମାନେ ଅନ୍ତେ କୋନ୍ତକାର
ଛେଲ ଚର୍ମ କାତି ଖଡ୍ଗ ବହନ୍ତି ବେନ କର । ୧୪୯ ।
ଘେନନ୍ତି କମାଣ ଯେ ଶର ବେନପାଣି
ଖଡ୍ଗ ଝଗଜନ୍ତି କରତାର କରଣ ଜାଣି । ୧୫୦ ।
ଉତ୍ତର ଦିଗ ରାଜାମାନେ ଛୁରି କମାପୂଣମାନ ସାଜ
ପ୍ରତଗ୍ୟାଂ କର ଯୁଦ୍ଧକୁ ଧାମନ୍ତି ଚଢିଣ ରଥ ଗଜ ବାଜ । ୧୫୧ ।
ପଶ୍ଚିମ ଦିଗ ରାଜାମାନେ ଯେ ବଳବନ୍ତ
ତୋଣ ଶର ଧନୁ କରେ ଘେନ ଧାମନ୍ତି ଚଢିଣ ଅଶ୍ୱନ୍ତ । ୧୫୨ ।
ପୂର୍ବ ଦିଗ ରାଜାମାନେ ଅନ୍ତେ ମହାବୀର
ଶରୀର ନ ଜମ୍ପ'ସେ ସାଂଗ୍ରାମେଣ ଧୀର । ୧୫୩ ।
ଆକାଶ ଉଚ୍ଛୁଳଇ ଚମକେ ରଣଭୂବ
ମିଳଲେ ଯୁଦ୍ଧ ଭୂମିରେ ବୃତ୍ରଭୂଷଣ୍ଡ ଅଷ୍ଟ ଭଇରୋଷୀ । ୧୫୪ ।

---

୧୪୪।୨ ସିନ୍ଧୁ ଘୋଷ ଜାଣି ଶୁଭଇ ମୁଖ ଧ୍ୱନ । ( ଝ, ଘ )
୧୪୯।୧ କୋନ୍ତକାର ସ୍ଥାନରେ ହନ୍ତକାର ପାଠ ଅଛି ।
୧୫୩।୧ ଆକାଶ ଉଚ୍ଛୁଳଇ, ଆକାଶ ହାନ୍ଦୋଳଇ ପ୍ରଭୃତି ପାଠ ଅନେକ ପୁସ୍ତକରେ ଅଛି
୧୫୪।୧ ରଣଭୂବ—ରଣଭୂମି ।

ନବକୋଟି କାତ୍ୟାୟନୀ ଯେ ଚଉଷଠି ଯୋଗିନୀ
ବାଉନ କୋଟି ଚାମୁଣ୍ଡା ଯେ କ୍ଷେତ୍ରପାଳନ୍ତ ଘେନି । ୧୫୫ ।
ଚାମଣ୍ଡା ପିଶାଚ ପ୍ରେତ ଭୂତଙ୍କ ସହିତେ
ମିଳିଲେ ସମସ୍ତେ ଯେ କୁରୁକ୍ଷେତ୍ର ଭୂମିଗତେ । ୧୫୬ ।
କଉରବେଙ୍କ ଆଡେ ସତାଶୋଇ ସହସ୍ର ରାଜା
ଜାଣିଣ ମାନଗୋବିନ୍ଦ ସମସ୍ତଙ୍କୁ କଲି ପୂଜା । ୧୫୭ ।
ଚାରି ଊଣା ତିନି ସହସ୍ର ଯେ ନୃପତି
ସେହିତେ ରାଜା ହୋଇଲେ ପାଣ୍ଡବଙ୍କର କତି । ୧୫୮ ।
ଜୟନ୍ତାରେ ପାଣ୍ଡବେ ହସ୍ତିନାରେ କୁରୁପତି
ସେମନ୍ତର ସମୟେ ମିଳିଲା କଳିଙ୍ଗସେନ ନୃପତି । ୧୫୯ ।
ନବଲକ୍ଷ ଗୁଞ୍ଜର ତାର କ୍ଷଉଣୀଏ ପାଦାନ୍ତ
ଅଇରାବତ ସମାନେ ସେ ଦଶନ୍ତ ତେଜ ମୂର୍ତ୍ତି । ୧୬୦ ।
ଦେବ ଇନ୍ଦ୍ର ସମାନେ କଳିଙ୍ଗସେନ ଦିଶଇ ଯେ ଶୋଭା
ଅଙ୍ଗ ବଳ ଘେନିଣ ସେ ମଧ୍ୟଥାଠେ ଉଭା । ୧୬୧ ।
ଭୁଜେ ବୀର ନେତ ବାନ୍ଧିଣ ଶ୍ୱେତ ହାଥୀ ଚଢି
ସୁବର୍ଣ୍ଣ ଶତେ ଶତେ ଭାର ବେନି ଗଦା ଧରି । ୧୬୨ ।
ଆହୋ କୁରୁ ପାଣ୍ଡବେ ତୁମ୍ଭେ ବେନି ଚକ୍ରବର୍ତ୍ତୀ
ଯେବଣ ବଳ ଉଛୁ ମୁଂ ହୋଇବି ତାର କତି । ୧୬୩ ।
କଉରବେ ସମସ୍ୟା ନ ଦିଲେ ତାଙ୍କୁ କେହି
ବେନି ବଳ ମଧ୍ୟେ କଳିଙ୍ଗସେନ ଅଛି ରହି । ୧୬୪ ।
ପାଣ୍ଡବସୁନ୍ଦର ଭୀମସେନ ସେ ମହାତାପ
ଦୁଇ ବଳ ମଧ୍ୟରେ ସେ ଆନ୍ତର ବଳ ଗୃପ । ୧୬୫ ।
ତାହା ଦେଖି ବିମୁଖ ଯେ ଯାଇଲେ ନାଗପୁଣ
ଆରେ ଭୀମସେନ ସର୍ବଦା କାଳେ ତୋର ଦୁଷ୍ଟ ପଣ । ୧୬୬ ।
କ୍ଷଣେକ ମାତ୍ରେ ଯେବେ ହୋଇଥାନ୍ତୁ ଭିନ୍ନ
କଳିଙ୍ଗସେନ ଆମ୍ଭ କଟକ ଆସନ୍ତା ନବଲକ୍ଷ ଗୁଞ୍ଜର ହାଦେ ଘେନି ।୧୬୭

---

୧୬୫।୨ ଗୃପ—ଅଲଗା ।

କୁବେର ସାକ୍ଷେ ସେ ଅଛଇ ମହାରାଜା
ଯୁଦ୍ଧିଷ୍ଠି ଦେବଂକୁ ଆସି କରନ୍ତି ପାଦପୂଜା । ୧୬୮ ।
ନାରଦଂକ ବଚନେ ଯେ ବୋଲନ୍ତି ଯୁଧିଷ୍ଠି
ଆବହୁଂ ଜାଣଇ ମୁଂ ଭୀମର ପ୍ରକୃତି ମନ୍ଦ ଗୋଷ୍ଠି । ୧୬୯ ।
ଯେହାରେ ଚତେ ଅନ୍ତର ମୋତେ କଲେକ ଧୃତରାଷ୍ଟ୍ର
ବାଲ୍ୟତ କାଳହୁଂ ଯେ ଅଟେ ବଡ ଦୁଷ୍ଟ । ୧୭୦ ।
ସାନ ବେଳରେ ଭୀମ ଆଖଡାଶାଳେ ପଶି
ବେନ ଗଦା ବୁଲାଇ ଯେ ଭୂମିକି ଆଫେଷି । ୧୭୧ ।
ବୋଲଇ କାହିଂ ସଂଘରଣ କରିବ ମୋର ଗଦା
ପର୍ବତେ ପିଟନ୍ତେ ଭଙ୍ଗ ହୋଇବ ସର୍ବ ପଦା । ୧୭୨ ।
ପୃଥିବୀରେ ଗଦା ମୁହିଂ ପିଟିବଇଂ ଯେବେ
ବସୁନ୍ଧରା ରସାଂଗତ ହୋଇବାକ ତେବେ । ୧୭୩ ।
ଦେବେ ଦାନବେ ନୁଆରନ୍ତି ଯେହା ସହି
ଧୃତରାଷ୍ଟ୍ର ଶତେ ପୁତ୍ରଂକ ନିମନ୍ତେ ଅଛଇ ଗଦା ବହି । ୧୭୪ ।
ଏମନ୍ତେ ବୋଲି ବେନି ଗଦା ହସ୍ତେ ସଂଘରଇ
ଯେଣୁ ବାରତା ଯାଇଂ ଜଗତେ ଧୃତରାଷ୍ଟ୍ର ଆଗେ କହି । ୧୭୫ ।
ଯେହାର ଦୁଷ୍ଟପଣେ ଦୁର୍ଯୋଧନ ଗୁଡାଲା ମୋତେ ଯୋଗ
ରାଜ୍ୟରୁ ବାହାର କରିଦେଲା ମୋତେ ବନ ମାର୍ଗ । ୧୭୬ ।
ଭୀମାକୁ ମାରିବେ ବୋଲି ଅନେକ କଲେ ପଞ୍ଚ
ବିଷଲଡୁ ଖୁଆଇ ମାରିତ କଲେ ବାଞ୍ଛା । ୧୭୭ ।
ଜତୁଘର ଭିଆଇଲେ ଯେକା ଭୀମାର ପ୍ରସାଦୁଂ
ଧର୍ମେଣ ତରିଲୁ ତେତେକ ପ୍ରମାଦୁଂ । ୧୭୮ ।
ଯେକା ଭୀମାକୁ ଯେବେ କୁମ୍ଭିରୀ ଦନ୍ତ ଖାଆନ୍ତା
ଯେତେକ ଦ୍ୱନ୍ଦ ହର କଦାଚିତେ ନୋହନ୍ତା । ୧୭୯ ।
ଯୁଧିଷ୍ଠିଂକ ମୁଖରୁ ଭୀମ ଯେସନେକ ବାକ୍ୟ ଶୁଣି
ରାଗେଣ ଭୀମସେନ ଯେ ଉଠିଲା ଶିର ଧୂଣି । ୧୮୦ ।
ଭୀମସେନ ବୋଇଲା ତୁମ୍ଭେ ଶୁଣ ଦେବରାୟେ
କଳିଙ୍ଗସେନ ଘରକୁ କମ୍ପାଇ ଯେତେକ କର ଭୟେ । ୧୮୧ ।

କଳିଙ୍ଗସେନ ରାଜା ଥିବଟି ଯେଉଣ ଦ୍ୱାରେ
ସେ ଦ୍ୱାର ହୋଉ ପନ୍ତେ ମୋହୋର ଭାଗରେ । ୧୮୨ ।
ଗୋବିନ୍ଦେ ବୋଇଲେ ନବଲକ୍ଷ କୁଞ୍ଜର ଯାର ତୁଲେ
ନବଲକ୍ଷ ସଇନ ଅଛନ୍ତି ଅଙ୍ଗବଳେ । ୧୮୩ ।
ଭୀମସେନ ବୋଇଲା ହରି ତୁ ଯେବେ ମୋତେ ସାଖୀ ହୋଇଥିବୁ
କଳିଙ୍ଗସେନ ତୁଲେ ଯୁଦ୍ଧ ମୋ ଦେଖିବୁ । ୧୮୪ ।
ଶରରେ ନ ବିନ୍ଧିବି ଖଡ଼ଗେ ନ ଛେଦିବି
ବଡ଼ବାନଳେ ନେଇ ସମସ୍ତ ପକାଇବି । ୧୮୫ ।
ବାଉନ ବାଉନ ଭାର ଗଦା ବୁଲାଇ ବେନି କରେ
ନବଲକ୍ଷ କୁଞ୍ଜର ସୈନ୍ୟ ଉଡ଼ିବେ ମହା ଶୂନ୍ୟରେ । ୧୮୬ ।
ବଡ଼ବାନଳ ଭିତରେ ପଡ଼ିବେ ସର୍ବେ ଉଡ଼ି
ସମସ୍ତେ ମରିବେ ପ୍ରଭୁ ଅଗାଧ ଜଳେ ବୁଡ଼ି । ୧୮୭ ।
ଏସନେକ ଚରିତ ଯେବେ ନ ପାରଇ କରି
ତୋହୋର ଶ୍ରୀଚରଣ ଛୁଅଁଇ ଦେବ ହରି । ୧୮୮ ।
ବୃକୋଦର ମୁଖରୁ ଦୁସହ ବାକ୍ୟ ଶୁଣି
ସାଧୁ ସାଧୁ ଭୀମ ବୋଲି ହରି କଲେକ ଶଙ୍ଖ ଧ୍ୱନି । ୧୮୯ ।
ଅନେକ ସାନନ୍ଦେଣ ଦେବ ମଧୁରିପୁ
କେଶରୀ ତେଜ ଜାଣି ଦେଖିଲେ ଭୀମ ବପୁ । ୧୯୦ ।
ବେନି ଥାଟ ଉଭାରି ଅଛନ୍ତି ରଣ ଭୂମି
ପୁଚ୍ଛଇ ମାନଗୋବିନ୍ଦ ଭୀଷ୍ମ ମହାଗ୍ୟାନୀ । ୧୯୧ ।
ହେ ପିତାମହ ଦେଖ କୁରୁ ପାଣ୍ଡବ ସଇନ
କେହୁ ଜିଣିମାକୁ ସାମରଥ ଏହା ଅଛଇ ମେଦିନୀ । ୧୯୨ ।
ବଦନ୍ତି ଗାଙ୍ଗବେ ଶୁଣ କୁରୁରାଣ
ତିନି ଦିନେ ଜିଣି ପାରନ୍ତି ଗୁରୁ ଦ୍ରୋଣ । ୧୯୩ ।
ଏହୁ ବେନି ଥାଟ ଯେବେ ଦେଖିବ ବୀରକର୍ଣ୍ଣ
ସମରେ ନାଶ କରି ପାରଇ ପାଞ୍ଚଦିନ । ୧୯୪ ।
ଏହୁ ବେନି ବଳ ଯେବେ ଦେଖଇ ବୀର ଶଲ୍ୟ
ସାତ ଦିନେ ଜିଣି ପାରଇ ମହାମଲ୍ଲ । ୧୯୫ ।

---

୧୮୩।୧ କୁଞ୍ଜର—ହାତୀ ।

ମ୍ୟେ ବେନ ବଳ ଯେବେ ଦେଖିବେଟି କୃପେ
ନବ ଦନେ ଭାଙ୍ଗି ପାରନ୍ତି ସବୁଂକର ଦର୍ପେ । ୧୯୬ ।
ନରସ୍ୟେ ହୋଇ ଯେବେ ହୋଇବୁଂ ଆମ୍ଭେ ରଥୀ
ଦବସେକେ ନପାତ ମୁଂ କରିବ ସବୁନ୍ତି । ୧୯୭ ।
ମ୍ୟେ ବେନ ବଳେ ଅଶସ୍ତମା ହୋଇବେ ଯେବେ ରଥୀ
ନମିଷକେ ନସଂଶଯ୍ୟେ ମାରି ପାରଇ ସବୁନ୍ତି । ୧୯୮ ।
ମ୍ୟେ ବେନ-ଥାଠ ଯେବେ ଦେଖିବ ଅର୍ଜୁନ
ଅର୍ଦ୍ଧ ନମିଷକେ ସେ ସବୁ କରି ପାରଇ ନଶୋଧନ । ୧୯୯ ।
ଭୀମ ଗଦା ଯେବେ ଧରିବ ବେନବଳେ
ଘଡିକ ମଧ୍ୟେ ନାଶ ଯେ କରି ପାରଇ ସକଳେ । ୨୦୦ ।
ଅଶି ସହସ୍ର ବଳ ଧନୁ ଯେ ବହଇ ଯୁଧିଷ୍ଠିରେ
ଦନକେ ମାରି ପାରନ୍ତି କରଣ ଶରବୃଷ୍ଟି । ୨୦୧ ।
ନକୁଳ କୁନ୍ତମୁନେ ପୃଥୀ ଧରିଇ କ୍ଷୟ କରି
ମ୍ୟେ ବେନ ଥାଠ ମାରି ପାରଇ ଭଜନବନ ସରି କରି । ୨୦୨ ।
ଖଡଗ ଫଳା ଧରି ସେ ସହଦେବ ମନ୍ତ୍ରୀବର
ପହରକେ ବେନ ବଳ କରି ପାରଇ ସଂହାର । ୨୦୩ ।
କ୍ଷୁଣିଣ ଆଶ୍ରିଯ ଯେ ମାନଚନ୍ଦ୍ରଗ୍ରଣି
ହୃଦଗତେ କୁରୁନାଥ ବଢାଇ ବଷାଦ ମତି । ୨୦୪ ।
କମ୍ପାଇଂ ମ୍ୟେଡେ ଯୋଦ୍ଧା ହୋଇଲା ବୀର ପାଥ
ଦ୍ରୋଣଂକ ବଦ୍ୟା ପାଇ ମ୍ୟେଡେକ ସାମରଥ । ୨୦୫ ।
ଭୀଷ୍ମେ ବୋଇଲେ ଆମ୍ଭେ ଶହସ୍ର ଧରନ୍ତେ
ନାରାଜ ଧରନ୍ତେ କମ୍ପଇ ଆମ୍ଭ ମାଥେ । ୨୦୬ ।
ଧନୁ ଧରନ୍ତେଣ ଦ୍ରୋଣ ଅଶସ୍ତମା
ପିତା ପୁତ୍ରଂକର ଭୁଜ କମ୍ପଇ ହୃଦ କମ୍ପଇ କୃପବ୍ରହ୍ମା । ୨୦୭ ।
ଶଲ୍ୟଂକର ଶରୀର କମ୍ପଇ ଜାନୁ କମ୍ପଇ କର୍ଣ୍ଣ
ଧନୁ ଧରନ୍ତେ ନଷ୍କମ୍ପ ମ୍ୟେକା ବୀର ଅରଜୁନ । ୨୦୮ ।

---

୨୦୬ { ଭୀଷ୍ମେ ବୋଇଲେ ଆମ୍ଭର ସମରେ ଧନୁ ଧରନ୍ତେ
ନାରାଜ ପୂରବନ୍ତେ କମ୍ପଇ ଆମ୍ଭର ଗାତ୍ରେ । (ଠ, ଗ)

ନିଷ୍କାମ ଯୋଦ୍ଧା ସେ ଯେ ଅଟଇ ପାଣ୍ଡବ ସର୍ବସାରୀ
ତିନି ସ୍ୱର୍ଗଲୋକେ ତାଙ୍କୁ ନାହିଁ କିଛି ବାଧା । ୨୦୯ ।
ଦୁର୍ଯୋଧନ ଆତଙ୍କ ଯେ ଭୀଷ୍ମଙ୍କ ବାକ୍ୟ ଶୁଣି
ବଢାଇ ଦ୍ରୁପଦ କଥା ତ କହିଲ ନ ଜାଣି । ୨୧୦ ।
କୁରୁପତିର ଆତଙ୍କ ସେ ଜାଣିଲେ ଗାଙ୍ଗେୟ
ବଡ ଆରମ୍ଭେ ପ୍ରତିଜ୍ଞା ସେ କଲେ ମତ୍ତ ଗର୍ବେ । ୨୧୧ ।
ଶୁଣ ଦୁର୍ଯୋଧନ ଆମ୍ଭର ଦୃଢବାକ୍ୟ
ଭୀଷ୍ମ ଦ୍ରୋଣ ଛର୍ନାପଣ ଯେ ଦେବଙ୍କୁ ଅଶକ୍ୟ । ୨୧୨ ।
ନିଚୟ ଆଜ୍ଞା ଯେବେ ଦେବୁ କୁରୁପତି
ପାଣ୍ଡବ ମାନଙ୍କଇଁ କସ ଆମ୍ଭର ଯେ ଖ୍ୟାତି । ୨୧୩ ।
ସକଳ ମାନବ ମୁହିଁ ଦଶଦିନର ସାଂଗ୍ରାମେ
ପାଣ୍ଡବଙ୍କ କେମନ୍ତେ ରଖିବେ ସୁ ବୁଦ୍ଧିଜନ୍ମେ । ୨୧୪ ।
ଉଭାରିଲେ ସନ୍ୟ ଯେ ଦୋଳଣ ସୈନ୍ୟମୂର୍ତ୍ତି
ମଧ୍ୟେଣ ପ୍ରବେଶ ଆସି ଯେ କର୍ଣ୍ଣସେନ ନୃପତି । ୨୧୫ ।
ସଙ୍ଗତେ ଅଛଇ ତାର ପୁତ୍ର ବୀର ଜାତ
କୁରୁପତି ଆଗେ ଯାଇଁ କହଇ ଶବଦ । ୨୧୬ ।
ତୁ ମୋତେ ସେନାପତି କର ହୋ ଦୁର୍ଯୋଧନ
ଯେକା ଶରକେ ଜିଣିମି ମୁଁ ହରି ଅର୍ଜୁନ । ୨୧୭ ।
ଦୁର୍ଯୋଧନ ବୋଇଲା ତୁ ରାଜ୍ୟେଶ୍ୱର ନୋହି
ଅଛଵ ମାନକ ତୁ କର୍ମେ ଯେତେକ ଗର୍ବ ବହୁ । ୨୧୮ ।
ଧାମଣୀ କାଠର ଧନୁ ଅଛି ଯେକ ତୋର ହାତେ
ଫରିକ ତିନି ଶର ଯେନି ପ୍ରତିଜ୍ଞା କହୁ କେତେ । ୨୧୯ ।
ଯେଉଁ ଜଗନ୍ନାଥେ ସଂସାର ଅଧିପତି
ବାସୁଦେବଙ୍କ ଜିଣିମାକୁ ଅଛଇ କେଉଣ ଶକ୍ତି । ୨୨୦ ।
କର୍ଣ୍ଣ ବୋଇଲା ସମର ମୋର ଯେକାକ୍ଷଣେ
ତ୍ରିଭୁବନ ଜିଣି ମୁଁ ପାରଇ ଯେକା ଜଣେ । ୨୨୧ ।
ଯେ ତିନି ଗୋଟା ନାରାଜ ମୋର ଯେ ତିନି ଭୁବନକୁ
ଆବର ଜିଣିପାରଇ ମୁଁ ସଂସାର ଜଗତକୁ । ୨୨୨ ।

ମାନଗୋବିନ୍ଦ ବୋଇଲେ ତୋର ପ୍ରତଗ୍ୟାଂ ଅନମିତେ
ଯେଣୁ ତୋହୋର ଛର୍ମୀପଣ ନ ଯୋଗାଇ ମୋତେ । ୨୨୩ ।
ମୁହିଂ ଯେବେ ସଂହାତେ ମାରି ନ ପାରଇ ପାଣ୍ଡବନ୍ତ
ତେତେବେଳେ ମୁକୁଟ ମୁହିଂ ବାନ୍ଧଇ ତବ ମାଥ । ୨୨୪ ।
ଅନମିତ ବଶୋଇ ଅବରଣେ ମଧ ପାକ
ଅଥାପନ ଛର୍ମୀ ଅଭିବ ଯେଉଣ ମଇକ । ୨୨୫ ।
ଅଭିବ ଭାରଯା ଯେ ବିବାଦପ୍ରିୟ ଆଛି
ଯେଣୁତେକ ଲୋକନ୍ତ ଯେ ବିଶ୍ବାସ ନ ଯାଇ । ୨୨୬ ।
ଯୁଗତେଣ କର୍କଶ, ମଧୁ ପିଙ୍ଗଳ ଜାତି
ଅନର୍ଯାପ ଲୋକନ୍ତ ସେ କହଇ ଅପ୍ରୀତି । ୨୨୭ ।
ଚଳଇ କରାତ ଯେ କଟୁ ବଚନ ଶୁଣି
ବିସ୍ମରଇ ପାଣ୍ଡବଂକର ସମ୍ପଦ ମୁଂ ହରନ୍ତ ଯେଣୁକ୍ଷଣି । ୨୨୮-୨୦୨୮ ।

---

## କିରାତସେନର ପୂର୍ବ ଜନ୍ମ ବୃତ୍ତାନ୍ତ ଓ କିରାତସେନର ମୃତ୍ୟୁ

ବଇବସୁତ ମନୁ ଅଗସ୍ତିଂକୁ କଲେ ପୁଚ୍ଛା
କିରାତସେନ ରାଜା କମ୍ପେ ପାଣ୍ଡବନ୍ତ କରଇ କଇଛା । ୧ ।
ପାଣ୍ଡବେ ତାହାର ତ ନୋହନ୍ତି ବଇରି
ଶ୍ରୀହରିଂକୁ ଜିଣିମାକୁ ମନରେ ଇଚ୍ଛା କରି । ୨ ।
ଅଗସ୍ତି ବୋଇଲେ ଶୁଣ ତ୍ରେତଯ୍ଯା ଯୁଗର କଥା
ଶ୍ରୀ ରାମଚନ୍ଦ୍ର ଯେ ବଧିଲେ ବାଳୀ ବଳବନ୍ତା । ୩ ।
ସେ ବାଳୀ ଉତପତ୍ତି ହୋଇଲା ଦ୍ୱାପର ଯୁଗରେ
କିରାତେଶ୍ବର ହୋଇ ଜପୁଜିଲା ସେ ମଧ ସ୍ବର୍ଗରେ । ୪ ।

---

୨୨୬।୨ ଯେଣୁତେକ ଲୋକନ୍ତ ସେ ବିଦ୍ୟା ନ ଯୋଗାଇ । (ଥ, ନ, ଓ)
୨୨୭।୧ ଯୁଗତେ କାଳନଳ ସେ ମଧୁପିଙ୍ଗଳ ମୂରତି । (ଓ, ନ, ଝ)
୨୨୬।୧ ଆଛି—ମା ।
୨୨୭।୧ ମଧୁ—ମଦ୍ଧ, ପିଙ୍ଗଳ—କର୍କଶ ।

ମେ ଜନ୍ମେ ଦ୍ୱବାଧା ସ୍ୱେ ଜନ୍ମେ ଅଇରପକ୍ଷ
ପୂର୍ବର ଭବ ବଚନ କହଇ ପ୍ରତକ୍ଷ । ୫ ।
ଜାର ନାମେଣ ଶବର ଯେ ଅଙ୍ଗଦ ଅଛଇ ପୂର୍ବେ
ନାରାୟଣେ ବଧିବାକୁ ଜନ୍ମ ହୋଇଅଛୁ ସ୍ୱେବେ । ୬ ।
ଅବରଣ କଲା ସହୁଂ ମାନଚନ୍ଦ୍ରଗ୍ରହଣ
ପିତା ପୁତ୍ରେ ପ୍ରବେଶ ଆସି ହୋଇଲେ ପାଣ୍ଡବଂକ କଣ୍ଠ । ୭ ।
ମହାବଳବନ୍ତ ଯେ କରାତେଶ୍ୱର ବୀର
ଯୁଧିଷ୍ଠିରଂକ ପ୍ରଣପତ୍ୟ ସେ କରାତ ଶବର । ୮ ।
ସନ୍ନିଧେ ପ୍ରଣପତ୍ୟ ପିତା ପୁତ୍ର ବେନ ଛତ୍ରୀ
କୁଶଳ ବାରତା ତାଂକୁ ଯୁଧିଷ୍ଠିର ପଚାରନ୍ତି । ୯ ।
କସ ଅର୍ଥେ ଗମନ ତୁ କେଉଣ ଦେଶର ରାଜା
ବାକ୍ୟ ଅନୁକ୍ରମେ ଯୁଗତେ ଅଛୁ ପୂଜା । ୧୦ ।
କରାତଈଶ୍ୱର ବୋଲେ ଶୁଣ ଦେବ ଧର୍ମ
ବସୁ ଶବର ଗୋଷ୍ଠେ ମୁଂ ହୋଇଅଛୁ ଜନ୍ମ । ୧୧ ।
ବହରୁଂ ବନସ୍ତରେ ଆମ୍ଭେ ସାଂଗ୍ରାମରେ ଇଚ୍ଛା
ଯେ ଆମ୍ଭର ବଇରି ତାହା ସଙ୍ଗେ ରଣ କକ୍ଷା । ୧୨ ।
ଦୁଷ୍ଟ ନସୋଦନ ଦୃଢ଼ର ବଳଗଞ୍ଜା
ବସୁବର ଗୋଷ୍ଠୀ ଆମ୍ଭେ କଉଣିକ ବନେ ରାଜା । ୧୩ ।
କୁରୁପାଣ୍ଡବେ ତୁମ୍ଭର ମହାଯୁଦ୍ଧ ବୋଲି ଶୁଣି
ସମରେ ସଧ ଆମ୍ଭର ଗମନ କଲୁ ସ୍ୱେହକ୍ଷଣି । ୧୪ ।
ଯେବେ ସମ୍ପଦେ ରାୟେ ଅଛୁ ତୋର ଇଚ୍ଛା
ଆମ୍ଭର ମୁକୁଟ ବାନ୍ଧି ତୋହୋର ପୂରାଇବୁ ମନୋବାଞ୍ଛା । ୧୫ ।
କିରାତ ମୁଖରୁ ଯୁଧିଷ୍ଠିର ସ୍ୱେସନେକ ବାକ୍ୟ ଶୁଣି
ଉପହାସେ ପ୍ରତିବାକ୍ୟ ପାଣ୍ଡବଚୂଡ଼ାମଣି । ୧୬ ।
କରାତ ଅଲ୍ପବ ତୁମ୍ଭେ ରେ ବନଚର ଜାତି
ସେ ରଣ ଯାଗେ ତୁମ୍ଭେ କସ ବଳବନ୍ତ ଛତ୍ରୀ । ୧୭ ।
ଇନ୍ଦ୍ର ଶଂକା କରଇ ଯାହାର ଧନୁ ଧରିଲେ
ତୁ କିସ ସମର କରିବୁ ଭୀଷ୍ମ ଦ୍ରୋଣଂକର ତୁଲେ । ୧୮ ।

ଅଛନ୍ତ ଯୋଦ୍ଧାଏ ଏଥି ଅଷ୍ଟପାଟବଂଶୀ
ଜସ ଅର୍ଥେ ତୁମ୍ଭ ରେ ଅବରଣ ହୋଇ ଆସି । ୧୯ ।
ବୋଲଇ ଜଗତେଶ୍ୱର ଶୁଣ ହୁ ନୃପତି
ଆପଣା ପ୍ରତଗ୍ୟାଂ କଥା କହିବା ନୁହଇ ଯୁଗତି । ୨୦ ।
ପରଙ୍କଇଂ ନିନ୍ଦା କରଇ ଯେହୁ ଭୂମଣ୍ଡେ
ମୋହୋର ମହିଂମା ଯେ ଜାଣନ୍ତି ବ୍ରହ୍ମାଣ୍ଡେ । ୨୧ ।
ଦଶ ଦିଗପାଳମାନେ ମୋହୋର ସଙ୍ଗେ ଥାନ୍ତି
ଜିଣିଚ ଭାରଥ ଯୁଦ୍ଧ ହୋ ମଣଇଂ ନୃପତି । ୨୨ ।
ଏ ମୋର ତିନଗୋଟି ଫିରିକ ନାରାଜ
ଆକାଶେ ଛେଦିବାରେ ଗୋଟିକେ ଦେବରାଜ । ୨୩ ।
ଆରେକ ନାରାଜରେ ଛେଦିପାରେ ପାତାଳପୁର ଆଦି
ଆରେକ ନାରାଜରେ ମର୍ତ୍ତ୍ୟପୁର ପାରଇ ଭେଦି । ୨୪ ।
ଏ ବିଧି ତିନ ଗୋଟି ଶର ତିନ ପୁରକୁ
ତୁମ୍ଭର ଥାଠେ ହୋ ସେନାପତି କର ମୁକୁ । ୨୫ ।
ଯୁଧିଷ୍ଠିର ବୋଇଲେ ହୋ ପ୍ରତାଗ୍ୟାଂ ତୋର ସତ
ତୋତେ ମୁକୁଟ ବାନ୍ଧିବା ଅଟଇ ଯୁଗତ । ୨୬ ।
ଆପଣା ବାହୁବଳେ ଯେବେ ଶତ୍ରୁକୁ ନୋହଇ ସାଧି
ତେବେ ହୋ ଶତ୍ରୁକୁ ଆନ ହାଥେ ବଧି । ୨୭ ।
ଏକ ସହୋଦ୍ରେ ଆମ୍ଭେ ନୋଇବୁଂ ଅନ୍ୟୋଅନ୍ୟ
ଜସ ଅର୍ଥେ ଆମ୍ଭେ ସମର କରିବୁଂ ଆନ ଯୋଦ୍ଧା ଘେନ । ୨୮ ।
ନାସ୍ତି ବଚନେ ସେ ବାହୁଡିଲେ ବେନି ଛତ୍ରୀ
ଯାଆନ୍ତେଣ ଦେଖିଲେ ଯେ ଦେବ ଶିଖିପତି । ୨୯ ।
ଶ୍ରୀକୃଷ୍ଣଂକୁ ଦେଖିଣ ସେ ଜଗତେଶ୍ୱର ରାଜା
ପ୍ରଣପତ୍ୟ ହୋଇଣ ସେ ପଦ୍ମପାଦେ କଲା ପୂଜା । ୩୦ ।

---

୧୯।୧ ଅଛନ୍ତ ଯୋଦ୍ଧାଏ ଏଥି ଅଷ୍ଟାଦଶବଂଶୀ । (ଝ, ଟ, ଠ, ଖ)

୨୬ { ଯୁଧିଷ୍ଠିର ବୋଇଲେ ଜଗତ ମହିଂମା ତୋର ସାଧୁ
ତୋତେ ମୁକୁଟ ବାନ୍ଧିଲେ ନ ଆସିବେ ମୋର ଇଷ୍ଟ ବନ୍ଧୁ ।

( କେତେକ ପୋଥି ପାଠ )

ସ୍ୱାମୀ ମୁହିଂ ଅଇଲି କଉରେବ ବଳ ସଂହାରିବା ନିମନ୍ତେ
ପାଣ୍ଡବେ ବାରଣ କରି ମୁକୁଟ ନ ବାନ୍ଧିଲେ ମୋର ମାଥେ । ୩୧ ।
କଉରବେ ନାସ୍ତି ପୁଣ କଲେ ମୁଁ ସ୍ୱମତେ
ବାହୁଭଙ୍ଗ ଯାଉଛି ମୁଁ ମନ ଦୁଖ ଚିତ୍ତେ । ୩୨ ।
ତ୍ରଇଲୋକ୍ୟ ଜିଣିମାକୁ ଆମ୍ଭେ ସାମରଥା
ମୁଁ ମହାଭାରତେ ହରି ରଖ ମୋର କଥା । ୩୩ ।
ଗୋବିନ୍ଦେ ବୋଇଲେ ହୋ ତୁମ୍ଭେ ଥିଲ କାହିଂ
ମୁଁ ମର୍ତ୍ତ୍ୟ ଭୁବନେ ତୁମ୍ଭନ୍ତ ଆମ୍ଭର ଦେଖିଲାତ ନାହିଂ । ୩୪ ।
ଗୋବିନ୍ଦଂକର ବଚନେ ଯେ ବୋଲଇ ଶବର
ଆମ୍ଭର ଘର ଦେବହିଂ ଇନ୍ଦ୍ରଦ୍ୟା ନବର । ୩୫ ।
ତ୍ରଇଲୋକ୍ୟ ଜିଣିମାକୁ ଆମ୍ଭେ ଅଟୁ ଯେ ସାମରଥ
ମହାଭାରଥ ଯୁଦ୍ଧେ ହରି କଥା ଦେଖ ଯେ ଆମ୍ଭନ୍ତ । ୩୬ ।
ମୁଁ ତିନ ନାରାଜେ ମୁଂ ଜିଣି ପାରଇ ତ୍ରଇଲୋକ୍ୟ
ମୁଁ ତିନପୁର ଜିଣିବାକୁ ମୁଂ ଅଟଇ ଯେ ଏକ । ୩୭ ।
କର୍ବରସେନ ମୋହୋର ନାମ ମୋହୋର ମୁଁ ପୁତ୍ର
ସମରେ ଲକ୍ଷେ ରଜା ଜିଣିମାକୁ ଆମ୍ଭେ ଅଟଂ ଯେ ସାମରଥ । ୩୮ ।
କର୍ବର ମୁଖୁଂ ହରି ମୁଁ ଏନେକ ନିରାଧାର ବାକ୍ୟ ଶୁଣି
ହୃଦଗତେ ଚିନ୍ତା ଯେ କଲେ ଦେବ ଚକ୍ରପାଣି । ୩୯ ।
ଅର୍ଜୁନକୁ ଘେନି ହରି ମୁଁ କାନ୍ତେଣ ଭାଳୁଣି
କର୍ବର ଫେରାଇଲେ ଯେ ମନ୍ଦ ହୋଇବଟି ପୁଣି । ୪୦ ।
ସେନାପତି ନ କଲେ ମୁଁ କର୍ବର ଯିବ ଚଳି
ସଂସାରେ ଅଟଇ ଯେ କର୍ବର ମହାବଳୀ । ୪୧ ।
ପଣ୍ଡାତେ ନ ପୁଣ ସେନାପତି କରଇ କୁରୁପତି
ମୁଁ ମହୀମଣ୍ଡଳେ ମୁଁହାକୁ ଜିଣନ୍ତା ନାହିଂ ଛତ୍ରୀ । ୪୨ ।
ଅର୍ଜୁନ ବୋଇଲେ ହରି ତୁହି ସେ ସର୍ବଗ୍ୟାଂତା
ମୁଁ ଭବ ସାଗରୁ ହରି ତୁହି ସେ ଉଦ୍ଧାରନ୍ତା । ୪୩ ।
ତୋହୋର ଆଶ୍ରିତେ ହରି ଗ୍ରହୁଂ ସର୍ବକାଳେ
ଯଶ ଶ୍ରୀ ଆୟୁଷ ଅରଜୁଂ ନାଥ ମୁଁ ମହୀ ମଣ୍ଡଳେ । ୪୪ ।

ସେକାଳେ କବାଟକୁ ଜଗନ୍ନାଥେ ହକାର
ତୁ ଆମନ୍ତ ପ୍ରସନ୍ନ ହୁଅ ହେ ବନଗୃହସ୍ଥ । ୪୫ ।
ଆମ୍ଭେ ଯାହା ମାଗିବୁ ତୁ ପୁଣି ତାହା ଦେବୁ
ଆମ୍ଭେ ତୋର ମନୋବାଞ୍ଛା ସିଦ୍ଧ ଯେ କରିବୁ । ୪୬ ।
କବାଟସେନ ବୋଇଲା ସତ୍ୟ ସତ୍ୟ ଯେ ମୋହୋର
ଯାହା ମାଗିବୁ ତୋତେ ଦେବଇଂ ଚକ୍ରଧାରୀ । ୪୭ ।
ଚଳ ହାଥ କରିଣ ଯେ ଦାନ ମାଗନ୍ତି ଜଗନ୍ନାଥେ
ତୋହୋର ଶିର କମଳ କାଟିଦେବୁ ମୋତେ । ୪୮ ।
କବାଟସେନ ବୋଇଲା ହରି ସତ୍ୟ ମୋର ବାଣୀ
ଆପଣେ ଶ୍ରୀହସ୍ତେ ମୋତେ ଚକ୍ରେ ପକା ହାଣି । ୪୯ ।
ବସିଲା କବାଟସେନ ପଦ୍ମ ଯେ ଆସନେ
ହୃଦଗତେ ଚିନ୍ତା ସେ କରଇ ନାରାୟଣେ । ୫୦ ।
ଶ୍ରୀଭୁଜେ ଚକ୍ର ଧରି ଦେବ ନରହରି
କବାଟସେନକୁ ନିଜେ ଚକ୍ରରେ ପ୍ରହାରି । ୫୧ ।
ନନ୍ଦିଘୋଷ ରଥକୁ ତାର ଜୀବନ ଯାଏ ଚଳି
ପ୍ରଥମ ରଣ ବଳରେ ସନ୍ତୋଷ ଭଦ୍ରକାଳୀ । ୫୨ ।
ବେନି ଖଣ୍ଡ ହୋଇ ପଡ଼ିଲା ତାର ଶିର
ନାରାୟଣ ମୁଖ ଚୁମ୍ବଂ ସେ କହଇ ଉତ୍ତର । ୫୩ ।
ତ୍ରେତୟା ଯୁଗରେ ଶ୍ରୀରାମ ଅବତାରେ
ମାନବରୂପେ ସୂର୍ଯ୍ୟବଂଶେ ଜାତ ଦଶରଥ ଘରେ । ୫୪ ।
ବନବାସ କରୁଂ ସୀତା ହରଇ ରଘୁପତି
ରାବଣ ଚଣ୍ଡାଳ ତୋତେ ହୋଇଲା ଅପ୍ରୀତି । ୫୫ ।
ମୁହିଂଟି କିଷ୍କିନ୍ଧ୍ୟାରେ ବାଳୀ ନାମେ ରାଜା
ଭାଇ ସୁଗ୍ରୀବରକୁ ଘଉଡ଼ି ହରିଲି ତାର ଭାର୍ଯ୍ୟା । ୫୬ ।
ସୁଗ୍ରୀବର ତୁଲେ ତୁ ଯେ ମଇତ୍ର ବନ୍ଧାଇଲୁ
ତାହାର ଛଳେ ଦେବ ମତେ ତୁ ବଧିଲୁ । ୫୭ ।
ତ୍ରେତୟାରେ ବାଳୀ ମୁଂ ଦ୍ୱାପରେ କବାଟସେନ ରାଜା
ସେହି ଯୁଗେ ପୁତ୍ର ଅଙ୍ଗଦ ଏ ଯୁଗେ ଜାରାନାମେ ଆତ୍ମଜା । ୫୮ ।

ସେ କାଳେ ମହାବଳବନ୍ତ ମୁଂ ଅଟଇ ଯେ ବାଳୀ
ସୁଗ୍ରୀ ମୋହୋର ଭ୍ରାଥ ତୁ ତାହାର ପକ୍ଷରେ ମୋତେ
ନାଶିଲୁ ବନମାଳୀ । ୫୯ ।
ସେ ଯୁଗରେ ଜନ୍ମ ମୁଂ ନ ପାଇଲି ତୋହୋର ହାଥେ
ବିନା ଯୁଦ୍ଧେ ମାଇଲୁ ବାବଲ ଶରଘାତେ । ୬୦ ।
ଦ୍ୱାପରେ ଯେବେ ତୋତେ ମୁଂ ଭେଟିଲି ଦେବରାଜ
ପ୍ରସନ୍ନ ହୋଇ ଚନ୍ଦ ମାଇଲୁ ଦେବ ଆଜ । ୬୧ ।
ଆରେକ କଥାଯେ ମୁହିଂ ମାଗଇ ଦେବ ତୋତେ
ମୋହୋର ଶିରେ ପ୍ରାଣ ଥିବ ମହାଭାରଥ ମୁଦ୍ଧ ସରିବା ପରଯନ୍ତେ ।୬୨।
ଗୋବିନ୍ଦେ ବୋଇଲେ ମୋର ନନ୍ଦଘୋଷେ ରହ
ମୂର୍ତ୍ତିବନ୍ତ ହୋଇ ମୋହୋର ରଥ ଧ୍ୱଜେ ଥାଅ । ୬୩ ।
ଯୁଗ ଯୁଗାନ୍ତରେ ଥିବୁ ଯେ ମୋହୋର ରଥେ
ତୋହୋର ମୂର୍ତ୍ତିବନ୍ତ ନରେ ଦେଖିବେ ସମସ୍ତେ । ୬୪ ।
ଯେବଣହିଂ ଜନେ ଗୃହ୍ନିଂବେ ତୋର ମୁଖ
ଆପଦ କ୍ଳେଶ ହୋ ଖଣ୍ଡିବେ ସର୍ବଦୁଖ । ୬୫ ।
ନାରାୟଣ ବଚନେ କରାତେଶ୍ୱର ମୁଣ୍ଡ ବେଗି
ରାହୁ ତେଜ ଜାଣି ରଥ ଧ୍ୱଜରେ ମୁଣ୍ଡ ଲଗି । ୬୬ ।
ପିତାର ନିଧନ ଦେଖି ସେ ଚଳଇ ବୀର ଜାରା
ହର ଉଦ୍ୟାନ ବନେ କଷା କରି ରହିଲା ଶବରା । ୬୭ ।
ବଇବସୁତ ମନୁ ପଚ୍ଛରିଲେ ଅଗସ୍ତି ମହାପ୍ରଭୁ
ମୃତ୍ତୁ ପିଣ୍ଡ ଶିରକୁ ଜୀବ ଅଇଲାକ କାହୁଂ । ୬୮ ।
କାଟିଲାର ମୁଣ୍ଡ କେମନ୍ତେ କହିଲା ସେ କଥା
ବଡ ଦୁରାପଦ ଯେ କହିଲ ବ୍ରହ୍ମବେକ୍ତା । ୬୯ ।
ଅଗସ୍ତି ବୋଇଲେ ହେ ଶୁଣ ବଇବସୁତ ମନୁ ନୃପତି
ତ୍ରେତାୟା ଯୁଗରେ ବାଳୀକି ବଧିଲେ ରଘୁପତି । ୭୦ ।

---

୬୭।୨ ମନୋହର ନନ୍ଦନେ ରହିଲା ଶବର ମହାବୀର । (ଥ, ଝ, ନ, ଖ)

ଶ୍ରୀରାମ ବାଣ ଘାତେ ମର ସ୍ୱର୍ଗପୁର ଗଲ
ବାଲୀକ ଦେଖି ବ୍ରହ୍ମା ଅଭିଶାପ ଦିଲ । ୭୧ ।
ତୁ ହୋ ବାଲୀରାଜା ହରିଲୁ ଭାଇବଧୂ
ମର୍ତ୍ତ୍ୟପୁରେ ଅପକୀର୍ତ୍ତି ତୋତେ ଜନମୁଖେ ଅସାଧୁ । ୭୨ ।
ଯାଅ ଯା ବାଲୀ ତୁ କିରାତ ଘରେ ଯାତ ହୁଅ
ବନଚର ହୋଇଣ ତୁ ଅଛିବ ଘରେ ରୁହ । ୭୩ ।
ମହାଭାରଥ ଯୁଦ୍ଧ ହୋଇବ ଦ୍ୱାପର ଯୁଗେ
ତୁ ଯାଇ ମିଳିବୁ କୁରୁକ୍ଷେତ୍ର ବାମ ଭାଗେ । ୭୪ ।
ବେନ ରାଜାଙ୍କୁ ଯାଇଂ ତୁ ସମର ମାଗିବୁ
ବାସୁଦେବ ଚକ୍ରରେ ଯେ ନିଧନ ହୋଇବୁ । ୭୫ ।
ପିଣ୍ଡରୁ ଜୀବ ଯାଇଂଣ ମୁଣ୍ଡରେ ରହିବ
ରଥ ଧ୍ୱଜରେ ଶ୍ରୀହରି ନେଇ ଶିର ତୋ ଥାପିବ । ୭୬ ।
ଅଠର ଦିବସ ଯେ ହୋଇବ ଯୁଦ୍ଧ ଗୋଳ
ମହାଭାରଥ ଯୁଦ୍ଧ ତୁ ଦେଖିବୁ ସକଳ । ୭୭ ।
ତେଣୁଟି ବାଲୀ ବୀର ଯେ କିରାତସେନ ଶବର
ଶ୍ରୀହରି ଆଜ୍ଞାଂଯେ ସେ ରହିଲ ରଥର । ୭୮—୧୧୦୬ ।



## ଅର୍ଜୁନର ଯୁଦ୍ଧ କରିବାର ଅନିଚ୍ଛା ଓ ଶ୍ରୀକୃଷ୍ଣଙ୍କର ଉପଦେଶ

ଶୁଣ ହୋ ବଇବସୁତ ମନୁ ବଦପୂଜ୍ୟ ଅଗସ୍ତି
ମହାଭାରଥ ଯୁଦ୍ଧର ଯିସ୍ ଯିସ୍ ରୀତି । ୧ ।
ପୂର୍ବେଣ ପାଣ୍ଡବେ ଯେ ପଶ୍ଚିମେ କଉରବେ
ମହା ସନ୍ଥବ ସେନାପତି ହୋଇଲେ ଗାଙ୍ଗବେ । ୨ ।

---

୨।୧ "ପୂର୍ବେଣ ପାଣ୍ଡବେ ଯେ ପଶ୍ଚିମେ କଉରବେ"
ଏଠାରେ ସଂସ୍କୃତ ମହାଭାରଥରେ ଭିନ୍ନ ପାଠ ଅଛି ।
ପ୍ରାଙ୍ମୁଖାଃ ପାଣ୍ଡବା ଇତ୍ୟାଦି ପାଠ ଦ୍ରଷ୍ଟବ୍ୟ ।

ନିର୍ଦ୍ଧୂମ ଅଗ୍ନି ଜାଣି ଯେ ଭୀଷ୍ମଙ୍କର ମୂର୍ତ୍ତି
ଭୟେଣ ପାଣ୍ଡବ ବଳ ରହି ନୁଆରିଲେ କେତି । ୩ ।
ଅର୍ଜୁନ ମୁଖକୁ ଗୃହିଂ ବୋଲନ୍ତି ଶ୍ରୀବତ୍ସ
ଭୀଷ୍ମଙ୍କର ତୁଲେ ସମର କରସି ଶ୍ରବସ୍ତି । ୪ ।
ଯେହ୍ନେ ତୋହୋର ପ୍ରତଜ୍ଞ୍ୟାଂ ବଳବନ୍ତ ପଣ
ଯେଣେ ସମ୍ପଦ ପ୍ରାପତ ତୋତେ ହୋଇବ ଆଜ ରଣ । ୫ ।
ବୋଲଇ ଅର୍ଜୁନ ଯେ କରପଦ୍ମ ଯୋଡ଼ି
କଉବେବେ ମୋତେ ଶସ୍ତ୍ର ବାନ୍ଧନ୍ତୁ ଆଗ ବଡ଼ି । ୬ ।
ଅଛନ୍ତି ଉଭୟେ ଯେ ସମସ୍ତ ସେନାପତି
କେ ଆଗେ ଧର୍ମ ଲଂଘି ଶସ୍ତ୍ର ବାନ୍ଧିବ ଦେଖ ହୋ ଶିଶୁପତି । ୭ ।
କଉବେବେ ଆଗ ବାନ୍ଧନ୍ତୁ କନା ଲଂଘି ଧର୍ମ
ପଛେ ନାରାଜ ମୁଂ ବାନ୍ଧିବ ଶ୍ରୀପୁରୁଷଉତ୍ତମ । ୮ ।
ଗୋବିନ୍ଦେ ବୋଇଲେ ହୋ ଧର୍ମ ପାଳୁ କାହିଂ
ଅଧର୍ମ ଆଚରଣ କଲେକ କୁରୁସାଇଂ । ୯ ।
ସୋଦରେ ଭାଗ ସେ ଯେ ନ ଦେଲା କୁରୁପତି
ଯେ ମହାଭାରଥିକୁ ତୁମ୍ଭେ ସିନା ରଥୀ । ୧୦ ।
ସମସ୍ତ ରାଜ୍ୟଭାର ସେ ମାଣ୍ଡଣ ବସିଲା
କଞ୍ଚିତ କରି ମାଗିଲେ ପଡ଼ା ପାଞ୍ଚଖଣ୍ଡି ଯେ ନ ଦେଲା । ୧୧ ।
ସମସ୍ତ ଗ୍ରାସିଲା ସେ ଗାନ୍ଧାରୀର ବତ୍ସ
ତୁ କେସନେ ଧର୍ମ ହୋ ପାଳୁଛୁ ଶ୍ରବସ୍ତ । ୧୨ ।
ଗୋବିନ୍ଦେ ବୋଇଲେ ତୁମ୍ଭକଇଂ ଭାଗ ନ ଦେଲା କୁରୁପତି
ଯେ ମହାଭାରଥେ ତୁମ୍ଭେ ଅଟ ଦାୟଅର୍ଥୀ । ୧୩ ।
ଯେମନ୍ତେ ରାଜ୍ୟଭାର ବସିଲେ ସର୍ବ ଇଚ୍ଛା
ଭାଗ ନ ପାଇ ତୁମ୍ଭେ ସେ ସମରକୁ କରିବା ମନବାଞ୍ଛା । ୧୪ ।
ତୁ ହୋ ଅର୍ଜୁନ ଯେବେ ଶସ୍ତ୍ର ବାନ୍ଧ ଆଗେ
ଜାଳାବଳୀ ଶର ଭୀଷ୍ମଙ୍କୁ ମାର ବେଗେ । ୧୫ ।
ଅର୍ଜୁନ ବୋଇଲେ ଶୁଣିମା ଦଇତାରି
ବଡ଼ାଇ ଦୁରାପଦ ମୋତେ ହୋଇଲା ଦେବ ହରି । ୧୬ ।

ନାରାଜ ପୂରେଇ ବିନ୍ଧିବି ମୁଁ କାହାକଇଂ
ପ୍ରାଣର ସାଖୀ ମୋର ଅଟନ୍ତି ସର୍ବେ ସ୍ନେହୀ । ୧୭ ।
ପ୍ରଥମେ ଭୀଷ୍ମ ଯେ ଅଛନ୍ତି ଶସ୍ତ୍ର ଧରି
ବୃଦ୍ଧ ପିତାମହ ସେ ଯେ ଅଟନ୍ତି ଆମ୍ଭରି । ୧୮ ।
ତାହାଂକର ପାରୁଶେ ଦେଖ ଭରଦ୍ୱାଦଶଂକର ସୁତ
ବାଳକାଳୁଂ ସ୍ନେହ କରି ସେ ପାଳିଲେ ଆମ୍ଭନ୍ତ । ୧୯ ।
ପୁତ୍ର ଅଶ୍ୱତ୍ଥାମାରୁ ମୋତେ ଅଧିକ ଦେଖନ୍ତି ଦ୍ରୋଣ ଗୁରୁ
କ୍ଷଣେହେଂ ଭୂମିରେ ମୋତେ ନ ବସାନ୍ତି କୋଳରୁ । ୨୦ ।
ବିଶେଷେ ପ୍ରଶୁରାମ ବିଦ୍ୟା ଶିଖାଇଲେ ମତେ
ମୁଂ କେମନ୍ତେ ଶହସ୍ତ୍ର ହୋ ବିନ୍ଧିବି ତାହାଂକୁ । ୨୧ ।
ପୁଣି ତାହାଂକ ସନ୍ନିଧେ ଅଛନ୍ତି କୃପବ୍ରହ୍ମା
ବେଦ ମନ୍ତ୍ରେ ନିର୍ଜିତ ସେ ଦ୍ୱିଜବର ମହାତମା । ୨୨ ।
ଶ୍ରୀବତ୍ସ ଲକ୍ଷଣ ବିରାଜଇ ତାହାଂକର ହୃଦେ
ତାଂକୁ ଶର କେହ୍ନେ ବିନ୍ଧିବି ମୁହିଂ ହାଦେ । ୨୩ ।
ମହାଭାରଥ ଯୁଦ୍ଧେ ସେ ଅଟନ୍ତି ମହାବ୍ରହ୍ମା
ତାହାଂକର ଭଗ୍ନିଜା ପାଶେ ଅଛନ୍ତି ଅଶ୍ୱତ୍ଥମା । ୨୪ ।
ଅଭେଦ ସୋଦର ସେ ମୋ ପ୍ରାଣର ପଞ୍ଚଭୂତ
ତାହାନ୍ତ କେମନ୍ତେ ନାରାଜ ବିନ୍ଧିବି ଜଗନ୍ନାଥ । ୨୫ ।
ତାହାଂକ ସନ୍ନିଧେ ଦେଖ ରାଜ୍ୟଗୁରୁ ଶଇଲ୍ୟ
ଆମ୍ଭର ମାତୃକୁଳ ହୋଇ ନ କଲେ କିଛି ଭଲ । ୨୬ ।
ମାଦ୍ରୀର ସୋଦର ସେ ପଣ୍ଡୁରାଜାର ଯେ ଶଳା
ନକୁଳ ସହଦେବଂକର ସେ ଅଟନ୍ତି ମଉଳା । ୨୭ ।
ବହୁତ ସ୍ନେହ ସେ କରନ୍ତି ଦେବ ମୋତେ
ମୁହିଂ ତାହାନ୍ତ ନାରାଜ ବିନ୍ଧିବି କେମନ୍ତେ । ୨୮ ।

---

୨୫।୨ କେମନ୍ତେ ନାରାଜ ପେଶିବି ତାହାନ୍ତ । (ଥ, ନ, ଞ)
୨୭।୧ ମାଦ୍ରୀର ସୋଦର ସେ ଅଶ୍ୱିନୀକୁମାରଂକ ଶଳା । (ଅଧିକାଂଶ ପାଠ)
୨୪।୨ ଭଗ୍ନିଜା—ଭଣଜା ।

ଅର୍ଜୁନର ବଚନ ଦେଖି ବଦସ୍ୟନ୍ତ-ନାରାୟଣ
ମାନଗୋବିନ୍ଦର ମଇଳ ସେ ମହାବଳୀ କର୍ଣ୍ଣ । ୨୯ ।
ସେହାକଇଂ ନାରାଜ ବନ୍ଧୁକନା ପାର୍ଥ
ସେ କର୍ଣ୍ଣର ତହୁଂ ମୂଳୁଂ ଜାତ ହୋଇଲା ଅନର୍ଥ । ୩୦ ।
ଅର୍ଜୁନ ବୋଇଲା ତୁ ଶୁଣ ଦେବ ହରି
ତୁମ୍ଭେ ତ ଜାଣ କୋଇନ୍ତାଂକ ଗର୍ଭରୁ କର୍ଣ୍ଣ ଅବତରି । ୩୧ ।
ଜ୍ୟେଷ୍ଠଭାଇ ମୋର ଅଟଇ ପିତାର ସମାନେ
ତାହାନ୍ତ ନାରାଜ ମୁଂ ବନ୍ଧିବି କେସନେ । ୩୨ ।
ଅର୍ଥ ପାଇଣ ଯେ ସହୋଦ୍ରେ କରେ ତେଜ୍ୟା
ରଉରବ ନର୍କେ ତାକୁ ଠାବ ଦଅଇ ଯମରାଜା । ୩୩ ।
ଗୋବିନ୍ଦେ ବୋଇଲେ ଶୁଣ ବୀରବର ପାର୍ଥ
ଶକୁନିର ତୁଲେ ମୂଳ ସେ ହୋଇଲା ଅନର୍ଥ । ୩୪ ।
ଉହୋକୁଳକୁ ବିବାଦ କରାଇଲା ଶକୁନି
ପ୍ରଥମ ଯୁଦ୍ଧେ ସେହାକୁ ମାରସି ଫାଲଗୁନି । ୩୫ ।
ସେକା ଶକୁନି ସେ ସମରେ ନାଶଗଲେ
କୁରୁପାଣ୍ଡବ ଅଭେଦ ହୋଇଥିବ ଭଲେ । ୩୬ ।
ଅର୍ଜୁନ ବୋଇଲେ ଦେବ ତୁ ସବୁକଥା ଜାଣୁଂ
ସପୂଳ ଜନ ଚନ୍ତାମଣି ସକଳ ପରମାଣୁଂ । ୩୭ ।
ଶକୁନି କୂଟବୁଦ୍ଧି ଦେବ କହୁଥାଇ ଯେତେ
ମାନଗୋବିନ୍ଦକୁ ନାଶ କରିବେ ସେ ଆମ୍ଭର ହିତ ଅର୍ଥେ । ୩୮ ।
ଦୁର୍ଯୋଧନ ନାଶକଲା ତାହାର ବଂଶ ପଥର ଘରେ ଭରି
ସେକାମାନ ଶକୁନି ତହୁଂ ଅଇଲା ଉବୁରି । ୩୯ ।

---

୩୨ { ଆମ୍ଭର ଜ୍ୟେଷ୍ଠଭ୍ରାତ ସେ ଅଟନ୍ତ କର୍ଣ୍ଣବୀରସେ ।
କୁରୁବଳ ଆବୋରି ଆମ୍ଭନ୍ତ ଗ୍ରୁଡିଲେ ସଦୟେ । (ଅ, ଧ)

୩୩ { ଅନର୍ଥ ନିମନ୍ତେ ଯେ ସହୋଦର କରେ ତେଜ୍ୟା ।
ରଉରୌବେ ପଡନ୍ତି ସେ ଶୁଣ ହୋ ଦେବରାଜା । (ଥ, ଛ, ଓ)

୩୪।୨ ଆଦ୍ୟରୁ ସେହା ଯୋଗୁଂ ହୋଇଲା ଅନର୍ଥ । (ଥ, ଓ, ଧ)

ଅର୍ଜୁନ ବୋଇଲେ ଦୁର୍ଯୋଧନର ବଂଶ ନାଶ କରିବା ନିମନ୍ତେ
ଓଦ୍ଦୋକୁଳ ଅଇଲେତା ଯେ କଲ୍ପିନ୍ତି ଯୁଗତେ । ୪୦ ।
ଆନରେ ବଧ ସେ ନୋହନ୍ତି କଉରବେ
ଭୂତ ଭବିଷ୍ୟ ଗମ୍ୟାଂତା ସେ ଅଟଇ ଜାଣ ବାସୁଦେବେ । ୪୧ ।
ଶକୁନିକି ଯେବେ ନ ମାରୁ ସର୍ବହାରୀ
ମାନଗୋବିନ୍ଦ ତୁମ୍ଭର ସମ୍ପଦ ହରୁଅଛି । ୪୨ ।
ଆହୋ ଆକାଶଗାମୀ କରି ବାହିବ କି ତୋର ରଥ
ଭେଟାଇବ ମାନଗୋବିନ୍ଦକୁ ସମର କର ବୀର ପାଥ । ୪୩ ।
ସମ୍ମୁରେଣ ରହିଅଛି ଯେନଣ ଶତେଭ୍ରାଥ
ତାହାନ୍ତ ସମରେ ଜିଣି ସମ୍ପଦ ଭୋଗକର ପାଥ । ୪୪ ।
ଅର୍ଜୁନ ବୋଇଲା ଦେବ ପଣ୍ଡୁ ଧୃତରାଷ୍ଟ୍ର
ଯେକ ପିତାରୁ ଜାତ ସେ ଅଭିନ୍ନ କନିଷ୍ଟ ଶ୍ରେଷ୍ଟ । ୪୫ ।
ତାହାଂକ ପୁତ୍ର ଆମ୍ଭେ କୁରୁ ପାଣ୍ଡବ ବେନି
କାହିଂର ନିମନ୍ତେ ଶ୍ରୀ ଦେବ ଆମ୍ଭେ ହୋଇବୁ ଅନ୍ୟୋଅନ୍ୟ । ୪୬ ।
ଅର୍ଜୁନ ବୋଇଲା ମୁଂ ଯେଉଣ ନାରାଚ ଧେନିଅଛି ହାଥେ
ବନ୍ଧିଲେ ଗ୍ରୁଣ୍ଡବ କେ ଯେ ତିନି ଜଗତେ । ୪୭ ।
ହରି ନାରାଚ ପୂରେଇ ମୁଂ ଗୃହ୍ନିଂବ ଯାହାର ମୁଖ
ଅବାନ୍ଧିବ ହୋଇ ଅବା କେ ମୋହୋର ଅଗ୍ରେ ଦେଖ । ୪୮ ।
କିସ ହେବ ମୋହୋର ଅର୍ଥ ସହୋଦ୍ରାନ୍ତ ନାଶ କରାଇ
ଯେ ରାଜ୍ୟଭାରେ ମୋର କାର୍ଯ୍ୟ ନ ଯୋଗାଇ । ୪୯ ।
ଯେହାନ୍ତ ମାରିବ ଯେ ରାଜ୍ୟର ନିମନ୍ତେ
କେଉଣ ସମ୍ପଦ ଯେ ପ୍ରାପତ ହୋଇବାକ ମୋତେ । ୫୦ ।
ନୟନୁଂ ଅଶ୍ରୁଜଳ ବହଇ ଅର୍ଜୁନର
ଜଗନ୍ନାଥଂକ ମୁଖ ଗୃହିଂ ବୋଲଇ ଉତ୍ତର । ୫୧ ।
ତୁ ଦେବ ଜଗନ୍ନାଥ ବିଗ୍ରହ କର ମନେ
ବଡାଇ ସୁସ୍ଥେ ଦେବ ବୁଲୁଥିଲୁଂ ବନେ । ୫୨ ।

---

୪୭ { ଯେବଣ ଧନୁଶର ମୁଂ ଧଉଅଛୁ କରେ
{ ବନ୍ଧିଲେ ମେଣ୍ଟିବ କେ ଯେ ତିନି ଭୁବନରେ । (ଥ, ଞ, ନ, ଧ)

ଅନେକ ତୀର୍ଥ କଲୁ ପିତୃକାର୍ଯ୍ୟ ଅର୍ଥେ
ନର୍ମ୍ମଦେ ଥିଲୁ ଋଷିମାନଂକ ସଙ୍ଗତେ । ୫୩ ।
ଅନେକ ଦଣ୍ଡମାର ଉଣ୍ଣାସିଲୁ ମହାଭାର
ପ୍ରସନ୍ନେ ପରମ ମନ୍ତ୍ରଷଧି କହିଲେ ଅଙ୍ଗିର । ୫୪ ।
କନ୍ଦମୂଳ ବନ ଡୋହୋଲ ଦାରିଷଫଳ ଭଷି
ଥିଲୁଂ ନଶନ୍ତେ ବନେ ଦେବ ନ ଜାଣୁଂ ଯେ ଆମ୍ଭେ କଷ୍ଟ । ୫୫ ।
ଅଳ୍ପ ଅଳ୍ପ କରଣ ଯେ ମାଗୁଥିଲୁ ଭିକ୍ଷା
ନ ଜାଣୁଂ ଦୁଖ ସୁଖ ବାଞ୍ଛ ଯେ ଯାହାର ଇଚ୍ଛା । ୫୬ ।
ବାହୁଡଣ ଯିବୁ ହର ନାନା ତୀର୍ଥ ବନ୍ଧ
ଯେତେକ ସନ୍ଦୋହେ କର୍ମେ ହୋଇବୁ ଦ୍ୱନ୍ଦବାଧା । ୫୭ ।
ନୋହୁ ନା ରାଜ୍ୟଭାର ନୋହୁ ଯେ ସାଂଗ୍ରାମ
ଯେତେ ଦ୍ୱନ୍ଦ ମୋତେ ନ କରଅ ପୁରୁଷଂକ ଉତ୍ତମ । ୫୮ ।
ଅର୍ଜୁନର ମୁଖରୁଂ ଯେସନେକ ବାକ୍ୟ ଶୁଣି
ଧର୍ମୀଭୂତ ଜାଣି ରହିଲେ ଦେବ ଚକ୍ରପାଣି । ୫୯ ।
ନରୁଡାନ୍ତ ବେଲକୁତ ଯେ ସୋଦରମା ପଣ ଘେନ
ମାୟା ମୋହେ ବଶ୍ୟ ଗଲ୍ଲକ ଖାର ଫାଲଗୁନ । ୬୦ ।
ଯେ ମୋହ ଗୁଡ କର ଯେ ସମରେ ପଶଇ କେଉଣ ବାଗେ
କୃଷ୍ଣେଣ ମନାଇବା ବୋଲି ମନେ ବିଚାରନ୍ତ ଶ୍ରୀରଙ୍ଗେ । ୬୧ ।
ନେଉଟିଣ ରଥ ଯେ ବାହାନ୍ତ ଦେବ ହର
ଯୁଧିଷ୍ଠିରଂକ ଗୁମୁରେ ଯାଇଂ ପ୍ରଣପତ୍ୟ କର । ୬୨ ।
ଯୁଧିଷ୍ଠିର ପଚାରନ୍ତ ହର ସମର ନ କର ହଟି ଆଇଲତ ବେଗେ
ଅର୍ଜୁନ ଚରିତମାନ କହିଲେ ଦେବ ଯୁଧିଷ୍ଠିରଂର ଆଗେ । ୬୩ ।
ସ୍ୱାମୀ ତୋହୋର ହୃଦରେ ବିଚାରୁ କେମନ୍ତେ
ସମରକଇଂ ବସରିଲା ଧାଇ ତୋର ପାର୍ଥେ । ୬୪ ।
ଯୁଧିଷ୍ଠିର ଦେବେ ବୋଇଲେ ଶୁଣିମା ବାସୁଦେବ
ବଡାଇ ଦୁରପଦ କଥାତ ବହୁତ ସମର ଅସମ୍ଭବ । ୬୫ ।

---

୬୦।୧ ନରୁଡାନ୍ତ ଦେଲକୁ ସୋଦରନ୍ତ ଚକ୍ଷି । (ଚ, ଜ, ଘ)

ଗତ କଥାମାନ ପାସୋର ଯେବେ ହୋଇଲୁ ନିରାଶ
ବଡ ଦୁର୍ଲଭ ହୋଇବନା ସୋଦରଂକ ବିନାଶ । ୬୬ ।
ଭୀମସେନ ବୋଇଲା ଶୁଣିମା ଶ୍ରୀପତି
ସୋଦରମା ପଣ ଦୁର୍ଯୋଧନ ଆମ୍ଭନ୍ତ ସଦା ଶତ୍ରୁ । ୬୭ ।
ବାଳକାଳେ ନେଲେ ମୋତେ ଖେଳର ନିମିତ୍ତକୁ
ବେଷ୍ଟେଣ ଶ୍ରମ ଦେବ କରାଇଲେ ମୁଁକୁ । ୬୮ ।
ଖେଳର ଶ୍ରମ ମୋତେ ହୋଇଥିଲା ବଡ ବାଧା
ମହାଶ୍ରମ ପାଇଲି ଲାଗିଲା ବଡ କ୍ଷୁଧା । ୬୯ ।
କପଟେ ବିଷଲଡୁ ମୋତେ ଖୁଆଇଲେ ସେହି
ବଡ ସାନ କରି ବେନି ଠାବେ ଛନ୍ତି ଥୋଇ । ୭୦ ।
କ୍ଷୁଧାର ଆରତେ ଆବୋରିଲି ବଡ କୁଟେ
ଆହାର କଲି ମୁଁ କ୍ଷୁଧାର ଅନ୍ତ ଗାଟେ । ୭୧ ।
କାଳେ ଘାରିଲା ସେ ବିଷଲଡୁ ମାନ
ଭୋଜନ ଅନ୍ତେ ମୁଁ ହୋଇଲି ଅଚେତନ । ୭୨ ।
ଅସାଷ୍ଟମ ଦେଖି ମେଲିଲେ ମୋତେ ନେଇ ଜଳେ
ନାଗେଣୀମାନେ ରକ୍ଷା କଲେ ମୋର ପୁଣ୍ୟ ବଳେ । ୭୩ ।
ପୁଣିହିଂ ଭିଆଇଲେ. ଜତୁଶାଳ ପୁର
ଯତନେ ରୁହାଇଲେ ଆମ୍ଭନ୍ତ ବାରୁଣାବନ୍ତର । ୭୪ ।
ନିଦ୍ରାରେ ଅଚେତନ ହୋଇଥିଲି ମୁହିଂ
ପୁରଂଜନ ପଣ୍ଡା ହାଥେ ଲଗାଇ ଦିଲେ ଜୂଇ । ୭୫ ।
ତହିଂ ଉତ୍ତରିଲୁ ହରି ତୋହୋର ପୁଣ୍ୟବଳେ
ଆରେକ ଗୁଣ ତାର କହଇ ମୁଁ ହେଲେ । ୭୬ ।
ଯେତେବେଳେ ପାଣ୍ଡବାସୁର ଦୁର୍ଯୋଧନକଇଂ ନେଲା
ଯେହି ଯୁଧିଷ୍ଠିରଂକ ଅଙ୍ଗରେ ଦୟା ଯେ ବସିଲା । ୭୭ ।
ଦାନବ ମାରି ତାକୁ ଆଣିଲୁ ଛଡାଇ
ଆମ୍ଭର ଉପକାରୀ ଅଟଇ କୁରୁସାଇଂ । ୭୮ ।
କପଟ ପଶା ଖେଳି ଜାଣିଛନ୍ତି ସମସ୍ତେ
ଦ୍ରୋପଦୀଂକ ଅପମାନ ହିଂଘାସମାନ କଲେ ଯେତେ । ୭୯ ।

କାହାର ବେଳେ ସହି ହୁଅଇ ଦେହ ବହି
ଆମ୍ଭର ଆଗେ ଦ୍ରୌପଦୀଙ୍କ ଉଲଗ୍ନ କଲେ ନେଇ । ୮୦ ।
ଆମ୍ଭନ୍ତ ବସାଇଲେ ଆସ୍ଥାନର ତଳେ
ଏମାନ ସମସ୍ତ ତ ଦେଖିଛ ବେନି ଡୋଳେ । ୮୧ ।
ପଶାରେ ଖେଳିଲେ ସେ ରାଜ୍ୟ ସିଂହାସନ
ଦ୍ୱାଦଶ ବରଷ ଆମ୍ଭେ ଗଲୁଂ ଘୋର ବନ । ୮୨ ।
ବନକୁ ଗଲାବେଳେ ପାମର ଦୁଃଶାସନ
ସମସ୍ତ ଛଡାଇନେଲା ଆମ୍ଭ ଆପେ ଅଳଂକାରମାନ । ୮୩ ।
ଆମ୍ଭେ ନିରାଶ ହୋଇ ପଶିଲୁ ଘୋର ବନ
ସମ୍ପଦ ଦେଖାଇ ଗଲା କାମ୍ୟେକ ନାମେ ବନ । ୮୪ ।
ଚିତ୍ରାଂଗେ ଯେବେ ପୁଣ କଷଣ ପଡ଼ିଲା
ଅର୍ଜୁନର ପ୍ରସାଦେ ଜୀବନ ପାଇଲା । ୮୫ ।
ହରି କହନ୍ତେ ନ ସରଇ ସେ ବନର ବେବସ୍ଥା
କାହା ଆଗରେ କହିବା ସେ କଷଣ ଦଇବ ଧାତା । ୮୬ ।
କାନ୍ଧରେ ଚର୍ମ ଭାର ହରିଗୋବିନ୍ଦର ମୁନି
କରେଣ ତମ୍ବା ପାତ୍ର, ପୁସ୍ତକ, ଭିକ୍ଷା ପ୍ରାର୍ଥନା ଯେ ନ ଜାଣି । ୮୭ ।
ଅଖାଇଜ ଖାଇଜ କରି ଉପବାସେ ବଞ୍ଚିଲୁଂ ଦିନ
ବିରାଟ ରାଜ୍ୟେ ନପୁଂସକ ହୋଇଥିଲା ଯେ ଅର୍ଜୁନ । ୮୮ ।
ଛତ୍ରୀ ବୃତ୍ତି ଛାଡ଼ି ହୀନ ବୃତ୍ତି ହୋଇଲୁଂ ବିବାଦେ
ସମସ୍ତ ବୁଡ଼ାଇଲୁ ଏକା କଣ୍ଠଗ୍ରୀବଂକ ପରସାଦେ । ୮୯ ।
ଆଦ୍ୟହୁଂ ଯୁଦ୍ଧେ ନିସତ ଅଟେ ସବ୍ୟସାଚୀ
ଶ୍ରୀ ସମ୍ପଦ ପରକୁ ଦେଇ ବନ୍ଧୁପଣ ରଖୁଅଛୁ । ୯୦ ।
ମୋତେହେଂ ଆଜ୍ଞାଂ କ ଦେବୁ ତୁ ଶ୍ରୀହରି
କରିବି ସମର ଯେ ଭୀଷ୍ମ ଦ୍ରୋଣଂକଇଂ ମାରି । ୯୧ ।
ଗୋବିନ୍ଦ ବୋଇଲେ ତୁ ଶୁଣ ବୃକୋଦର
ପ୍ରଥମ ଯୁଦ୍ଧ ହୋଉ ଦୁଃଶାସନର ଉପର । ୯୨ ।

---

୯୧।୨ କରିବି ଗଦା ଗୋଳ ଭୀଷ୍ମ ଦ୍ରୋଣ ଆଦି କରି ମାରି । ( ୫, କ)

ଆହୋ ନାରାୟଣଙ୍କ ବଚନେ ସେ କାଳଦଣ୍ଡ ପାଣି
ଅଧରେ ଦନ୍ତ ଚାପି ଉଠିଲା ରାଗେଣ ଶିର ଧୁଣି । ୯୩ ।
ଛମ୍ଭା ଚନ୍ଦ୍ର ପ୍ରାୟେ ସେ ବୁଲାଇ ବେନି ଡୋଳା
ଭୀଷ୍ମ ରୂପ ଦେଖାଇଲା ଗଗନ ମଣ୍ଡଳା । ୯୪ ।
ବ୍ରହ୍ମାଣ୍ଡେ ଘୋଟି ଉତ୍ସର୍ଗ ତାହାର କାୟା ଆକାଶେ ଲାଗିଲା ମୂର୍ଦ୍ଧନା
କାଳସମ ସାରଥେ ଜାଣି ଦଶଇ ଭୀମସେନ ଜେନା । ୯୫ ।
ନନ୍ଦଘୋଷ ରଥ ପଛେଣ ଯେ କାଳଦଣ୍ଡଧାରୀ
ଦେଖିଣ କଉରବେ ରଥନ୍ତ ଅପସରି । ୯୬ ।
ରଥ ଗଜ ଅଶ୍ୱ ଭାଙ୍ଗି ପଳାନ୍ତି ସଇନ ଲେଉଟି
ରଥୀ ସାରଥି ଯୋଦ୍ଧାମାନେ ବୁଜିଲେ ସର୍ବେ ଦୃଷ୍ଟି । ୯୭ ।
ଯୁଧିଷ୍ଠିର ଦେବ ବୋଇଲେ ରେ ରହ ରହ ଭୀମା
ଧୃତରାଷ୍ଟ୍ରଙ୍କୁ ଦେଖନ୍ତେ ତାର ଦୋଷ କରିବା ଯେ କ୍ଷମା । ୯୮ ।
ବଦନ୍ତି ସୁବାକ୍ୟେ ସେ ଯୁଧିଷ୍ଠିର ଦେବ ଧର୍ମେ
ସଂସାରକୁ ସାକ୍ଷୀ କରି ପଶିବା ସଂଗ୍ରାମେ । ୯୯ ।
ବନସ୍ତେ ବୁଲି ବୁଲି ଅନେକ କଷ୍ଟ ହାଦେ ସହିଲି
ଧୃତରାଷ୍ଟ୍ରଙ୍କଇଂ ଦେଖନ୍ତେ ସମସ୍ତ କଥା ପାସୋରିଲି । ୧୦୦ ।
ବାରୁଣାବନ୍ତେ ଆସି ହୋଇଲୁ ପ୍ରଥମେ
ମଧ୍ୟସ୍ଥ ହୋଇ ଦୂତପଣେ ଗଲେ ଦେବ ମୁନି ଧଉମ୍ୟେ । ୧୦୧ ।
ତାହାଙ୍କ ବଚନ ସେ କଲ ଉପହାସେ
ଧଉମ୍ୟ ପୁରୋହିତଙ୍କୁ ତହିଂ କଲ ଅନେକ ଯେ ରୋଷେ । ୧୦୨ ।
ଦୁଜେଣ ମଧ୍ୟ ପାନ୍ଦ ଯେ ହୋଇଲେ ବଦୁରେ
ସେ ଲଜ୍ଜା ପାଇଲେ ଯେ କଉରବ ସଭାରେ । ୧୦୩ ।
ତିଜେଣ ମଧ୍ୟସ୍ଥ ତୁ ଆପଣେ ଜନାର୍ଦ୍ଦନ
ଜଗତଭୂତ ନାଥ ପାଇଲୁ ଅପମାନ । ୧୦୪ ।
ତୋର ଅପମାନେ ହରି ସମର କଲଇଂ ଇଚ୍ଛା
ମାରିବ କଉରବ ବଳ ଆଜ କେ କରୁ ତାଙ୍କୁ ରକ୍ଷା । ୧୦୫ ।

---

୯୪।୨ ଭୀଷ୍ମ ରୂପଂ ପ୍ରକାଶିଲା ତେଜ ଅନର୍ଗଳା । (ଛ, ଖ, ନ)

ସ୍ୱାମୀ ଲକ୍ଷେକ ନୃପତ୍ତି ବଜେ ଓହୋବଲେ
ସବୁନ୍ତହ୍ନଂ ବୁଝି ମୁଂ ଆସିବ ଯେତେବେଳେ । ୧୦୬ ।

ମାନଗୋବନ୍ଦ ସୋଦର ନୋହୋଇ କ ଆମ୍ଭର ଯୁଗତେ
ଖିଷ୍ମ ଦ୍ରୋଣ କର୍ଣ୍ଣ ଭୂରସବା ଆବର ସୋମଦତ୍ତେ । ୧୦୭ ।

ବଜେ କରଛନ୍ତି ଗୃରଦ୍ୱଗର ସ୍ୱପ୍ନେ
ମଧ୍ୟରେ ଦ୍ରିଯୋଧନ ଯେ ଆରୋହି ହାର୍ଥୀପ୍ୟେ । ୧୦୮ ।

ମୁହ୍ନଂ ଆପଣେ ଯିବ ମାନଗୋବନ୍ଦ ତହ୍ନଂକ
ପଡ଼ା ଖାଞ୍ଜଖଣ୍ଡି ତାଂକୁ ମାଗଇଂ କନା ଦେଖି । ୧୦୯ ।

ଅଭ୍ୟର୍ଥୀଲ୍ଲ ପ୍ରାପ୍ୟେ କର ମାଗିବଇଂ ପଞ୍ଚ ଗ୍ରାମ
ଗ୍ରାମ ନ ଦ୍ୱଲେ ଦରପ୍ୟେ ହୋଇବ ସଂଗ୍ରାମ । ୧୧୦ ।

ଗୋବନ୍ଦ ବୋଇଲେ ସ୍ୱାମୀ ନୋହୋଇଟି ଯେମନ୍ତ
ନ ପୂଣ ମାନଗୋବନ୍ଦ ପ୍ରମାଦ ଚନ୍ତଇ ଭୁମ୍ଭନ୍ତ । ୧୧୧ ।

ଖିମ ବୋଇଲ ଦ୍ରିଯୋଧନ ପାଶେ ଗଲେ
ଚଳଣ ଗଦାବର ପିଟିବ ଅନ୍ତରାଳେ । ୧୧୨ ।

ଖିମ ଅର୍ଜୁନ ନକୁଳ ସହଦେବ ବୋଲନ୍ତ ଯୋଡ ବେନ ପାଣି ।
ପ୍ରମାଦ ପଡ଼ିବଟି ନ ଯାଅ ନୃପମଣି । ୧୧୩ ।

ବରାଟ ଦ୍ରୁପଦ ଧୃଷ୍ଟ ଯେ ଦ୍ୟୁମନ
କାହାର ବୋଲ ନ କଲେ ଧର୍ମଂକ ନନ୍ଦନ । ୧୧୪ ।

ସମସ୍ତଂକ ବୋଲ ଯୁଝେଷ୍ଠି ଦେବ ମେଣ୍ଟି
ଆପଣେ ବଜେ କଲେ ଧୀରପ୍ୟେ ଯୁଝେଷ୍ଠି । ୧୧୫ ।

ଶେତ ହାଥୀ ରଥ ଅଶ୍ୱ ସକଳ କର ତେଜ୍ୟା
ଶ୍ରୀଭୁଜେ ରତ୍ନମାଳା ଘେନ ପାଦେ ଗମନ୍ତ ଧର୍ମରାଜା । ୧୧୬-୧୨୨ ।



# କୌରବ ସୈନ୍ୟମଧ୍ୟକୁ ଯୁଧିଷ୍ଠିର ଦେବଙ୍କର ଯୁଦ୍ଧ ବରଣ ପାଇଁ ଗମନ

ପାଣ୍ଡବ ବଳ ତେଜ ପଶ୍ଚିମ ମୂରତ
ଧୀରେ ଧୀରେ ଚଳନ୍ତି ଯୁଧିଷ୍ଠିର ମହାପତି । ୧ ।
ଯୁଧିଷ୍ଠିର ଦେବଂକର ଗବନ ହାଟେ ଦେଖି
ଭୀଷ୍ମ ଦ୍ରୋଣ ଭୂରିସର୍ବାଦ୍ୟେ ରଥନ୍ତ ଉପେକ୍ଷି । ୨ ।
ଘୁଞ୍ଚିଲେ ଛତ୍ରୀଭୃତ୍ତ ଶସ୍ତ୍ର କଲେ ତେଜ୍ୟା
ଦେଖିଣ ହରସ ଯେ ହୋଇଲା କୁରୁରାଜା । ୩ ।
ଭୀଷ୍ମଂକର ସମ୍ମୁଖରେ ପୁଚ୍ଛଇ ଶକୁନି
କିମର୍ଥେ ନିଃଶସ୍ତ୍ର ହୋଇଲେ ସେନାପତି ତିନି । ୪ ।
ଶକୁନି ଅଗ୍ରତେ କହନ୍ତି ଭୂରିସର୍ବା
କାହାର ଭୁଲେ ରହି ଆମ୍ଭେ ସାଂଗ୍ରାମ କରିବା । ୫ ।
ଆରମ୍ଭଇ ହୋଇଲା ନୋହିଲା କାର୍ଯ୍ୟ କିଛି
ସନ୍ଧି କରିବା ନିମନ୍ତେ ଯୁଧିଷ୍ଠିର ଆସୁଅଛି । ୬ ।
ସକଳ ରାଜାମାନେ ସୁମରନ୍ତି କରତାର
ଭୋ ଧର୍ମଦେବତା ସ୍ୱେ କଷ୍ଟଂ କର ପାର । ୭ ।
ସମସ୍ତ ଚିନ୍ତାମଣି ପ୍ରସନ୍ନ ଶୁଦ୍ଧବେଳା
ବଡବା ଅନଳ ଭିତରେ ସ୍ୱାମୀ ଯାହାର ନାମ ଭେଲା । ୮ ।
ସ୍ୱାମୀ ସଙ୍ଗତ ଅସଙ୍ଗତକୁ ତୁମ୍ଭ ସେ କରତା
ନିରାକୁଳ ପୁରୁଷ ହୋଇ ସକଳ ଜନ ଚିନ୍ତା । ୯ ।
ଅନୁଗ୍ରହ ନାଥ ମାହେନ୍ଦ୍ର ଯୋଗବେଳେ
ବିବାଦ ଧ୍ୱଂସନ କର ଗୋ ସର୍ବମଙ୍ଗଳେ । ୧୦ ।
ନିରଞ୍ଜନ ପୁରୁଷ ତୁ ଶୂନ୍ୟେ ଶବଦ ଘୃଣ
ସମ୍ଭଳେ ଅଦୃଶ୍ୟ ଶବଦକୁ ଯାର ଭାବ କର । ୧୧ ।

---

୧୧ { ନିରଞ୍ଜନ ପୁରୁଷ ତୁ ଶୂନ୍ୟେ ଶବଦ ଶୁଭ
ସମ୍ଭଳେ ଅଦୃଷ୍ଟି ଶବଦେ ଯାହାକୁ ଭାବ । (ଟ, କ, ଢ଼)

ଜଳଦ ମେଦୁର ଶୁଦ୍ଧ ସ୍ଫଟିକ ଯାହାର କାୟା
ଅଖିଳ ପୁରୁଷନାଥ ଅଲେଖ ଅମାୟା । ୧୨ ।
ଲୋଭ ମୋହ ସଂସାରକୁ ତୁ ନାଶକର ଦଣ୍ଡା
ମଳୟ ଅନଳନାଥ ହାଥେଣ ତୋର ଖଣ୍ଡା ।' ୧୩ ।
ସବୁଂକର ବଚନ ଯେ ଯୁଦ୍ଧେଷ୍ଟି ଦେବ ମେଣ୍ଟି
ଆପଣେ ବିଜେକଲେ ଯେ ଧର୍ମଗ୍ରନ୍ଥେ ଯୁଦ୍ଧେଷ୍ଟି । ୧୪ ।
ନିର୍ମଳ ପୁରୁଷଂକୁ ମନ ଧ୍ୟାନରେ ଚଳନ୍ତେ
ଶୂଦ୍ରମୁନି ସାରଳାଦାସଂକୁ ଫେଡ ଯମଭୟେ । ୧୫ ।
ସମସ୍ତ ଯୋଦ୍ଧାଯେ ସୁମରନ୍ତି ଧର୍ମ ଧର୍ମ
ନ ପଡୁ ପ୍ରମାଦ ଯେବେଥେଂ ନୋହୁ ଯେ ସାଂଗ୍ରାମ । ୧୬ ।
ଶକୁନି କହିଲା ମାନଗୋବିନ୍ଦ ଅଗ୍ରତେ
ଯୁଦ୍ଧେଷ୍ଟି ଅଇଲେ ଶରଣ ପଶିବା ନିମନ୍ତେ । ୧୭ ।
ଶୁଣିଣ ହରଷ ଯେ ମାନଗୋବିନ୍ଦ ଚକ୍ରବର୍ତ୍ତି
ଶରଣ ପଶି ଯେବେ ମାଗିବ ମୋତେ ପୃଥ୍ୱୀ । ୧୮ ।
ଯୁଦ୍ଧେଷ୍ଟି ମାଗିବ ମୋତେ ଯେବେ ଭୁଜତଳେ ଗଳି
ଅର୍ଜିଲି ସମ୍ପାଧି ଦେବି ଯେ ପଞ୍ଚ ମହାସ୍ଥଳୀ । ୧୯ ।
ସୁଖେଣ ଯୁଦ୍ଧେଷ୍ଟି ଭୋଗକରୁ ଓଡ୍ରବଳ ରାଶି
ଭାଇନ୍ତ ଯେନ ପଛେ ମୁଂ ହୋଇବି ବନବାସୀ । ୨୦ ।
ଦନ୍ତରେ ତୃଣ ଗଳାରେ କୋଠାର ବାନ୍ଧି କରି
ମାଗିଲେ ଦେବି ପଞ୍ଚ କଟକ ସତ୍ୟ ସତ୍ୟ ମୋହୋରି । ୨୧ ।
ବାଜିଲା ଢୋଲ ଦମା ଟମକ ନିଶାଣ ମହୁରୀ ଯେ ଭେରୀ
ସମସ୍ତ ତବଦ ହୋଇଲା ଦୁନ୍ଦୁଭି ଆଦି କରି । ୨୨ ।
ଓଡ୍ରବଳ ସନ୍ୟ ଥାଠ ତବଦ ହୋଇଅଛି
ମଧୁଭାଣ୍ଡେ ଯେହ୍ନେ ପଡଇ କୀଟ ମାଛି । ୨୩ ।
ଶୁଳନ୍ତେ ଧର୍ମ ନନ୍ଦନ ବିକ୍ରମସିଂହ ଠାଣି
ଜଗୁଜନ ମୋହନ କନ୍ଦର୍ପ ଷୋଳକଳା ଜାଣି । ୨୪ ।
ଶ୍ରୀଭୁଜେ ଜୟ ମାଳା ଘେନିଣ ଯୁଦ୍ଧେଷ୍ଟି ·
ପ୍ରଥମେ ମହାରଥୀ ଭୀଷ୍ମଂକୁ ଯାଇଂ ଭେଟି । ୨୫ ।

ଗଂଗାଂକ ନନ୍ଦନଂକୁ ପାଦ୍ୟ ଅର୍ଘ ଦେଇ
ଯୁଧିଷ୍ଠି ପ୍ରଣିପତ୍ୟ କଲେକ ବନୋସ୍ଥୀ । ୨୬ ।
ଭୀଷ୍ମେ ବୋଇଲେ ତୋର ମନୋବାଞ୍ଛା ସିଦ୍ଧ ହେଉ
ଆମ୍ଭର ଆଷ୍ୟ ଯେନ ବୃତ ଶତ୍ରୁ କ୍ଷୟେ ଯାଉ । ୨୭ ।
ହସ୍ତିନା ଜଇନ୍ତା ଇନ୍ଦ୍ରପ୍ରଶସ୍ତ ଯମପ୍ରଶସ୍ତ ବାରୁଣାବନ୍ତ
ସେ ପଞ୍ଚୁକଟକେ ହୁଅ ତୁ ସେବକ ଛତ୍ର । ୨୮ ।

ଭୀଷ୍ମଂକ ମୁଖରୁ ଯେସନକ ବାକ୍ୟ ଶୁଣି
ଧର୍ମସୁତ କହନ୍ତି ଯେ ପ୍ରତିବାକ୍ୟ ବାଣୀ । ୨୯ ।
ଦିନକରନାଥ ଯେବେ ଉଇଂବ ପଶ୍ଚିମେ
ସମୁଦ୍ର ମଣ୍ଡି ଯେବେ ଲଂଘିବ ଉଛକର୍ମେ । ୩୦ ।

ଗଙ୍ଗାର ଭିତରେ ଯେବେ ପାଷାଣ ହୋଇବ ଭେଳା
ପର୍ବତ ଉପରେ ଯେବେ ଫୁଟିବ କମଳା । ୩୧ ।
କଳିଯୁଗ ସତ୍ୟଯୁଗ ଯେବେ ଭେଟ ଯେ ହୋଇବ
ତଥାପି ବଚନ ମହନ୍ତଂକ ନ ଟଳିବ । ୩୨ ।

ହେ ଦେବ ବୋଇଲ ପଞ୍ଚୁକଟକେ ହୁଅ ସେବକ ଛତ୍ରୀ
ତୋହୋର ବଚନ ନାଥ ମୋତେ ନୋହିବ ଅମାନ୍ତ । ୩୩ ।
ସେ ମୋହୋର ଶତ୍ରୁ ତ ଅଟଇ କୁରୁପତି
ତାହାକୁ ଆବୋରି ତୁ ହୋଇଲୁ ପ୍ରଥମେ ସେନାପତି । ୩୪ ।
ପ୍ରଶୁରାମ ଜିଣିମାକୁ ସମରଥ ଅଟୁ ତୁ
ସେ ମୃତ୍ୟୁମଣ୍ଡଳେ ତ ତୋହୋର ଇଚ୍ଛାମୃତ୍ୟୁ । ୩୫ ।

ସେ ସମର ମଧ୍ୟେ ଯେବେ ନ ପଶିବୁ ପିତା
ତେବେ ରାଜ୍ୟ କରି ହୋଇବ ଶତ୍ରୁଜିତା । ୩୬ ।
ବଦନ୍ତି ଗାଙ୍ଗେବେ ହୋ ନୋହଇ କଦାଚିତେ
ସେତେବେଳେ ଦୁର୍ଯୋଧନକୁ ଛାଡିବି କେମନ୍ତେ । ୩୭ ।

---

୨୬।୨ ଯୁଧିଷ୍ଠି ପ୍ରଣିପତ୍ୟ ଶୁଦ୍ଧଲେ ଦଣ୍ଡ୍ରଲଇ । (ଟ, ଢ଼)
୩୭।୧ ବୋଲଇ ଗାଙ୍ଗେବେ ନୋହିଇ ଉଚିତେ (ଓ, ଟ, ନ)

ଯେ ମୋର ବାହୁକୁ ସେ କରିଅଛି ଆଶ
ଯେତେବେଳେ ଛାଡ଼ିଲେ ଯେ ଧର୍ମ ଯିବ ନାଶ । ୩୮ ।
ଯୁଧେଷ୍ଠି ବୋଇଲେ ତୁ ତ ନ ଛାଡ଼ିବୁ ଦୁର୍ଯୋଧନକୁ
ମୁହିଂ ତ ସାମରଥ ତୋତେ ନୋହଇ ଜିଣିମାକୁ । ୩୯ ।
କେମନ୍ତେ ରାଜ୍ୟ ମୋତେ ହୋଇବ ପରାପତ
ତୋତେ କେମନ୍ତେ ଜିଣିମି ପିତା ସରୂପ କହତ । ୪୦ ।
ଯୁଧେଷ୍ଠିଙ୍କ ବଚନେ ବଦନ୍ତି ଗାଙ୍ଗେବ
ଆମ୍ଭର କଲ୍ୟାଣ କି ଅନ୍ୟଥା ହୋଇବ । ୪୧ ।
ଆମ୍ଭେ ଯେ ମୁକୁଟ ବାନ୍ଧି ହୋଇବୁ ସେନାପତି
ଦଶଦିନ ପରିଯନ୍ତେ ଆମ୍ଭେ ହୋଇବୁ ଯେକ ଛତ୍ରୀ । ୪୨ ।
ଦିନକେ ମାରିବୁ ଆମ୍ଭେ ଦଶସହସ୍ର ରଥୀ ଯୋଦ୍ଧା
ଦଶଦିନ ପରିଯନ୍ତେ ରକ୍ଷାକର ତୋର ଥିଲେ ବୁଦ୍ଧି । ୪୩ ।
ଦଶଦିନ ଅନ୍ତରେ ଶ୍ରୀଖଣ୍ଡୀକି ଆଗ କରି
ତାକୁ ଦେଖିଲି ମାତ୍ରକେ ଶହସ୍ର ଛାଡ଼ିବୁଂ ସତ୍ୟ ସତ୍ୟ ମୋହୋରି ।୪୪।
ଦଶଦିନ ସମରେ ରକ୍ଷାହିଂ ହୋଇଲେ
ଜିଣନ୍ତା ନାହିଂ ତୁକୁ ଯେ ତିନ ସପୁରେ । ୪୫
ଭୀଷ୍ମଙ୍କ ବୃତବାକ୍ୟ ଶୁଣିଣ ଧର୍ମରାଯେ
ସାନନ୍ଦ ଚିତ୍ତେଣ ତହୁଂ କରନ୍ତି ବିଜଯେ । ୪୬ ।
ତାହାଂକ ଡାହାଣ ପାରୁଶେ ଅଛନ୍ତି ଭୂରିସବା
ତାହାଂକୁ ନମସ୍କାର କରନ୍ତି ଯୁଧେଷ୍ଠି ଧର୍ମଦେବା । ୪୭ ।
ତାହାଂକୁ ପାଦାର୍ଘ ଦେଇ ଶତେକ ଦଣ୍ଡ ପରମାଣି
ପରମ କଲ୍ୟାଣ ବାଞ୍ଛନ୍ତି ଯେ କଉରବେବକୁଳ ସ୍ୱାମୀ । ୪୮ ।
ବାବୁ ବାଞ୍ଛା ସିଦ୍ଧ ହୋଉ ଆମ୍ଭର ଆଷ୍ୟ ଯେନ ବ୍ରତ
ଶତ୍ରୁ ମାରି ଯେ ପଞ୍ଚୁ କଣ୍ଟକେ ହୋଅ ଯେକଛତ୍ର । ୪୯ ।
ଯୁଧେଷ୍ଠି ବୋଇଲେ ତୁ ଅଟୁ ଅଜାଗୁରୁ
ଇନ୍ଦ୍ର ଶଂକା କରଇ ଯାହାର ଧନୁ ଧରୁ ଧରୁ । ୫୦ ।
କଉରବେବକୁଳକୁ ତୁ ସମରେ କରୁ ରକ୍ଷା
ତୋତେ ନ ଜିଣିଲେ କେମନ୍ତେ ମୋର ପୂରିବ ମନୋବାଞ୍ଛା । ୫୧ ।

ସ୍ୱାମ ତୋହୋର ସହୋଦ୍ର ଭ୍ରାଥ ଅଟନ୍ତ ଶାସ୍ତନୁ
ସ୍ୱର୍ଗେ ଭାଗ୍ୟବର ହେଲେ ତୋତେ ଆଦ୍ରାବଳୀ ଧନୁ । ୫୨ ।
ତ୍ରଇଲୋକ୍ୟ କମ୍ପଇ ନାଥ ତୋହୋର କୋପ କଲେ
ତୋତେ ବିନାଶ କରିତ ହୋଇବ କାହାର ବେଳେ । ୫୩ ।
ମୋତେ ସାଖା ନୋହିବୁ କୁରୁପତିକ ନ ଛାଡ଼ିବୁ
କେମନ୍ତେ ପଞ୍ଚୁ କଟକେ ରାଜା ତୁ କରାଇବୁ । ୫୪ ।
ଭୂରିସର୍ବାସ୍ୱେ ବୋଇଲେ ଭୀଷ୍ମଂକର ଯେ ଦଶଦିନ ସମରେ
ସ୍ୱେ ଯୁଦ୍ଧେ ସମର ନାହିଂ ନା ଆମ୍ଭରେ । ୫୫ ।
ତୋହୋର ନିମନ୍ତେ ଭୀଷ୍ମେ କରିବେ ଶରଶଯ୍ୟା
ତଦନ୍ତେ ସେନାପତି ହୋଇବେ ଭାରଦ୍ୱାଦଶଂକ ଆତ୍ମଜା । ୫୬ ।
ଦ୍ରୋଣଂକ ପ୍ରଥମ ଯୁଦ୍ଧରେ ପଡ଼ିବେ ଅନେକ ରାସ୍ୱେ
ଦୁଜେ ଶକଟ ଭୂସ୍ୱେ ପଡ଼ିବ ସିନ୍ଧୁରାଜାର ତନସ୍ୱେ । ୫୭ ।
ସେ ଶକଟ ଭୂସ୍ୱେ ଆମ୍ଭେ ଯେ ଚତୁର୍ଥ ଦ୍ୱାରେ ଥିବୁ
ସାତ୍ୟକୀ ହାଥେ ଆମ୍ଭେ ଶିର ଛେଦନ ହୋଇବୁଂ । ୫୮ ।
ଭୂରିସର୍ବାଂକ ମୁଖୁଂ ସ୍ୱେସନେକ ବାକ୍ୟ ଶୁଣି
ଯୁଦ୍ଧେଷ୍ଟିଂକ ଲୋଚନୁଂ ବହଇ ଅଶ୍ରୁଜଳ ପୁଣି ପୁଣି । ୫୯ ।
ଭୂରିସର୍ବାସ୍ୱେ ଯୁଦ୍ଧେଷ୍ଟିଂକ ଧଇଲେ କୋଳ କରି
କ୍ରୋଧ ଛାଡ଼ ବାବୁ ତୁ ଯୁଦ୍ଧେଷ୍ଟି ଦଣ୍ଡଧାରୀ । ୬୦ ।
ବାବୁ ଆକାଶର ଭୋଗ ସରଇ ଯେତେବେଳେ
ମନୁଷ୍ୟ ହୋଇ ଜନ୍ମ ହୋଅଇ ସେ ସ୍ୱେ ମୃତ୍ୟୁ ମଣ୍ଡଳେ । ୬୧ ।
ରାଗ ମୋହ କ୍ରୋଧ ହିଂସା ଅପବାଦ ଅହଂକାର କରି
କୁଟୁମ୍ବ ପୋଷଣ କରି ସର୍ବ ଧର୍ମ ଅପହରି । ୬୨ ।
ସ୍ୱେ ମୃତ୍ୟୁ ମଣ୍ଡଳେ ଜାତ ହୋଇଲେ ଅବଶ୍ୟ ହାଦେ ମରି
ପୁଣ୍ୟେଣ ଭ୍ରିତିଲୁ ଆମ୍ଭେ ବରଷ ସସ୍ର ଭୂରି । ୬୩ ।

---

୫୮।୨ ସାତ୍ୟକୀ ହାତେଥ ଆମ୍ଭେ ପ୍ରାଣତ୍ୟାଜ ହୋଇବୁଂ । ( ଧ, ନ )
୬୨।୨ କୁଟୁମ୍ବ ପୋଷଣେ ସର୍ବ ଦୋଷ ଅପହରି । ( ଖ, ଚ )

ଅବଶ୍ୟ ମୃତ୍ୟୁ ଆମ୍ଭେ ଲଭିଲୁ ଯୁଗତେ
ଅନ୍ତ ଭାଗ୍ୟେ ସେ ଭାରତ ଯୁଦ୍ଧେ ମୃତ୍ୟୁହିଂ ପ୍ରାପତେ । ୬୪ ।
ହନୁମନ୍ତ ଗରୁଡ଼ଧ୍ୱଜ କପିକେତନ ଚିହ୍ନ
ନନ୍ଦଘୋଷ ରଥରେ ଶ୍ରୀ ଜଗନ୍ନାଥଂକର ଦେଖିବା ବଦନ । ୬୫ ।
ବଡ଼ାଇ ପବନ ସେ ଯେ କୁରୁକ୍ଷେତ୍ର ଭୂମି
ଯେଣୁ ସ୍ଥାନେ ମୃତ୍ୟୁ ହୋଇଲେ ହୋଇବୁ ସ୍ୱର୍ଗଗାମୀ । ୬୬ ।
ପୁଣ୍ୟେକ ଚଡ଼ିଣ ଲଭିବା ଦେବ ସ୍ଥାନେ
ମୋକ୍ଷ ହେବା-ଦେଖି ଶ୍ରୀ ଜଗନ୍ନାଥଂକ ଶ୍ରୀମୁଖ ଦରଶନେ । ୬୭ ।
ଭୂରିଶବାଯେ ବୋଇଲେ ତୁ ଅବଶ୍ୟ ଆମ୍ଭନ୍ତ ବଧିବୁ
ଯେହାଡ଼ିଂ ସୁଲଭ କାହୁଂ ପାଇବୁ କରେ ବାବୁ । ୬୮ ।
ଭୂରିଶବାଂକ ଠାରୁ ଯେସନେକ ଦୃତ - ବାକ୍ୟ ଶୁଣି
ତହୁଂ ଚଳଗଲେ ଯୁଦ୍ଧେଷ୍ଠି ଦେବ ନୃପମଣି । ୬୯ ।
ବିନାଶ କାଳେ ଦେଖ ନାଶନ୍ତ ବୁଦ୍ଧି ମୋର
ରାଜ୍ୟ ସ୍ଥିର ପାଇଂତ ହୋଇବ ସମର । ୭୦ ।
ମନେ ବିଗୃରନ୍ତ କର୍ମେ ମୋ ଯାହା ଅଛି
ବିଧାତା ଆଣି ତାହା ମୋତେ ବଳେ ଘଟାଉଅଛି । ୭୧ ।
ହେ ବିଧାତା ପୁରୁଷ ମୁଂ ଲଗଇଂ ତୋ ପଯ଼ରେ
ଥରେ ବସନ୍ତୁ ହୋ ମାନଗୋବିନ୍ଦ କଣ୍ଠରେ । ୭୨ ।
କଣକଲ୍ପେ ଦେଉ ପଡ଼ା ଯେ ଖଣ୍ଡିଯେ
କୋହ୍ନ'କୋହ୍ନ'ଯୁଦ୍ଧ ବଂଶ ହେବ କ୍ଷୟେ । ୭୩ ।
ମାନଗୋବିନ୍ଦଙ୍କୁ ମାଗିବି ମୁଂ ଗ୍ରାମ
ନ କରିବ ନାସ୍ତିଟି ବୋଲନ୍ତ ଧର୍ମ,ଧର୍ମ । ୭୪ ।
ଯେମନ୍ତ ବିଗୃରନ୍ତେ ଭେଟିଲେ ରାଯେଗୁରୁ ଶଲ୍ୟ
ବିଜଯେ ଭାରତ ଯୁଦ୍ଧରେ ଭାରୋଇ ମହାମଲ୍ଲ । ୭୫ ।

---

୭୨।୧ ଲଗଇଂ—ଓଲଗଇ ।
୭୩।୧ କଣକଲ୍ପ—କାଣିଗୃଯେ ବା ଅଳ୍ପ ପରିମାଣେ ।

ସାକଲ୍ୟ ମଣ୍ଡଳର ସେ ଅଟନ୍ତି ଅଧିପତି
ତାହାଂକ ଚରଣେ ପୂଜା କଲେ ଧର୍ମରାୟେ ନୃପତି । ୭୬ ।
ଶଲ୍ୟେ ବୋଇଲେ ରେ ବାବୁ ପରମ କଲ୍ୟାଣ ହୋଉ
ପଞ୍ଚୁ କଟକେ ରଜା ହୁଅ ସବୁ ଶତ୍ରୁ କ୍ଷୟେ ଯାଉ । ୭୭ ।
ଶଲ୍ୟଂକ ବଚନେ ବୋଲନ୍ତି ଯୁଧିଷ୍ଠିରଦେବ ଧାଡିକାରେ ଉଠି
ତୋତେ କେମନ୍ତେ ଜିଣିମି ମୁଂ କ୍ଷତ୍ରିୟ ଜଗଜ୍ଜେଠୀ । ୭୮ ।
ତୁ ପୁଣ ଅଟୁ ମୋର ସହୋଦ୍ରମଉଳା
ମାଦ୍ରୀଂକର ଭ୍ରାଥ ପଣ୍ଡୁଂକର ଶଳା । ୭୯ ।
ହେ ମାଉଳ କ୍ଷତ୍ରିୟ ବଳବନ୍ତ ତୋତେ ନାହିଂ ସମସର
ତୋହୋର ଧନୁ ଧଇଲେ ତ୍ରାସ କରନ୍ତି ଦେବ ହର । ୮୦ ।
ଈଶ୍ୱର କୁବେର ସୁରପତି ତୋତେ ସରି ନୋହନ୍ତି ହାଦେ ଯୁଦ୍ଧେ
ମୁହିଂ କେମନ୍ତେ ତୋତେ ଜିଣିମି ରଣ ମଧ୍ୟେ । ୮୧ ।
ଯେ କଉରବ ବଳକୁ ମୁଂ ଯେ ବୁଝିଂଇ ରାଗଳ ପଳ
ତୁ ସେ ରକ୍ଷ ପାଳେକ ରାଏ ଗୁରୁ ଶଲ୍ୟ । ୮୨ ।
ମୁହିଂ ସେ ସିଂଘ କଉରବେ ଅଟନ୍ତି ଅଜାଯୂଥ
ତୁ ଯେ ରକ୍ଷାପାଳକ ହୋଇ ରହିଅଛୁ ଯେଥ । ୮୩ ।
ତୁ ମୋହୋର ମାଉଳ ମୁଂ ତୋର ଭଗିନୀଜା
ମୋହୋର ଥାଠେ ଯେବେ ଯିବା ଗୃଳ ଦେବରାଜା । ୮୪ ।
ମୋହୋର ଥାଠେ ଯେବେ ହୋଅ ତୁମ୍ଭେ ରାଜା
ପାଞ୍ଚ ଭାଇ ଆମ୍ଭେ ତୋତେ କରିବୁ ପାଦପୂଜା । ୮୫ ।
ଶଲ୍ୟେ ବୋଇଲେ ବାବୁ ରେ ନୋହଇ ଯେମନ୍ତ
ଯେ ଅସମୟ କାଳେ ପ୍ରାଣୀଂକ ଗ୍ରଣ୍ଡିବା ନୋହଇ ବହିତ । ୮୬ ।
ମୁଂ ଯେବେ କୁରୁପତିକ ଗ୍ରଣ୍ଡିବଇଂ ଯେତେବେଳେ
ଧର୍ମ ଗଛିବ କ ଯେ ମହୀ ମଣ୍ଡଳେ । ୮୭ ।

---

୭୭ { ଶଲ୍ୟ ବୋଇଲେ ବାବୁ ପରମ କଲ୍ୟାଣ ହୋଅସି ।
{ ଶତ୍ରୁ ମାର ପଞ୍ଚୁ କଟକେ ଅଇଶ୍ୱର୍ଯ୍ୟ ଭୁଞ୍ଜସି । (ଙ, କ, ଙ, ଘ, ଟ, ଢ)
୭୯।୨ ମାଦ୍ରୀଂକର ଭ୍ରାଥ ଅଶ୍ୱିନୀ କୁମାରଂକର ଶଳା । ( ବହୁ ପାଠ )

ଶଙ୍କି ବାଇଲେ ବୋଲୁ ନ କର କଛୁ ଚନ୍ତା
ଆମ୍ଭେ କହୁଅଛୁଂ ଶୁଣ ଆଦ ଅନ୍ତର ବାରତା । ୮୮ ।
ଖେଳୁଥିଲୁଂ ହୁଡ କର ବାଳୁତ କୁତୂହୋଳେ
ମହାତୀର୍ଥ ଯେ ତପୋପୃଳା ନଦୀର କୂଳେ । ୮୯ ।
ଫିମ୍ପି ମାରନ୍ତେ ସେ ନଦୀ ହୋଯ୍ୟେ ପାର
ଫିମ୍ପି ଫୁଟଇ ଯେ ବୃଶାଖା ନାମେ ଗିର । ୯୦ ।
ଯେସନ ସାଧନ ମୋର ବାଳୁତ କାଳହୁଂ
ଅନୁଷ୍ଟୁପ୍ ବୋଲ ଋଷିଯେକ ମହାପ୍ରଭୁ । ୯୧ ।
ସେ ବୃଶାଖା ପର୍ବତର ଉତ୍ତର କଇଛନ୍ତେ
ଅନୁଷ୍ଟୁପ୍ ଋଷି ତପ କରନ୍ତ ଅତି ଗାଢେ ବୃକ୍ଷମୂଳେ ଫପୋଢେ ।୯୨।
ଫିମ୍ପି ମାଇଲି ନଦୀ ଦକ୍ଷିଣ ଆଡୁ ଉତ୍ତର କୂଳକଇଂ
ଗିର ଫୁଟି ଋଷିର ଦେହେ ନକଳଲି ଯାଇଂ । ୯୩ ।
ଉତ୍ତାନଶାୟୀ ହୋଇଣ ପଡଲେ ବ୍ରହ୍ମଋଷି
ଋଷିଂକର ଦେହୁ ରୁଧିର ବହେ ନଦୀ ଯାଯ୍ୟେ ପୂର । ୯୪ ।
ଦେଖିଣ ଆଶ୍ରିଯେ ଡେଇଂ ଗଲି ସେ ନଦୀ ଗୋଟି
ଋଷିଂକ ଦେହରୁ ଯେ ରୁଧିର ବହେ ଫୁଟି । ୯୫ ।
ଅନେକ ବଇକୁଳି ମୁଂ ହୋଇଲି ତାହା ଗୃହେଂ
ଋଷି ବୋଇଲେ ବାବୁ ମୋହୋର ବର୍ତ୍ତି ନାହିଂ । ୯୬ ।
ମୁହିଂ ଯେ ବୋଇଲି ସ୍ୱାମୀ ମୁଂ ବ୍ରହ୍ମହତ୍ୟା ଦୋଷୀ
ଯେଥକୁ ହେ ମୁନ ମୋତେ କାରଣ କହସି । ୯୭ ।
ଅନୁଷ୍ଟୁପ୍ ବୋଇଲେ ଭରଥ ଯୁଦ୍ଧର ସମରେ
ତୁହି ସେନାପତ ହୋଇବୁ କଉରବ ଥାଠରେ । ୯୮ ।
ଅଷ୍ଟାଦଶ ଦନ ଯେ ହୋଇବ ମହାଯୁଦ୍ଧ
ଯୁଦ୍ଧେଷ୍ଟିଂକ କୋପନ୍ତେ ତୁ ନଶିବୁ ରଣମଧ୍ୟ । ୯୯ ।

---

୯୭। ୨ ଯେଥକୁ ମହାତ୍ମା ମୋତେ ମୁକତ ଗତ କହସି । ( ଘ, ଚ, ଣ )
୯୯। ୨ ଯୁଦ୍ଧେଷ୍ଟିଂକ ହାଥେ ତୁ ହୋଇବୁଂ ପ୍ରାଣେ ବଧ । (ଘ, ଙ, ଡ, ଅ, ନ,)

ବ୍ରହ୍ମହତ୍ୟା ଦୋଷ ତୋର ଯେଣୁ ଯିବ ପାର
ଯେ ନ୍ୟାୟୁଂ କର ଭାରଥ ଯୁଦ୍ଧ ମୋତେ ଅଛୁଟି ପ୍ରତିକାର । ୧୦୦ ।
ତୁ ଯେହ୍ନା କହୁ ବଗୃର ନ କର ମହୀପାଳେ
ମୋହୋର କାର୍ଯ୍ୟେ ମୁହ୍ନଂ ପଶିଲା ମହାଗ୍ନେଳେ । ୧୦୧ ।
ସମରେ ମୁହ୍ନଂ ଯେ ନାଶ ଯିବଇଂ ତୋହୋର ଯୋଗେ
ବ୍ରହ୍ମହତ୍ୟା ଦୋଷ ପାଶି କଶ ବସିବଇଂ ଅମର ସ୍ୱର୍ଗେ । ୧୦୨ ।
ଶଲ୍ୟେ ବୋଇଲେ ମୋହୋର କଥାକୁ ନ ଭାଳ ଯୁଦ୍ଧେଷ୍ଟି
କାହାର କାର୍ଯ୍ୟ ନୋହଇ ଯେ ମୋହୋର କାର୍ଯ୍ୟ ହେଟି । ୧୦୩ ।
ଯୁଦ୍ଧେଷ୍ଟି ପରମ ସାନନ୍ଦ ଶଲ୍ୟଂକ ବଚନେ
ତହୁଂ ଯାଇଂ ବଜେ କଲେ ଦ୍ରୋଣଂକ ସନ୍ନିଧାନେ । ୧୦୪ ।
ଭାରଦ୍ୱାଦଶଂକ ନନ୍ଦନ କଇଛା ଜଗଜ୍ୟେଠୀ
ପାଦାର୍ଘ ଦେଇଣ ପ୍ରଣମିତ କରନ୍ତ ଦ୍ରୋଣଂକୁ ଯୁଦ୍ଧେଷ୍ଟି । ୧୦୫ ।
ଦ୍ରୋଣେ ବୋଇଲେ ତୋତେ ପରମ କଲ୍ୟାଣ ହୋଉ
ବଦ୍ୟାଲ୍ଲଭ ହୋଉ ତୋର ଶତ୍ରୁ କ୍ଷୟେ ଯାଉ । ୧୦୬ ।
ମୁଂ ଯେ ଗୁରୁ ଆମ୍ଭର ଆଇଷ ଘେନ ବ୍ରତ
ଶତ୍ରୁ ମାର ପଞ୍ଚୁ କଣ୍ଠକେ ଧରଅ ଦଣ୍ଡଛତ୍ର । ୧୦୭ ।
ଯୁଦ୍ଧେଷ୍ଟି ବୋଇଲେ ତୁମ୍ଭେ ମୋହୋର ପରମ ଗୁରୁ
ଯେସନେକ କଲ୍ୟାଣ ଯେବେ ଅଇଲା ତୁମ୍ଭର ଶ୍ରୀମୁଖରୁଂ । ୧୦୮ ।
ତୋତେ ଜିଣିମାକୁ ଆମ୍ଭେ ନୋହୁ ସାମରଥ
ତୋହୋର ବଦ୍ୟାରେ ସିନା ଆମ୍ଭେ ବୋଲ୍ଲଇ ବଳବନ୍ତ । ୧୦୯ ।
ତୁତ ଆବୋଶଲୁ ଯେବେ କଉରବମାନଂକୁ
ତୋତେ ଜିଣିଲେ ସିନା ପ୍ରାପତ ରାଜ୍ୟ ମୁକୁ । ୧୧୦ ।
ତୁମ୍ଭନ୍ତ କେମନ୍ତେ ହୋ ଜିଣିମି ମୁଁ ଗୁରୁ ଦ୍ରୋଣ
ତେବେ ସେ ପ୍ରାପତ ହୋଇବ ତୁମ୍ଭର କଲ୍ୟାଣ । ୧୧୧ ।

---

୧୦୧।୨ ମୋହୋର କାର୍ଯ୍ୟେ ମୁହ୍ନଂଟି ଅଛଇଂ କ୍ଳବୁବଳେ । (ଙ, ଊ, ଥ, ନ)

୧୦୯ { ତୋତେ ଜିଣିମାକୁ ମୁହ୍ନଂ ନୋହଇ ସାମରଥା
ତୋହୋର ବଦ୍ୟାରେ ମୁହ୍ନଂ ଅଟଇ ଶକତା । (ଘ, ଖ, ଠ)

ଦ୍ରୋଣେ ବୋଇଲେ ମୋହୋର ହାଥେ ଶସ୍ତ୍ର ଥିଲେ
ଜଣନ୍ତା ନାହିଂ ବ୍ରହ୍ମା ଈଶ୍ୱର ହୋଇଲେ । ୧୧୨ ।
ମୋତେ ଶସ୍ତ୍ର ଛଡ଼ାଇ କେହି ଯେବେ ମା'ର
ତେବେ ସେ ଆତ୍ମା ମୋହୋର ହୋଇବ ଅପହାର । ୧୧୩ ।
ଯୁଦ୍ଧେଷ୍ଟି ବୋଇଲେ ତୁ ଦଣ୍ଡେ ନ ଛାଡ଼ବୁ ଧନୁଶର
ଦବାଗ୍ରେହେ ଧନୁ ଥାଇ ତୁମ୍ଭର ହାଥର । ୧୧୪ ।
ଦ୍ରୋଣେ ବୋଇଲେ ରମଣ ସ୍ନାନ ଭୋଜନର ବେଳେ
କରେ ଶସ୍ତ୍ର ମୋ ନ ଥାଇ ଯେ ତିନ କର୍ମକାଳେ । ୧୧୫ ।
ପୁତ୍ର ଅଶସ୍ତ୍ରମା ଭୁଜେ ଖାର ନେତ ବାନ୍ଧଇ
ସେ ପୁତ୍ର ହତବୋଲ ଶୁଣିଲେ ଶସ୍ତ୍ର ମୁଂ ଛାଡ଼ଇ । ୧୧୬ ।
ତୁ ମୋତେ ଯେବେ ମାରିପାରିବୁ ଯେହେନେକ ସ୍ଥିରବେଳେ
ନୋହିଲେ ମୋହୋର ମୃତ୍ୟୁ ନାହିଂଟି କହିଲ ଧର୍ମବାଳେ । ୧୧୭ ।
ରମଣବେଳେ ମାଇଲେ ଲିଙ୍ଗଭଗ୍ନ ଦୋଷ
ଭରଣ ପ୍ରମାଣେ ଯମ କାଟଇ ତାର ମାଂସ । ୧୧୮ ।
ସ୍ନାହାନର ବେଳେ ଯେବେ ମାରିବ ବ୍ରାହ୍ମଣ
କୋଟିଯେ ଯୁଗ ଥିବ ସେ ରଉରବ ନର୍କେଣ । ୧୧୯ ।
ଭୋଜନର ବେଳେ ଯେବେ ମାରିବ ନରଗ୍ରି
ବ୍ରହ୍ମହତ୍ୟା ପାତେକୀ ଯେ ହୋଇବ ମହାଦୋଷୀ । ୧୨୦ ।
ବାବୁ ଅଶସ୍ତ୍ରମା ହିଙ୍ଗବା ସେ ନ ମରେ କେବେହେଂ
ନାହିଂଟି ଜଣନ୍ତା ମୋତେ କହିଲ ସନ୍ଦେହେ । ୧୨୧ ।
ଯୁଦ୍ଧେଷ୍ଟିର ହରଷ ପାଇଣ ମୃତ୍ୟୁଭେଦ
ଅଶସ୍ତ୍ରମା ହତେ ଦ୍ରୋଣଂକୁ ପଡ଼ିବ ପ୍ରମାଦ । ୧୨୨ ।
ଯେହା ଶୁଣି ଯୁଦ୍ଧେଷ୍ଟିର ତହୁଂ ଚଳଗଲେ
ଅଶସ୍ତ୍ରମା ପାଶେ ଯାଇଂ ପ୍ରବେଶ ହୋଇଲେ । ୧୨୩ ।
ଅଶସ୍ତ୍ରମା ଚରଣେ ଯେ ଯୁଦ୍ଧେଷ୍ଟି ପରଣାମି
ଅନେକ କଲ୍ୟାଣ କଲେ ମହର୍ଷି ଦେବ ସ୍ୱାମୀ । ୧୨୪ ।

---

୧୧୨।୨ ନାହିଂଟି ଜଣନ୍ତା ମୋତେ କହିଲ ସମ୍ଭୂଳେ । (ଥ, ଙ)

ଅଶତ୍ଥମା ବୋଇଲେ ଆୟୁଷ ବର୍ଦ୍ଧିତ ଯେ ହୋଉ
ଶତ୍ରୁ ମାରି ରାଜ୍ୟକର ତୋତେ ଜିଣନ୍ତା କେହ୍ନ ନୋହୁ । ୧୨୫ ।
ବାବୁ ଶତ୍ରୁ ମାରି ଏଣ୍ଟୁ କଣ୍ଟକେ ହୋଅ ତୁମ୍ଭେ ରାଜା
ପୃଥ୍ୱୀରେ ଶ୍ରେଷ୍ଠ ହୋଅ ତୁ ମହତ ବଡ଼ତେଜା । ୧୨୬ ।
ଯୁଧିଷ୍ଠିର ବୋଇଲେ ଯେବେ ଅନୁଗ୍ରହ କଲୁ ମୋତେ
ଏ କୁରୁ ସାଗରେ ତୋତେ ମୁଂ ଜିଣିମି କେମନ୍ତେ । ୧୨୭ ।
କଳ୍ପି କାଳ୍ପା ଯୋଦ୍ଧା ଅଟୁ ତୁ କ୍ଷତ୍ରିୟ ନିର୍ଜ୍ଜିଣି
ତୋତେ ନ ଜିଣିଲେ କେହ୍ନେ ରାଜ୍ୟ ମୁଂ ପାଇବି । ୧୨୮ ।
ଅଶତ୍ଥାମା ବୋଇଲେ ଜଗନ୍ନାଥେ ଯାର ସଖା
ଜାଣି କୁରୁପତିକ ହରି କଲେଣି ନିରେଖା । ୧୨୯ ।
ମୋତେ କୁରୁପତି ଯେବେ କରନ୍ତା ସେନାପତି
ଏତେବେଳ ପରିଯନ୍ତେ ଥାଆନ୍ତ କ ବ୍ରତି । ୧୩୦ ।
ଦୁର୍ଯୋଧନ ବୋଇଲ ତୁ ମରଣକୁ ଭୟେ କଲୁ
ଛନ୍ଦୀ ହୋଇ ନସତେ ନିର୍ଜ୍ଜିଣି ବର ଯେ ମାଗିଲୁ । ୧୩୧ ।
କଇଚ୍ଛାବନ୍ତ ରାଜା ସେ ମାନ ଯେ ଗୋବିନ୍ଦ
ମୋତେ ସେନାପତି ସେ ନ କଲା ଦୁଷ୍ଟ ମନ୍ଦ । ୧୩୨ ।
ବାବୁ ଥିଲେ ଥିଲ ଗଲେ ଗଲ ଯେ ମୋହୋର ଇଚ୍ଛା
ଏଣ୍ଟୁ କଣ୍ଟକ ଭୋଗକର ତୋର ପୂରୁ ମନୋବାଞ୍ଛା । ୧୩୩ ।
ଅଶତ୍ଥମାଂକ ପାଶେ ଅଛନ୍ତି କୃପାଚାର୍ଯ୍ୟେ
ତାହାନ୍ତ ପ୍ରଣପତ୍ୟ ଯୁଧିଷ୍ଠିର ରାଜ ଦେବେ । ୧୩୪ ।
କୃପେ କଲ୍ୟାଣ କଲେ ପୂରୁଂ ତୋ ମନୋବାଞ୍ଛା
ଶତ୍ରୁ ମାରି ଏ ଏଣ୍ଟୁ କଣ୍ଟକ ଶୁଭେ କର ରକ୍ଷା । ୧୩୫ ।
ଯୁଧିଷ୍ଠିର ବୋଇଲେ ତୁମ୍ଭେ ସୁଗ୍ୟଂ ବ୍ରାହ୍ମଣ ହୋଇ
ସମରେ ପଶିଲ କର୍ମେ ଶ୍ରୀବସ୍ତ୍ର ଚିହ୍ନ ବହି । ୧୩୬ ।

---

୧୨୮।୨ ତୋତେ ନ ଜିଣିଲେ କେହ୍ନେ ଏକଛନ୍ଦୀ ହୋଇବ । (ଘ, ଙ, ଝ, ଠ)

୧୨୯ { ଅଶତ୍ଥମା ବୋଇଲେ ଜଗନ୍ନାଥେ ଯାର ସାହା
{ ଜାଣି ନାରାୟଣ ନିଶୋଧନ କଲନ ତାହା । ( ଘ, ଝ, ଡ )

ବିଶେଷେ ଦ୍ରୋଣଂକ ଶଳା ତୁମ୍ଭେ ଆମ୍ଭର ମଉଳା
ଗୁରୁ ବେଦ ଛଡ଼ ଶାସ୍ତ୍ରେ ମନ୍ତ୍ରେଣ ଅଗ୍ରୁର୍ଗଳା । ୧୩୭ ।
ଶସ୍ତ୍ର ଧରି ସମରେ ପଶିଲେ ଯେଣେ ହେବ ବଡ଼ ଦୋଷ
ତୁମ୍ଭନ୍ତ ନାଶ କଲେ ଅପାର ଅପଯଶ । ୧୩୮ ।
କୃପେ ବୋଇଲେ ବାବୁ ତୁମ୍ଭେ ଯେ ବ୍ରାହ୍ମଣ
ବ୍ୟାସଂକର ନାତ୍ତି ତୁମ୍ଭେ ଅଟ ଯେ ଆପଣ । ୧୩୯ ।
ସୋମବଂଶ ତୁମ୍ଭର ଅଟନ୍ତି ରାଜର୍ଷି
ବ୍ରାହ୍ମଣ ହୋଇ ତୁମ୍ଭେ ସାଂଗ୍ରାମେ କମ୍ପେ ପଶି । ୧୪୦ ।
ଆଦ୍ୟ କ୍ଷତ୍ରୀ ବ୍ରାହ୍ମଣ ଯେ ଅଟନ୍ତି ଦେବ ପ୍ରଶୁରାମେ
ଯେକବିଂଶ ବାର କ୍ଷତ୍ରୀଂକ ମାଇଲେ ସଂଗ୍ରାମେ । ୧୪୧ ।
ଗୁରୁ ଦ୍ୱିଗର କ୍ଷତ୍ରୀ ମାରି ହୋଇଲେ ମହାରାଜା
ଧର୍ମ ବଳେଣ ସେହୁ ଯେ ପାଳିଲେ ଜନ ପ୍ରଜା । ୧୪୨ ।
ଯେସନେକ ବଚନ କହିଲେ ବ୍ରହ୍ମ କୃପେ
ଆମ୍ଭନ୍ତ ଚିନ୍ତା ନ କର ତୁମ୍ଭେ ଯୁଧିଷ୍ଠି ଦେବ ନୃପେ । ୧୪୩ ।
ସମର ଭୂମି ବାବୁ ରେ ଅଟଇ ସର୍ଗ୍ୟଂ ସ୍ଥାନ
ଯେଥକୁ ଆଗୁର୍ଯ୍ୟ ଆମ୍ଭେ ବ୍ରହ୍ମା ବିଦ୍ୟମାନ । ୧୪୪ ।
ଯେଥକଇଂ ଚିନ୍ତା ନ କର ହୋ ଧର୍ମ ରାୟେ
ପ୍ରାଣୀ • ନାଶ ଯାଆନ୍ତି କି ଧୋଣ୍ଡୋଅ ସର୍ପ ଘାୟେ । ୧୪୫ ।
କୃପକୁ ତେଜ୍ୟା କରି ଚଳନ୍ତି ଯୁଧିଷ୍ଠି ।
କରେଣ ଅର୍ଘ ଘେନି କର୍ଣ୍ଣକୁ ଯାଇଂ ଭେଟି । ୧୪୬ ।
ପାଦାର୍ଘ ଦେଇଣ ଯେ ବିନୟ ଭଗତ୍ତ
କର୍ଣ୍ଣ ରାଜା କଲ୍ୟାଣ କଲା ଯଥା ଯେ ଯୁଗତ୍ତ । ୧୪୭ ।
ଧନ ଗୋଧନ ସୁତ ଆୟୁ ବର୍ଦ୍ଧିତ ଯେ ହୋଉ
ପଞ୍ଚୁ କଟକେ ଛନ୍ଦ ଧରିଅ ଶକ୍ରୁ କ୍ଷୟେ ଯାଉ । ୧୪୮ ।
ବଦସ୍ତି ଧର୍ମ ନନ୍ଦନ ମହାଗ୍ୟାଂତା
କୋଇନ୍ତାଂକର ଯେ ଜ୍ୟେଷ୍ଠ ତନୟେ ତୁ ଆମ୍ଭର ସମ ପିତା ।୧୪୯।
ଆମ୍ଭର ଥାଠକୁ ଆସି ବିଜେକର ଦେବସ୍ୱାମୀ
ପଞ୍ଚ ଭ୍ରାଥ ଥିବୁଂ ତୋର ଚରଣେ ପଡ଼ିଣାମି । ୧୫୦ ।

ଆମ୍ଭର ଥାଠରେ ତୁ ହୋଅସି ଦେବ ରାଜା
ଲକ୍ଷେକ ନୃପତି ତୁମ୍ଭନ୍ତ କରିବେ ପାଦ ପୂଜା । ୧୫୧ ।
ଶ୍ରୀହରି ସମାନେ ଭୋଗକର ଯେତେ ସମ୍ପଦ
କଉରବେ ବଳେ ଥିଲେ ତୁମ୍ଭନ୍ତ ପଣ୍ଡବ ପରମାଦ । ୧୫୨ ।
କର୍ଣ୍ଣ ବୋଇଲା ମୁଂ ଜାଣଇଂନ ଯେତେମାନ
ସର୍ବଦାକାଳେ କଉରବେ ମୋତେ ନୁହଂନ୍ତ ସମାନ । ୧୫୩ ।
ବାବୁ ରାଧେବ ପ୍ରତିପାଳିଲା ମୋତେ ଅଗ୍ୟାଂନ ବାଳକାଳେ
ମାନଗୋବିନ୍ଦ ମଇଁତ୍ର ମୋର ହୋଇଲା ଶିଶୁକାଳେ । ୧୫୪ ।
ବାବୁ ରେ ନ ଜାଣଇ ପିତା ଯେ ନ ଜାଣଇଂ ମାତା
ଦୁର୍ଯୋଧନ ରାଜା ମୋର ଇଷ୍ଟ ଯେ ଦେବତା । ୧୫୫ ।
ଭୀଷ୍ମ ଦ୍ରୋଣ ଭୂରିସର୍ବା ଯେତେ ଅଛନ୍ତ ଯଦ୍ୟପି
ମୋହୋର ବାହାକୁ ଆଶ କରିଛି ସେ ଅଦ୍ୟାପି । ୧୫୬ ।
ଶୁଣି କସ କହିବେ ମୋତେ ନୃପତି ସମସ୍ତ
ସମର ବେଳେ କର୍ଣ୍ଣ ଯେ ହୋଇଲା ବିମତ । ୧୫୭ ।
ଆଦ୍ୟହୁଂ ଆଶ କରି ଅଛି ସେ ମୋର ବାହାକୁ
ଧର୍ମହିଂ ଗଛିବ କ ଉପେକ୍ଷା କଲେ ତାକୁ । ୧୫୮ ।
ବ୍ରାହ୍ମଣ ହୋଇଣ ଯେବେ ଜଳକୁ କରଇ ଭୟେ
ସ୍ତିରି ହୋଇ ଯେବେ ଅଗ୍ନିରେ ନ ସମର୍ପଇ କାୟେ । ୧୫୯ ।
ଛତ୍ରୀ ହୋଇଣ ଯେବେ ସାଂଗ୍ରାମକୁ ଭୟେ କରି
ଯେତେକ ଲୋକ ଅମୋକ୍ଷ ହୁଅନ୍ତ ସେ ନ ପାନ୍ତ ସ୍ୱର୍ଗପୁରୀ । ୧୬୦ ।
ଯେତେହା ଶୁଣି ଯୁଦ୍ଧେଷ୍ଟି ସ୍ତୁତି କଲେ ଆକାଶକୁ ଦେଖି
ଚନ୍ଦ୍ର ସୂର୍ଯ୍ୟ ଦଶ ଦିଗପାଳେ ହୋଇବା ମୋତେ ସାକ୍ଷୀ । ୧୬୧ ।
ସହୋଦ୍ର ଗୁଡି ସମରେ ପଶିଲା ବୀର କର୍ଣ୍ଣ
ଧର୍ମ ତେଜ୍ୟା କଲା ଯେତେହାର ବୁଡିଲା ଯତ୍ନୁଂ ଗ୍ୟାଂନ । ୧୬୨ ।

---

୧୬୧ { ବସ୍ତ୍ରର ଯୁଦ୍ଧେଷ୍ଟି ସ୍ତୁତି କରନ୍ତ ସୂର୍ଯ୍ୟେ ଦେଖି
ଭୋ ଧର୍ମ ଦେବତା ଯେତେଥକୁ ହୁଅ ତୁମ୍ଭେ ସାକ୍ଷୀ । (ଙ, ଝ, ଠ, ଥ, ଧ, ନ)

୧୬୨ { ଯୋଦ୍ଧଶମା ପଣ ନ ପାଳିଲେ ବୀର କର୍ଣ୍ଣ
ସମରେ ପଶିଲେଟି ହୋଇବ ସଞ୍ଚୟେ ନିଧନ । (ଝ, ଠ)

ଯେତେହଂ ନିରାଶ କଲ୍ଲ ଶୀର କର୍ଣ୍ଣ ସେନାପତି
ବନେ ଧର୍ମନନ୍ଦନ ଯାଇଂ ସ୍ତ୍ରୁଯୋଧନ କତି । ୧୬୩ ।
ଧୃତରାଷ୍ଟ୍ର ଶତେକପୁତ୍ର ଘେନି ବନେ ମନ୍ତ୍ରୀ ଯେ ଶକୁନି
ଯୁଦ୍ଧେଷ୍ଠି ବଜ୍ରଯେ ଯାଇଂ ଯେମନ୍ତର ସମୟେ କରେ ଜୟେମାଳା ଘେନି ।
ପିତା ଧୃତରାଷ୍ଟ୍ରଂକ ସନ୍ନିଧେ ଦେଇଣ ପାଦ୍ୟ ଅର୍ଘ୍ୟ
ବିନୟ ଭାବ ହୋଇଣ ପିତାଂକର ପଡିଲେ ପାଦଲାଗ । ୧୬୫ ।
ପରମ କଲ୍ୟାଣ ଯେ ବାଞ୍ଛିନ୍ତି ଧୃତରାଷ୍ଟ୍ର
କଲ୍ୟାଣ ହୋଅ ମନୋବାଞ୍ଛା ହୋଉ ପରାପତ । ୧୬୬ ।
ବଦୟନ୍ତି ଯୁଧିଷ୍ଠି ଶୁଣ ଦେବ ପିତା
ମୁହିଂ ତୋହୋର ନନ୍ଦନ ସର୍ବଦା ଭଗତା । ୧୬୭ ।
ଅନେକ ଦଇବ ତାତ ମାଇଲୁ ଘୋର ବନେ
ଦୁର୍ଗତି ବଞ୍ଚିଲୁ ଯେ ତୋହୋର ପରସନେ । ୧୬୮ ।
ଅତିଅନ୍ତ କଷ୍ଟ ମୁଂ ଯେ ପାଇଲି ମହାଦେଶେ
ଅଗ୍ୟାଂତ ବନବାସ ସାରି ଅଇଲୁଂ ତୋର ପାଶେ । ୧୬୯ ।
ଯେ ତୋର ନନ୍ଦନ ମାନ ଯେ ଗୋବିନ୍ଦ
ସୋଦରଙ୍କୁ ନ ସମ୍ଭାଳ ଭିଆଇଛୁ ଦ୍ୱନ୍ଦ । ୧୭୦ ।
ଇନ୍ଦ୍ରପ୍ରସ୍ଥ ଯମପ୍ରସ୍ଥ ହସ୍ତିନା ଜଇନ୍ତା ବାରୁଣା
ଯେ ପଞ୍ଚୁ ରାଜ୍ୟ ତାତ ଜମ୍ବୁଦ୍ୱୀପକୁ ଧାରଣା । ୧୭୧ ।
ଯେଥୁଂ ମାଗିଲି ମୁଂ ପଞ୍ଚୁଖଣ୍ଡି ପଡା
ନିରାଶ କଲ୍ଲ ମୋତେ ସେ ମାନଗୋବିନ୍ଦ ମହାରାଜା । ୧୭୨ ।
ଧଉମ୍ୟ ପୁରୋହିତେ ହେ ଶ୍ରୀହରି ବିଦୁରେ ସଞ୍ଜୟେ
ମଧ୍ୟପାତ୍ର ଯେମାନଙ୍କୁ ମୁଂ କଲି ଦେବରାୟେ । ୧୭୩ ।
ଯେମାନଂକ ବୋଲ ମେଣ୍ଟିଲା ମାନ ଯେ ଗୋବିନ୍ଦ
ଧର୍ମ ତେଜିଣ ସେ ଇଚ୍ଛିଲିକ ଦ୍ୱନ୍ଦ । ୧୭୪ ।

---

୧୬୯ { ଅତିଅନ୍ତ ଶାସ୍ତି କଷ୍ଟ ଅମ୍ଭେ ପାଇଲୁ ବରାଟେ
{ ଗୋପ୍ୟ ତେଜି ଅଇଲୁ ଯେବେ ତୋହୋର ନିକଟେ । (କ, ଟ, ଘ)

୧୭୪।୨ ଧର୍ମବାଟ ଗୁଡିଲ ତାତ ଅଗ୍ରେ କଲ ଦ୍ୱନ୍ଦ । (କ, ଟ)

ଭେ ତାତ କଦାପେ ସୋମବଂଶକୁ ଘୁଡାଇକ ଧର୍ମ
ପ୍ରାନ୍ତ କାଳକୁ ଆସିଣ ହୋଇଲା ସାଂଗ୍ରାମ । ୧୭୫ ।
ବଂଶ ନାଶ କଥାକୁ ପଶିଲୁ ଦେବ ତାତ
ତୋହୋର ଥାଆନ୍ତେ ଆମ୍ଭେ ଭଆଇଲୁ ଯେତେକ ଅନର୍ଥ । ୧୭୬ ।
ଯୁଦ୍ଧିଷ୍ଠି ବୋଇଲେ ତାତ ଯେବେହେଂ କହନ୍ତ ବୁଦ୍ଧି
ପ୍ରମାଦ ନ ପଡୁ ତାତ କଥାଏ କର ସନ୍ଧି । ୧୭୭ ।
ଯୁଦ୍ଧିଷ୍ଠିଂକ ବଚନେ ଧୃତରାଷ୍ଟ୍ର କହୁହିଂ ବଚନ ନ ଭାଷି
ତହୁଂ ଦୁଯୋଧନ ଆପଣେ ବଚନ ପ୍ରକାଶି । ୧୭୮ ।
ଆହୋ ଯୁଦ୍ଧିଷ୍ଠି ଆଦ୍ୟହୁଂ କମ୍ଭେ ନ ସମର୍ପିଲୁ ଦୁଇ ରାଶି
ବହୁତ ଧର୍ମ ନାଶ କଲୁ ମନ୍ଦ କୁତ୍ସାନ୍ତ ଅଭ୍ୟାସି । ୧୭୯ ।
ବହୁତ ତୀର୍ଥ ବୁଲିଲୁ ଋଷିମାନଂକର ସଙ୍ଗେ
ଅସମ୍ଭାଳ କରି ମନ୍ଦ ଚଳିଲୁ ଅତି ବେଗେ
ବର୍ଦ୍ଧିତ ଧର୍ମ ନାଶ କରିଛୁ କଅଛ ବଇରାଗେ । ୧୮୦ ।
ରାଗ ସଂଗ୍ରହଣ କାଂକେ ନ କଲୁ ବାବୁ ।
ବ୍ରହ୍ମବ୍ରହ୍ମାଣ୍ଡାଳ କ ମ୍ଭେକଣ୍ଠ ମଣୁ ସବୁ । ୧୮୧ ।
ଅନେକ ଭଆରିଲୁ ସେମାନଂକର ଭୁଲେ
ଧର୍ମ ପ୍ରତିପାଳିଲୁ ପଶିଲୁ ଶତ୍ରୁ ମେଳେ । ୧୮୨ ।
ଯେବେ ଦୁଷ୍ଟଂକର ସଙ୍ଗେ ହୋଇଲୁ ଆସି ପ୍ରୀତି
ଟସକର ଭୁଲେ କ ସାଧୁଂକର ଶୁଦ୍ଧ ମତି । ୧୮୩ ।
ଯୁଦ୍ଧିଷ୍ଠି ଦେବେ ବୋଇଲେ ଶୁଣ ବାବୁ ମାନଟଙ୍କବ୍ରାଣ
ତୁ ମୋହୋର ସୋଦର ମୁଂ ତୋତେ ହୋଇଲି ଅଭ୍ୟର୍ଥୀ । ୧୮୪ ।
ପଡା ପାଞ୍ଚଖଣ୍ଡ ମୋତେ ଦିଅ ହୋ କୁରୁପତି
ଲୋଧ କନ୍ଧ ମହ୍ଲାର ଶବର ପନ୍ତକେ ହୋଉ କନ୍ତି । ୧୮୫ ।
ଆହୋ ମାନଗୋବିନ୍ଦ କଅଛ କରି ପଡା ପାଞ୍ଚଖଣ୍ଡି ପାଇଲେ
ତୋହୋର ମୋହୋର ଭାଇନ୍ତ ପ୍ରୀତିରେ ଦିନ ଯିବ ଭଲେ । ୧୮୬ ।

---

୧୭୮ { ଯୁଦ୍ଧିଷ୍ଠିଂକ ଧୃତରାଷ୍ଟ୍ର ଅନେକ ବାକ୍ୟ ଭାଷି ।
ଆହୋ ଯୁଦ୍ଧିଷ୍ଠି ଆଦ୍ୟହୁଂ ତୋତେ ମୁଂ ସମର୍ପିଲି ଦୁଇରାଶି । (ଝ,ଢ,ଗ,ଛ,ଧ)

କୁରୁପତି ବୋଲଇ ହେ। ମୋତେ ତୁ ନ ବୋଲ ଯେମାନ
ବିନା ଯୁଦ୍ଧେ ତୋତେ ମୁଂ ନ ଦିଅଇ ଯେକ ଗ୍ରାମ । ୧୮୭ ।
ପୁଣ ମାନଗୋବିନ୍ଦଙ୍କୁ ବଚନ ପ୍ରକାଶନ୍ତି କୋପେ
ପଞ୍ଚା ଗୃହଖଣ୍ଡି ବାବୁ ଦେଉ କନା ମୋତେ । ୧୮୮ ।
ବଦନ୍ତି ମାନଗୋବିନ୍ଦ ଶୁଣ ହେ ଯୁଧିଷ୍ଠି
ସାଂଗ୍ରାମ ନୋହିଲେ ନ ଦିଅଇ ଯେକ ଗ୍ରାମ ଗୋଟି । ୧୮୯ ।
ପୁଣ ପୁଣ ଯୁଧିଷ୍ଠି ଦେବ ବହୁତ କାପୁର୍ଣ୍ୟରେ ବଚନ ପ୍ରକାଶି
ବାବୁ ତୋହୋର ମୋହୋର ଦ୍ୱନ୍ଦ ନୋହୁ ପଞ୍ଚା ଗୃହଖଣ୍ଡ ଦେସି ।୧୯୦।
ତୋତେ ଅପ୍ରାଞ୍ଚଯେ ମୋତେ ହୋଇବ ବଡ଼ ବ୍ୟଥା
ମୋତେ ଅପ୍ରାଞ୍ଚଯେ ତୋତେ ଅଯଶ ସର୍ବଥା । ୧୯୧ ।
ଦୁର୍ଯୋଧନ ବୋଇଲା ଯେ ସମର ନୋହିଲେ
ସୂଚ ମୂନେ ପୃଥୀ ଦେଇ ନୋହଇ ମୋର ବୋଲେ । ୧୯୨ ।
ଯୁଧିଷ୍ଠି ବୋଇଲେ ମୁହିଂ ପୃଥୀକ ଧାରଣ
ଯେ ପୃଥୀପାକ ମୁହିଂ କରଇ ରକ୍ଷଣ । ୧୯୩ ।
ଦୁର୍ଯୋଧନ ବୋଇଲା ଯେ ସମର ନୋହିଲେ
ଗ୍ରାମରୁ ଅର୍ଦ୍ଧେକ ନେଇ ତୁଆରୁ ମୋହୋର ନ ବୋଇଲେ । ୧୯୪ ।
ଯୁଧିଷ୍ଠି ବୋଇଲେ ତୁ ସୋଦର ମୋର ହାଦେ
ପ୍ରାର୍ଥନା ନିମନ୍ତେ ପଞ୍ଚା ଖଣ୍ଡେ ମୋତେ ଦେ ଦେ । ୧୯୫ ।
ମାନଗୋବିନ୍ଦ ବୋଇଲା ହେ। ସମର ନ କଲେ
ସୂଚମୂନେ ଦେଇ ନୋହଇ ତୋହୋର ବୋଲେ । ୧୯୬ ।
ଯୁଧିଷ୍ଠି ଦେବ ପୁଣ ବଚନ ପ୍ରକାଶି
ସୋଦର ନିମନ୍ତେ ମୋତେ ପଞ୍ଚା ଖଣ୍ଡିଯେ ଦେସି । ୧୯୭ ।
ମାନଗୋବିନ୍ଦ ବୋଇଲା ସୂଚ ମୂନର ଅର୍ଦ୍ଧ ଯେତେ
ସମର ନ କଲେ ମୁଂ ନ ଦିଅଇ କଦାଚତେ । ୧୯୮ ।
ଯୁଧିଷ୍ଠି ବୋଇଲେ କୁଟୁମ୍ବ ରଖିବାକୁ ଯେବେ ବୁଦ୍ଧି
ଉଚବାଚ ହୋଇଲା ଯେବେ କଥା ହୋଉ ସାଧି । ୧୯୯ ।

---

୧୯୧।୧ ଅପ୍ରାଞ୍ଚଯେ—ପରାଜୟ ଅର୍ଥରେ ।
୧୯୯।୨ କଥା ହୋଉ "ସାଧି" ସ୍ଥାନରେ "ସନ୍ଧି" ପାଠ ଅଛୁ ।

ଦୁର୍ଯୋଧନ ବୋଇଲା ସମରକୁ ଯିବ ହୋଇଲୁ ନିଯତ
ଦନ୍ତରେ ତୃଣ ଘେନି ଶରଣ ପଶ ପଞ୍ଚ ଭ୍ରାତ । ୨୦୦ ।

ତେବେ ସେ ପଞ୍ଚ କଣ୍ଟକେ ହୋଅସି ଆଧିପତି
ଶତେଭାଇ ଘେନି ବନରେ ପଶିବ ଯେ ମୋହୋର ସତ୍ୟ ସତ୍ୟ । ୨୦୧ ।

ତୁ ମଧ୍ୟ ପିଙ୍ଗଳ କର୍କଶ ଅଟୁ ମନ୍ଦ ଜାତି
କୁଳକ୍ଷୟେ ମନ୍ତ୍ରୀ ତୁଲେ ବଢାଇଲୁ ପ୍ରୀତି । ୨୦୨ ।

ମାନଗୋବିନ୍ଦ ବୋଇଲା ଶୁଣସି ଯୁଧିଷ୍ଠି
ବାକ୍ୟ ଦୃଢ଼ ମୋର ମୁଁ କଇଛା ଜଗତ୍‌ଜେଠୀ । ୨୦୩ ।

ଆହେ ନାରାୟଣ ମଧ୍ୟପାଞ୍ଚ ହୋଇ ଅଇଲେ ଯେତେବେଳେ
ଦୂତ ବାକ୍ୟ କରି ମୁଁ କହିଲି ସଭାସ୍ଥଳେ । ୨୦୪ ।

ଯୁଦ୍ଧ ବିନା ପୃଥ୍ୱୀ ନ ଦିଏ ସୂଚି ଭେଦେ ।
ତାହାଂକ ସାକ୍ଷୀ ହୋଇଅଛନ୍ତି ଗୋବିନ୍ଦେ । ୨୦୫ ।

ଯୁଧିଷ୍ଠି ଦେବେ ଶୁଣି ବଚନ ପରକାଶି
ସମରକଇଂ ଯେ ଇଚ୍ଛାକଲୁ ଧର୍ମକଇଂ ନାଶି । ୨୦୬ ।

ଦୁର୍ଯୋଧନ ବୋଇଲା ତୁ ଜିଣିମୁଂ ଯେବେ ମୋତେ
ଏକଛତ୍ରୀ ହୋଇବୁ ତୁ ଯେ ପଞ୍ଚ ପ୍ରଶସ୍ତେ । ୨୦୭ ।

ମୁଂ ଯେବେ ତୁମ୍ଭର ପଞ୍ଚ ଭାଇଙ୍କୁ ପାରଇ ମାରି
ତେବେ ପଞ୍ଚ କଣ୍ଟକେ ହୋଇବି ଅଧିକାରୀ । ୨୦୮ ।

ଯୁଧିଷ୍ଠି ଦେବେ ବୋଇଲେ ଯେବେ ସେ ତୋହୋର ସତ
ସୈନ୍ୟ ସେନାମାନଙ୍କୁ ବାହାର କରି ଦିଅ ସମସ୍ତ । ୨୦୯ ।
ତୋହୋର ମୋହୋର ଯେବେ ହୋଇବା ବିବାଦ
ଅଦୋଷୀ ଲୋକଙ୍କୁ କମ୍ପେ ସମରେ ହାଦେ ଛେଦି । ୨୧୦ ।

ତୁମ୍ଭେ ଶତେ ଭ୍ରାତ ଉଭାର କୁରୁପତି
ଆମ୍ଭେ ଯେ ପଞ୍ଚ ଭାଇ ହେଉ ଏକମୂର୍ତ୍ତି । ୨୧୧ ।

---

୨୧୧।୧ ତୁମ୍ଭେ ଶତେ ଭ୍ରାତ କହନ୍ତେ ହୁଅ କୁରୁପତି । (ଘ, ଙ)

ଆବର ବନ୍ଧୁ ଲୋକଙ୍କୁ ନାଶିବା କସ ଅର୍ଥେ
ଯେତେ ଲୋକ ନାଶଂଗତ ହୋଇବେ କେମନ୍ତେ । ୨୧୨ ।
ତୋହୋର ମୋହୋର ଯେବେ ଜଣିମା ସଂଗ୍ରାମେ
ଜାଣିମା ପାପ ପୁଣ୍ୟ କାହାର ଉଦ୍ଧତ ଧର୍ମେ । ୨୧୩ ।
ଦୁର୍ଯୋଧନ ବୋଇଲା ହୋ ନୋହଇଟି ଯେମନ୍ତ
ଥାଠ ସନ୍ୟ ନ ଥିଲେ ଯୁଦ୍ଧ ନୋହଇ ବହୁତ । ୨୧୪ ।
ମାନଗୋବିନ୍ଦ ତହୁଂ ଯୁଧିଷ୍ଠି ଯେସନେକ ବାକ୍ୟ ଶୁଣି
ଉଠିଲେ ଆସ୍ଥାନ ତେଜ ଯେ ଧର୍ମ ନୃପମଣି । ୨୧୫ ।
ଆମ୍ଭେ କୁରୁକ୍ଷେତ୍ର ମଧ୍ୟେ ଅଛୁଂ ଯେତେ ଯୋଧୀ
ମୁଂ କଥାଏ ପୁଛିବି କହିବା ହୋଉ ମୋତେ ବୁଦ୍ଧି । ୨୧୬ ।
ଯେକ ପିତା ଯେକ ମାତାଉଂ ଜାତ ପଣ୍ଡୁ ଧୃତରାଷ୍ଟ୍ରେ
ତାହାଂକର ନନ୍ଦନ ଆମ୍ଭେ ଅଭିନ୍ନ ଯେକ ଗୃହେ । ୨୧୭ ।
ଯୁଗତେ ଭାଗ ମୋତେ ଯୋଗାଇ ପଞ୍ଚ ସ୍ଥଳୀ
ନ ଦେଇ ମାନଗୋବିନ୍ଦ ମୋତେ ଆରମ୍ଭିଲ କଳି । ୨୧୮ ।
ଅନେକ ଯୋଦ୍ଧାଏ ଯେ ପଡ଼ିବେ ଯେହୁ ଯୁଦ୍ଧେ
ବ୍ରାହ୍ମଣ ଆଦି କରି ପଡ଼ିବେଟି ରଣ ମଧ୍ୟେ । ୨୧୯ ।
ଦୋଷୀ ଅଦୋଷୀ ଯେ ଅନେକ ନାଶଯିବ
ଯେ ହତ୍ୟା ଦୋଷ ପୁଣ କାହାକୁ ଲାଗିବ । ୨୨୦ ।
କଉରବେ ଥାଠରେ ଶୁଭିଲାକ ଶଂଖ ଧ୍ୱନି
ସହୋଦ୍ର ଭାଇଂକ ଭାଗ ନ ଦେଲ କୁରୁମଣି । ୨୨୧ ।
ଆହୋ ଧର୍ମ ନନ୍ଦନ ଯେ ଦୋଷ ନାହିଂଟି ତୁମ୍ଭଂକୁ
ସଂସାର ଜଣିଲୁ ତୁ ଧର୍ମ ଆଶ୍ରିତକୁ । ୨୨୨ ।
ଆକାଶରୁ ବାଣୀ ଯେ କଲେକ ଦେବଲୋକେ
ସାଧୁ ସାଧୁ ଯୁଧିଷ୍ଠି ବୋଲି ପ୍ରଶଂସା କଲେ ବୃନ୍ଦାଅର୍କେ । ୨୨୩ ।

---

୨୧୬।୧ ଆହୋ କୁରୁକ୍ଷେତ୍ର ମଧ୍ୟେ ଅଛୁଂ ଯେତେ ଯୋଧୀ । (ଙ, ଚ, ଥ)
୨୨୧।୧ କଉରବ ଥାଠରେ ଯେ ଶୁଭିଲା ମୁଖଧ୍ୱନି । ( କ, ଘ, ଙ, ନ)
୨୨୨।୨ ଆଗେ ଯେ ଦ୍ୱନ୍ଦକଲା ଦୋଷ ଲାଗିବ ତାହାକୁ । (ଙ, ଛ, ଝ)

କଉରବେ ଥାଠେ ଯୁଧିଷ୍ଠିର ଯେ ତୋଳିଲେ ବେନି ଭୁଜ
ଅଛ ତୁମ୍ଭେ ଯେ ସମସ୍ତ ଦେଶର ମହାରାଜ । ୨୨୪ ।
ଦୁର୍ଯୋଧନ ରାଜା ଯେ ଉପେକ୍ଷା କଲା ଧର୍ମ
ମୋତେ ଭାଗ ନ ଦେଇ ଇଚ୍ଛିଲା ସାଂଗ୍ରାମ । ୨୨୫ ।

ବେନି ଥାଠରେ ମୋତେ ନ ପଡୁ ମନ୍ଦ ବାଚ
ଅପବାଦ ମୋତେ ନ ଦେବା କେହି କଛୁ । ୨୨୬ ।
ଦୁର୍ଯୋଧନ ଥାଠେ ନ ଥାଅ ଯାର ଜୀବନକୁ ଅଛି ଆଶ
ଧର୍ମ ଆଶ୍ରେ କରି ମୋ ବାହୁ ତଳେ ଶରଣ ଆସି ପଶ । ୨୨୭ ।

ଧର୍ମ ଆଶ୍ରେ କର ଜୀବନକୁ ଅଛି ଯାହାର କାର୍ଯ୍ୟ
ଏମନ୍ତେ ବୋଲି ଯୁଧିଷ୍ଠିର ତୋଳିଲେ ବେନି ଭୁଜ । ୨୨୮—୧୪୫୦ ।

## ଦୁର୍ଦ୍ଧର୍ଷ ଶରଣ

ଦୁର୍ଦ୍ଧର୍ଷ ବୋଲି କରି ଦୁର୍ଯୋଧନର ସାନ ଭ୍ରାଥ
ତିନି ସହସ୍ର ଯୋଦ୍ଧା ଯେ ଗଜ ତିନି ଅଶ୍ୱବ୍ରତ । ୧ ।

ଦୁର୍ଯୋଧନର ଥାଠରେ ସେ ହୋଇଥିଲା ଆଗିଆଣି
ଯୁଧିଷ୍ଠିରଂକ ଭୁଜତଳେ ଶରଣ ପଶିଲାକ ଜାଣି । ୨ ।

ଧର୍ମର ନନ୍ଦନ ଯେ ଦେଖି ସାନନ୍ଦେ କୃତ କୃତ
ଦୁର୍ଦ୍ଧର୍ଷ ମସ୍ତକେ ଯୁଧିଷ୍ଠିରଦେବ ଦେଲେ ପଦ୍ମହାଥ । ୩ ।

ଯୁଧିଷ୍ଠିର ଦେବ ବୋଇଲେ ତୋର ପୂରୁ ମନୋବାଞ୍ଛା
ଧୃତରାଷ୍ଟ୍ର କୁଳେ ହୋଇଲୁ ତୁ ରକ୍ଷା । ୪ ।

---

୨୨୪। { ଓହୋବଳ ଥାଠ ଭିତରେ ଯୁଧିଷ୍ଠିର ଯୋଡ଼ିଲେ ବେନି କର
{ ଅଛ ତୁମ୍ଭେ ସନ୍ୟ ସେନା ଅନେକ ଦେଶର ନୃପବର । (ଘ, ଠ, ଧ)

୨। ୨ ଯୁଧିଷ୍ଠିରଂକ ଶରଣ ପଶିଲା ଜୀବନକୁ ଆଶ ଜାଣି । (ଙ, ଝ)

୪। ୨ { ଧୃତରାଷ୍ଟ୍ର ବଂଶକୁ ବାବୁ ତୁହି ସେ କଲୁ ରକ୍ଷା । (ଘ, ଝ, ଠ, ଡ)
{ ଧୃତରାଷ୍ଟ୍ର ବଂଶରେ ଯେ ହୋଇବୁ ତୁ ରକ୍ଷା । (ଓ, ଥ, ନ)

ଯେତେକାଳ ପର୍ଯ୍ୟନ୍ତ ମୋର ଆୟୁ ଥିବ ବାବୁ
ବେନକୁଳ ମଧ୍ୟେ ଭୁ ଝିଙ୍କବା ହୋଇବୁ । ୫ ।
ଦୂରେଣ ଦେଖିଲେ ପାଣ୍ଡବ ବଳ ସେନା
ଶଙ୍ଖ ଉଚ୍ଚ ଶରଣ ପଞ୍ଜର ବୋଲି ରଥେ ଉଡାଇଲେ ବାନା । ୬ ।
ଦର୍ପ ମଳଣ ହୋଇଲେ କଉରବେ ସଇନ
ସାଧୁ ସାଧୁ ପାଣ୍ଡବେ ବୋଲି ଶୁଭିଲା ମୁଖଧ୍ୱନ । ୭ ।
ଶକୁନ ବୋଇଲା ହୋ ଶୁଣିମା ମାନଚକ୍ରବର୍ତ୍ତି
କେମନ୍ତ ପ୍ରାଏ୍ଁ ମଣିଲୁ ଭାଇ ଦୁର୍ଦ୍ଧରର ପ୍ରକୃତି । ୮ ।
ସିଂହକୁ ଛାଡି ଯାଇଂ ଶ୍ରିକାଳ ଆଶ୍ରେ କଲା
ପୁଷ୍କରଣୀ ପାଇଂ ସେ ସାହେର ତେଜିଲା । ୯ ।
ଜୟଶଂଖ ଶବଦ ଯେ କଲେକ ଚକ୍ରପାଣି
ଶୁଣିଣ ମାନଗୋବିନ୍ଦ ହୃଦୟ ହୋଇ ହାଣି । ୧୦ ।
ସ୍ୱେଷଭରେ ଆଗ୍ୟାଂ ଯେ ଦେଲେକ ଶକୁନ
ଦୁର୍ଦ୍ଧଷକୁ ଗୋଡାଇ ଧରରେ ସୈନ୍ୟକ୍ଷଣି । ୧୧ ।
ମନ୍ତ୍ରୀର ବଚନେ ଯୋଦ୍ଧାଏ୍ଁ ବେଗେ ଉଠି
ଗଜ କୋନ୍ତ ନାରାଜ କରେ ଅସିପଟ୍ଟ ଯାଠି । ୧୨ ।
ଯେସନେକେ ବାରିନିଧି ପ୍ରଳୟେ ଉଲ୍ଲୋଳ
ଦୁର୍ଦ୍ଧଷ ମାର ବୋଲି ଧାମନ୍ତି ଶହସ୍ରନ୍ତ ଚୋଳ । ୧୩ ।
ରଥ ଗଜ ଅଶ୍ୱ ଧାମନ୍ତି ଯେ ସୈନ୍ୟକମୁଖେ
ଦୁର୍ଦ୍ଧଷ ଯୁଧେଷ୍ଟିଂକ ବେଢିଲେ ଯୋଦ୍ଧା ଲକ୍ଷେ । ୧୪ ।
ଦୂରେଣ ଦେଖିଲା ରାଜା ମାନଚକ୍ରବର୍ତ୍ତୀ
ଯୁଧେଷ୍ଟିଂକ ମାର ବୋଲି ଡାକିଲା କୁରୁପତି । ୧୫ ।
ଦେଖିଣ ଆଶ୍ରିଯ ଯେ ହୋଇଲେ ଧର୍ମରାଏ୍ଁ
ବାରଣ ବୋଲି ନ ମେଣ୍ଟିଲା ପଡିଲା ଅପଚଏ୍ଁ । ୧୬ ।

---

୭।୨ ସାଧୁ ସାଧୁ ପାଣ୍ଡବେ ବୋଲି ଶୁଭିଲା ଶଙ୍ଖଧ୍ୱନ । (ଝ, ଥ, ଡ)
୯।୧ ଗଜବୃନ୍ଦ ତେଜିଲା ଶ୍ରିକାଳବୃନ୍ଦ ଆଶ୍ରେ କଲା । (ତ, ଚ)
୯।୧ ଶ୍ରିକାଳ—ଶୃଗାଳ, ୯।୨ ସାହେର—ସାଗର ।
୧୩।୧ ଉଲ୍ଲୋଳ—ଉଲ୍ଲୋଳ, ବଡ ଢେଉ ଉଠିବା ।

ସାଧୁ ରେ କ୍ଷମା ମୋତେ ବାଣ୍ଟିଲୁ ଆସନ୍ତେ
ନର୍ଖ ବୋଲା ନ୍ତ ଯେ ଅବଶ୍ୟ କଲା ତୋତେ । ୧୭ ।
ଆହେ ବୁଧଜନେ ଜ୍ୟେଷ୍ଠ ହୋଉ କ କନିଷ୍ଠ ହୋଉ
ବାରଣ ବୋଲ ମେଣ୍ଟିଲେ ଅପବାଦ ପଡଇ ତହିଁ । ୧୮ ।
ଯୁଧିଷ୍ଠିରଙ୍କ ବରଘ ଦେଖି ଗାନ୍ଧାରୀର ବଣ୍ଟି
ମୋହୋର ଥାଆନ୍ତେ ତୁମ୍ଭର କାହାକୁ ଭୟେ ଅଛି । ୧୯ ।
ଗାନ୍ଧାରୀ ନନ୍ଦନ ଯେ କରେ ଧନୁ ଧରି
କଉରୋବ ଥାଠକୁ ଧାମଇଂ ଆଗ ସରି । ୨୦ ।
ଭୁଲେଣ ଅଛନ୍ତ ତାହାର ତନ ଅନ୍ଧବ୍ରତ ଯୋଧୀ
ଯେକମୁଖ ହୋଇଣ ସେ ଅବଳୁନ୍ତେ ବାଣ ବନ୍ଧି । ୨୧ ।
ଯୁଧିଷ୍ଠିର ଦେବ ସୁମରଣା କଲେ ଶ୍ରୀ ସର୍ବ ମଙ୍ଗଳେ
ତୁ ମୋତେ ପ୍ରସନ୍ନ ହୋଅସି ଯେତେବେଳେ । ୨୨ ।
ଜୟ ଜୟ ହିରଣ୍ୟ ନିସୂଦନ କାମାକ୍ଷୀ
ପ୍ରଳୟ ଉଦ୍ଧାରଣୀ ମା ଗୋ ତୁହି ସେ ସର୍ବ ସାକ୍ଷୀ । ୨୩ ।
ମଳୟ ବସନ୍ତ ପବନ ରୁଚିର ଶରଦ ଶଇଳ
ତି ଭୁବନେ ବିଜୟ ଗୋ କରୁ ସର୍ବକାଳ । ୨୪ ।
ଡାକ ଡମ୍ବରୁ ଶବଦେ ମା ଗୋ ସର୍ବଦା ମତ୍ତ ଖେଳ
ସିଂହ ପିଠିରେ ବିଜୟେ କରୁ ସର୍ବକାଳ । ୨୫ ।
ପରମ ସାଧବୀ ଗୋ ପରଦୁଃଖେ ଦୁଃଖୀ
ତୋହୋର ପ୍ରସନ୍ନେ ସିନା ବ୍ରତନ୍ତ ନରମାଖୀ । ୨୬ ।
ପରମ ମାହେଶ୍ୱରୀ ମା ଗୋ ପ୍ରସନ୍ନେ ହିଙ୍ଗୁଳା
ସର୍ବସିଦ୍ଧ କର ମା ଗୋ ତୁ ହେ ସର୍ବ ମଙ୍ଗଳା । ୨୭ ।
ଜଗତ ଜନ ତାରେଣୀ ଗୋ ଭଗତ ଜନ ବନ୍ଦନୀ
ମହାଭୟ ନିବାରଣୀ ଗୋ ଦୁର୍ଗତି ନାଶିନୀ । ୨୮ ।

---

୨୦।୨ କଉରେବ ଥାଠକୁ ଧାମଇଂ ସେମାନେ ବହମକେଶରୀ । (ଙ, ଛ, ଝ,)

୨୮ { ଜଗତ ଜନ ମୋହନୀ ଭଗତ ଜନ ମନ ରଞ୍ଜି ।
( ସଂକଟ ତାରଣୀ ଗୋ ଦୁର୍ଗନ୍ତେକ ବଳଗଞ୍ଜି । (କ, ଙ, ଝ,)

୨୪।୧ ରୁଚିର—ମନୋଜ୍ଞ, ମନୋହର, ସୁନ୍ଦର ।

ଦୁଷ୍ଟ ଜନ ନସୂଦନୀ ଗୋ ସନ୍ଥ ଜନ ପ୍ରତିପାଳ
ପଣ୍ଡିତ ଜନମାନଂକର ହୃଦୟେ ପୁଷ୍ପମାଳ । ୨୯ ।
ସମର ସମ୍ଭବେ ଗୋ ମାତଙ୍ଗୀ ଅଭୟା
ସମୂଳ ସଙ୍କଟ ଫେଡୁ ଗୋ ମାତଙ୍ଗୀ ମହାମାୟା । ୩୦ ।
ଶ୍ରୀଚଣ୍ଡୀ ସାରଳା ଗୋ ଜଙ୍ଗେର ପୁର ବାସୀ
ଦୁର୍ଗତ କାଳେ ଫେଡୁ ଗୋ ମୋହ କାଳଫାଶି । ୩୧ ।
ଭିକ୍ଷୁକ ନିର୍ଧନ ମା ଗୋ ଯେବଣ ଦୁଖୀ ଜନ
ତୋହୋର ପ୍ରସନ୍ନେ କଷ୍ଟ ପାର ପାଇଛି ବହନ । ୩୨ ।
ଧନଜନ ସମ୍ପଦ ଯେ ଆୟୁ ଦେଉ ଭୁଞ୍ଜି
ତୋହୋର ପଦ୍ମପାଦେ ଯେବଣ ଜନ ଧାୟି । ୩୩ ।

---

୨୯ "ପଣ୍ଡିତ ଜନମାନଂକର ହୃଦୟେ ପୁଷ୍ପମାଳ ।" ପାଠ ପରେ 'ଘ' ପୋଥିରେ ଅଧିକ ପାଠ:—
ଶରଣ ସମ୍ଭାଳଣୀ ଗୋ ମାତଙ୍ଗୀ ଅଭୟେ ।
ସମୂଳ ଜନନୀ ଗୋ ପାଳେଣୀ ମହାମାୟେ ।
ଶ୍ରୀଚଣ୍ଡୀ ସାରଳା ଗୋ ଜଙ୍ଗେର ପୁର ବାସୀ
ଦୁର୍ଗତ କାଳେ ଫେଡୁ ଗୋ ମୋହ ଜଳଫାଶି ।
ଅପୁତ୍ରିକ ପୁତ୍ର ଦେଇ ଅନ୍ଧରେ ଚକ୍ଷୁଦାନ
ବ୍ରାହ୍ମ୍ୟକଷ୍ଟ ଫେଡୁ ଗୋ ଖଣ୍ଡୁ ଅପମାନ ।
ବ୍ୟାଘ ହାତରୁ ମାତା ଗୋ ନେଉ ପାଣ କରି
ଖପିଲ ଭେଳା ଗୋଟି ବାମକରେ ଧରି ।
ଦ୍ରବ କରୁ ଦାରୁ ଗୋ ତୃଣ କରୁ ମେରୁ
ଅପଚଂସ୍ୱ କାଳେ ପ୍ରାଣୀକ ରୁହ ସେ ଉଦ୍ଧରୁ ।
କନକାବତୀ ପାଟଣା ଚନ୍ଦ୍ରଭାଗା ନଦୀ ତୀର
ସେ ସ୍ଥାନ ସୁଖ ଦେଖି ଯେ ବସିଲୁ ନିର୍ଭର ।
ମହା ଯୋଗେଶ୍ୱରୀ ଗୋ ସର୍ବଦେ ମଙ୍ଗଳେ
ତେଣୁ ନାମ ଗୋଟି ଗୋ ଚଣ୍ଡଲ ମୁହିଂ ଭଲେ ।
ଶ୍ରୀଚଣ୍ଡୀ ସାରଳା ଚରଣେ ମୁହିଂ ଦାସ
ବୋଲନ୍ତି ଶୂଦ୍ର ମୁନି କବି ସାରଳାଦାସ ।

ବଦସ୍ପୃଷ୍ଟ ବୃଦ୍ଧକାଳେ ସାରେଳ ଚଣ୍ଡୀ ଦାସ
ଶୂଦ୍ରମୁନ ସାରେଳ ଦାସ ଜନ୍ମେ ଜନ୍ମେ ଅଭ୍ୟାସ । ୩୪-୧୪୮୪ ।

## କୌରବ ବଳ ସହ ଦୁର୍ଦ୍ଦକ୍ଷର ଯୁଦ୍ଧ ଓ ତାର୍କ୍ଷୀ ପକ୍ଷୀର ଡ଼ିମ୍ବ ଘଣ୍ଟତଳେ ରକ୍ଷା

ଶୁଣ ବଇବସ୍ୱତ ମନୁ ବଦସ୍ପୃଷ୍ଟ ଅଗସ୍ତି
ଶୁଭ ମଙ୍ଗଳ ଦେଖିଲେ ଯୁଦ୍ଧେଷ୍ଟି ନୃପତି । ୧ ।
ସର୍ବ ମଙ୍ଗଳା ନାମ ସନ୍ତୁଂ ହୃଦଗତେ ଅଭ୍ୟାସି
ଜୟ ଜୟ ଶବଦ ଯେ କଲେ ସ୍ୱର୍ଗବାସୀ । ୨ ।
ଅଦଭୂତେ ଶବଦ ସନ୍ତୁଂ ଶୁଭିଲା ହୁଳହୁଳି
ଶ୍ରୀଭୁଜେ କନ୍ୟାପ୍ରେ ଯେମନ୍ତ ଯେ ଅର୍ଘ୍ୟଥାଳୀ । ୩ ।
ଶୂନ୍ୟେଣ ଉଡ଼ିଲା ଯେ ଉଦ୍ଧାଳେକ ପକ୍ଷୀ
ଉତ୍ତରେଣ ଦେଖିଲେ ଦେବୀ ଯେ କାମାକ୍ଷୀ । ୪ ।
ଓହୋବଳ ଥାଠରେ ଶୁଭିଲା ଶଙ୍ଖଧ୍ୱନି
ଯୁଦ୍ଧେଷ୍ଟି ଆଗ୍ୟାଂ ହଲେ ଉଠ ରେ ଥାଠ ଯେନ । ୫ ।
ଯୁଦ୍ଧେଷ୍ଟିଙ୍କ ବଚନେ ଦୁର୍ଦ୍ଦକ୍ଷ କୋପ ମନ
ସତୁର ସହସ୍ର ବଳ ଧନୁ ବହଇ ଗାନ୍ଧାରି ନନ୍ଦନ । ୬ ।
କୋଣେ ଶଙ୍ଖତଳ ପକ୍ଷୀ ନାରଜ କ୍ଷୀଷମ୍ନା
କନ୍ଦନ୍ତେଣ ଗିରବର ଫୁଟିଯାନ୍ତ ସେହ୍ଲା । ୭ ।
ଅଣି ସହସ୍ର ନାରଜ ଦୁର୍ଦ୍ଦକ୍ଷ ପ୍ରବେଶଇ ବେନ କୋଣେ
କଉରେବ ଥାଠକୁ ସେ ଯୋଟିଲା ପ୍ରେକା ଜଣେ । ୮ ।
ତିନ ଅକ୍ଷୁଗ୍ରତ ଯୋଦ୍ଧା ତାହାର ପିଠି ରକ୍ଷା
ପ୍ରଚଣ୍ଡ ବଳୀର ପ୍ରାପ୍ୟେ ଦଶଇ ଗାନ୍ଧାରୀର ବତ୍ସା । ୯ ।

---

୫।୧ ଓହୋବଳ ଥାଠରେ ଶୁଭିଲା ମୁଖଧ୍ୱନି । (ଖ, ଧ, ଡ, )
୭।୨ କନ୍ଦନ୍ତେ ଗିରବର ହକଲନ୍ତ ପଡନ୍ତ ସନ୍ୟ ସେହ୍ଲା (ଝ, ଘ)

ମଦାନ୍ଧକା ବିବାଦେ ଯେହ୍ନେ ଅସ୍କନ୍ଦ ବିକାଶି
ଦୁର୍ଦ୍ଧର ମହିମା ତେସନେ ପରକାଶି । ୧୦ ।
ବିନ୍ଧିଲେ ନାରାଚ ଯେ ହୋଇଲେ ପ୍ୟୂକମୁଖ
ଅଶି ସହସ୍ର ଯୋଦ୍ଧା ଯେ ଲଂକଆ ତେଜ ଶାଖ । ୧୧ ।
କରମଣ୍ଡଳ ଦେଶର ରାଜା ମାଧବ ଯେ ସେନ
ତାହାର ଭୁଲେ ମଇନ୍ଦ ରାଜା ଦ୍ରଯୋଧନ । ୧୨ ।
ମଇନ୍ଦ ବନ୍ଧାଇ ହୋଇଛି ସେ ପ୍ରୟାଗ ବଟ ତୀର୍ଥେ
ପୃଥୀରେ ଅଭିନ୍ନ ତାକୁ ନ ଦେଖଇ କୁରୁନାଥେ । ୧୩ ।
ମର୍ଦ୍ଭୂତେକ ଯୋଦ୍ଧା ଯେ ଚଢିଲେ ମତ୍ତନାଗ ପିଠି
ବାମକରେ ଅସିଫଳ ଡାହାଣ କରେ ଯାଠି । ୧୪ ।
ଜଳଧର ସେ ଯେହ୍ନେ ବିଜୁଳି ତେଜ ଝଳ
ଅଗ୍ନିବାଣ ନାରାଚ ମାରନ୍ତି ଶୀଘ୍ରେ ଟୋଳ । ୧୫ ।
ଆଗିଆଣି ଥାଟେ ମାଧବସେନ ନୃପତି
ଦୁର୍ଦ୍ଧର ଭୁଲେ ସମରେ ମିଳିଲା ତତ୍ତତି । ୧୬ ।
ରେ ରେ କାର ଶବଦେ ଦୁର୍ଦ୍ଧଷ ବୀର ଉଠି
ମାଧବସେନ ରାଜାକୁ ପ୍ରହାର କଲା ଯାଠି । ୧୭ ।
ସେ ମାଧବସେନ ରାଜା ଆରୋହି ଥିଲା ଲୋହିତ ବର୍ଣ୍ଣ ଗଜେ
କଣ୍ଠ ଭୂଷଣ ଶରୀରେ ଡାଳମ୍ବା ଚାମର ତହିଂ ସାଜେ । ୧୮ ।
ସେ ଗଜ କୁମ୍ଭ ସ୍ଥଳରେ ପଡିଲା ତୀକ୍ଷ୍ଣ ମୁନା
ପ୍ୟୂକା ପ୍ରହାରକେ ପଡିଲେ ମାହୁନ୍ତ ଗଜ ସେହ୍ନା । ୧୯ ।
ଭୁଜ ଦର୍ପେ କଟାକ ତୋଳିଲା ଅନ୍ତରୀକ୍ଷେ
କୁରାଳ ଚନ୍ଦ୍ର ପ୍ରାପ୍ୟୂକ ବୁଲାଇଲା ପ୍ରତକ୍ଷେ । ୨୦ ।
ମାଧବସେନ ଦେଖିଲା ଦୁର୍ଦ୍ଧର ମହିମା
ଦେଖିଣ ଆଶ୍ରିଯ ହୋଇଲେ ଭୀଷ୍ମ ଦ୍ରୋଣ କୃପବ୍ରହ୍ମା । ୨୧ ।

---

୧୨।୧ (କର୍ଣ୍ଣ ମଣ୍ଡଳ, କୁଣ୍ଡଳ ଦେଶ, କଉଣ୍ଡଳ, କନାଉଜ ପ୍ରଭୃତି ଦେଶମାନଙ୍କର ନାମ ପାଠାନ୍ତର ଅଛି । )

୨୧।୧ ଓଦ୍ଦୋବଳ ଥାଟେ ଦେଖିଲେ ଦୁର୍ଦ୍ଧର ମହିମା । (ଗ, ଙ, ଛ, ଝ, ଜ )

ଅନ୍ତସାଙ୍କେ ଗଦା ଧରି ସେ ଉଠିଲା ଗଳଗାଜ
କୁରୁପତିର ଯୋଦ୍ଧାଙ୍କୁ ଦେଖି ପଳାଇଲେ ଭାଜି । ୨୨ ।
ମାଧବସେନ ରାଜା ଚଢ଼ିଥିଲା ଯେବଣ ମତ୍ତ ହାଥୀ
ସେ ହାଥୀକ ଦୁର୍ଦ୍ଧକ୍ଷ ଫିଙ୍ଗି ଦେଲାକ ଉଡନ୍ତି । ୨୩ ।
ବୁଲାଇ ଫିଙ୍ଗି ଦେଲା ଗଜ ମାହୁନ୍ତ ସହିତେ
ମାନଗୋବିନ୍ଦ ଗୁମ୍ଫରେ ଯାଇଂ ପଡ଼ିଲା ନରନାଥେ । ୨୪ ।
ଦେଖିଣ ବିସ୍ମୟେ ହୋଇଲା କୁରୁପତି
ସୋଦର ଗୁଡ ଶବ୍ଦରେ ଶରଣ ପଶିଲୁ ତୋହୋର ମନ୍ଦଗତି । ୨୫ ।
ବୁଡ ନ ମଲୁ କର୍ମେ ଭୁମି ରେ କୁଳମଲି
ଦୁର୍ଦ୍ଧକ୍ଷ ହୋଇଲା ମୋର ବଂଶକୁ ହାଦେ ଶଲ । ୨୬ ।
ଆହୋ ଦଇବ ବୋଲି ସେ ବୋଲଇ କୁରୁପତି
କାଳେ ସୋଦର ମୋତେ ପାଞ୍ଚିଲା ଅଗତି । ୨୭ ।
ମୋତେ ଗୁଡଣ ଶବ୍ଦରେ ପଶିଲୁ ଶରଣ
ବଳ ବୀର୍ଯ୍ୟ ମୋର ଯେତେବେ ଗଲା ଅକାରଣ । ୨୮ ।
ମୋହୋର କାର୍ଯ୍ୟ ଅର୍ଥେ ମିତ୍ର ମୋର ମଲା
ଯେତେ ଦୁର୍ଦ୍ଧକ୍ଷ ମୋତେ ଯେତେକ କୃତ୍ୟ କଲା । ୨୯ ।
ଅନେକ ବିସରଲେ କର୍ଣ୍ଣ ଶକୁନି ସହିତେ
ସହୋଦର ଗୁଡ ଶବ୍ଦ ତୁହ୍ନିଂ ଶରଣ ପଶିଲୁ କେମନ୍ତେ । ୩୦ ।
ଶରଣ ପଶିଣ କଲା କେତେ କୃତ୍ୟେ
ବହୁତ ହିଂସାସ ବଚନ ବୋଲନ୍ତି ସମସ୍ତେ । ୩୧ ।
ଦୁର୍ଦ୍ଧକ୍ଷର ସଇନ ଯେ ପଶିଲେ ଗଳଗାଜ
ମାଧବସେନର ସନ୍ୟ ପଳାଇଲେ ଭାଜି । ୩୨ ।
ସିଂହ ଦେଖିଣ ଯେହ୍ନେ ପଳାବନ୍ତି ଗଜଯୁଥେ
ଦୁର୍ଦ୍ଧକ୍ଷର ପ୍ରହାରନ୍ତେ ଲୋଟନ୍ତି ଗଜ ଅଶ୍ୱ ରାଉତେ । ୩୩ ।

---

୨୨।୧ ଅନ୍ତସାଙ୍କେ ବୁଲାଇ ପିଟିଲା ଗଳଗାଜ । ( ଙ, ଝ, ଛ)
୨୬।୨ ଶଲ—ବାଧା, ବିଘ୍ନ, ଶଲ୍ୟ, କଣ୍ଟକ, ଅନିଷ୍ଟକାରୀ ବ୍ୟକ୍ତି ।

ଅସମ୍ଭାଳ ହୋଇଣ ଯେ ପଳାବନ୍ତ ସଇନ
ପୁଣିହିଂ ଦୁର୍ଦ୍ଧର୍ଷ ପ୍ରହାରେ ପଡିଲେ ସେନାପତି ତିନ । ୩୪ ।
ମାଧବସେନର ପୁତ୍ର ଜୟେ ଯେ ଝଜୟେ
ଆବର ହରିହର ବୋଲି ବେନି ଯେ ତିନଯେ । ୩୫ ।
ଏମନ୍ତ ସ୍ୱଜନଣ ଅଟନ୍ତି ସହୋଦର ଅଭିନ୍ନେ
ବହୁତ ସମର କରି ସେ ବଞ୍ଚିଲେ ଗହନେ । ୩୬ ।
ଦୁର୍ଦ୍ଧର୍ଷର ମହିମା ଯେ ଓହୋବଳେ କହି
କେଶରୀ ଘ୍ରୁମୁରେ କାହିଂ ଯେ ଗଜ ଯୂଥେ ରହି । ୩୭ ।
ବେନି କୁନ୍ତ ଧରି ଯେ ବୁଲାଇ ବେନି କରେ
ଧାଡିକାରେ ପିଟିଲା ସେ ଦୁହିଂକର ଉପରେ । ୩୮ ।
କୁନ୍ତର ଝଘାତେ ହେ ଦୁହିଂକର କାୟେ ଫୁଟି
ଗଜ ମାହୁନ୍ତ ଯୋଦ୍ଧାୟେ ପଡିଲେ ମହୀ ଲୋଟି । ୩୯ ।
ପୁଣି ପ୍ରହାରକେ ଯେ ପଡିଲେ ହରିହର
ବେନି ଶତ ଯୋଦ୍ଧା ପଡିଲେ ତାହାଂକର ସଙ୍ଗତର । ୪୦ ।
ରୁଧିରେ କର୍ଦ୍ଦନ ହୋଇଲା ସବୁଂକର କାୟେ
ଶରୀର ଦଶିଲା ଯେ କଂଶୁକ ପୁଷ୍ପ ପ୍ରାୟେ । ୪୧ ।
ବଡାଇ ଦୁରାପଦ ଯେ କଉରବଂକ ଭ୍ରାଥ
ଦେବଂକୁ ଦୁଲଭ ନୁହେ ଯେବଣ ସମର ଅପ୍ରମିତ । ୪୨ ।
ଧୃତରାଷ୍ଟ୍ରର ନନ୍ଦନ ଦୁର୍ଦ୍ଧର୍ଷର ଦୁସହ ଯେ କଥା
ଦେଖିଣ ଆଶ୍ରିଯ ହୋଇଲେ ସ୍ୱର୍ଗେ ସକଳ ଦେବତା । ୪୩ ।
ପବନ ଗତି କରି ଝଞ୍ଜନ୍ତେ ଶର ଘାୟେ
ପଡିଲେ ମହୀଲୋଟି ଅନେକ ଦେଶ ରାୟେ । ୪୪ ।
ସଇନ ଭଗ୍ନ ଦେଖିଣ ମାନ ଯେ ଗୋବିନ୍ଦ
ବହୁତ ଝସରିଲା ରାଜା କପାଳେ କରି ଧିନ୍ଦ । ୪୫ ।

---

୩୪ { ବେନି କରେ ବେନି କୋନ୍ତେ ବୁଲାଇ ଧାଡକାରେ
ଅତି ବ୍ୟଗ୍ରେ ଉଠି ପିଟିଲା ଦୁହିଂକର ଉପରେ
ଦୁଇ ସହସ୍ର ଯୋଦ୍ଧା ପଡିଲେ ତାହାଂକ ସଙ୍ଗତରେ । ( ଅ, ଧ )

୪୫।୨ ଧିନ୍ଦ, ଧନ୍ଦ, ଦ୍ୱନ୍ଦ ପ୍ରଭୃତି ପାଠ ଅଛି ।

ପ୍ରଥମ ଯୁଦ୍ଧହୁଂ ଅପ୍ରାଞ୍ଜସ୍ୱେ ନଶିଲା ସବୁ କାର୍ଯ୍ୟ
ଧର୍ମ ଅପଚସ୍ୱେ ହୋଇଲା ମୋତେ ଆଜ । ୪୬ ।
ପ୍ରଥମ ଯୁଦ୍ଧ ବ୍ୟର୍ଥ ଦେଖିଲା ସନ୍ଧୁଂ ରଣେ
ଅଶିଲକ୍ଷ ଯୋଦ୍ଧା ଯେବେ ଉଠିଲା ଆପଣେ । ୪୭ ।
ଦୁର୍ଦ୍ଧକ୍ଷ ସନ୍ନିଧେ ବଳସ୍ୱେ ମାନଚକ୍ରବର୍ତ୍ତୀ
ଆରେ ଆରେ ସୋଦର ହୋଇ ମୋର,ମୋତେ କଲୁ ସ୍ୱେତେକ ଅମାନ୍ତ ।
ଆଜ ତୋର ପାଞ୍ଚି ପୋଟ୍ଟିଲା ନାଶକର
ଇଷ୍ଟ ଦେବତା ତୋର ସୁମର ରେ ପାମର । ୪୯ ।
ଦୁର୍ଦ୍ଧକ୍ଷ ବୋଇଲା ତୁମ୍ଭେ ପରମାନନ୍ଦ ସ୍ୱାମୀ
ସୋମବଂଶ ଉଦ୍ଧାରଣ ରାଜ୍ୟକୁ କାରେଣୀ । ୫୦ ।
ଯାବନ୍ତ ଜବର ଜଗନ୍ନାଥ ସ୍ୱାମୀହିଂ ସେ ମୂଳ
ତାହାଂକର ପ୍ରସନ୍ନେ ବ୍ରତନ୍ତ୍ର ସ୍ୱେ ଜନ ସମୂଳ । ୫୧ ।
ପାଣ୍ଡବ କୁଳକୁ ସେ ଆବୋରଛନ୍ତ ସବୁ ।
ଶତ୍ରୁବନ୍ତ ହୋଇଣ ତୁ କସ ଯେ କରିବୁ । ୫୨ ।
କଂସ କେଶୀ ଅଷ୍ଟମଙ୍କ ତୁଲେ ଜାବ ନାରକା ନାଶି
ତାହାର ତୁଲେ କମ୍ୱେ ବିବାଦ କଲୁସି । ୫୩ ।
ଶାଲୁ ବଜ୍ରନାଭ ହିରଣ୍ୟ ହିରଣାକ୍ଷ
ରାବଣ କୁମ୍ଭକର୍ଣ୍ଣ ଇନ୍ଦ୍ରଜିତ ରାକ୍ଷସ । ୫୦ ।
ମାସ୍ତାସୁର ମୋଡାସୁର ଆବର ବଇଲୋଚନ
ଅନେକ ଦୈତ୍ୟ ନାଶି ଥାପିଲେ ସନ୍ଥଜନ । ୫୫ ।
ଋଷି ଯଜ୍ଞ ରକ୍ଷଣେ ସେ ନାମ ହୃଷୀକେଶି
ଯେତେ ଅସୁର ନାଶିଲେ କେ କହୁ ବିଶେଷି । ୫୬ ।
ଅନ୍ତ ସେନେହେ ହରି ପାଣ୍ଡବନ୍ତ ଆବୋରି
ସ୍ୱେହାଂକର ତୁଲେ କିନା ତୁମ୍ଭେ ସଂଗ୍ରାମ କରି । ୫୭ ।

---

୪୬।୧ ଅପ୍ରାଞ୍ଜସ୍ୱେ—ପରାଜସ୍ୱ ଅର୍ଥରେ ପ୍ରସ୍ୱୋଗ ହୋଇଅଛି ।

ଅର୍ଜୁନର କରେ ତୁ ଶଙ୍ଖ ଚକ୍ର ଚହ୍ନ ଦେଖ
ଧ୍ୱଜେ ହନୁମନ୍ତ ଯାହାଂକର ସାର୍ଥୀ । ୫୮ ।
ତେତିଶ କୋଟି ଦେବେ ଅଛନ୍ତି ଯାହାର ରଥେ
ତୁ ତାହାକୁ ଜିଣିମାକୁ କେବଣ ଶକତେ । ୫୯ ।
ଯେବେହେଂ ମୋହୋର କଥା ଶୁଣ ଦୁର୍ଯୋଧନ
ପଞ୍ଚୁ ଗ୍ରାମ ଦେଇ ପାଣ୍ଡବନ୍ତ କରିବା ସମାଧାନ । ୬୦ ।
ଜଗନ୍ନାଥଂକୁ ସେବା ଯେ କରିଥିବା ଶତେ ଭାଇ
ସୁପ୍ରେଣ ଥିବା ପଞ୍ଚୁ କଟକେ ରାଜା ହୋଇ । ୬୧ ।
ଯଦ୍ୟପି ପାଣ୍ଡବନ୍ତ କରିବୁ ଆମ୍ଭେ ବିବାଦ
ଅନେକ ହତ୍ୟା ପଡ଼ିବ ତୋହୋର ପରମାଦ । ୬୨ ।
ଦୁର୍ଦ୍ଦକ୍ଷ କହୁଂ କହୁଂ କୋପିତ ମହାରାଯେ
କୋପେଣ ଗର୍ଜଇ ରାଯେ ମତ୍ତନାଗ ପ୍ରାୟେ । ୬୩ ।
ଭୁଲେ ମାକଗୋବିନ୍ଦର ଦଶଲକ୍ଷ ଯୋଧୀ
ଧର୍ମ ଉପେକ୍ଷି ଦୁର୍ଦ୍ଦକ୍ଷକୁ ଯେକମୁଖେ ଶର ବନ୍ଧ । ୬୪ ।
ଦେଖ ହୋ ପ୍ରତଗ୍ୟାଂ ସେ ଦୁର୍ଦ୍ଦକ୍ଷ ଶସ୍ତ୍ରଧାରୀର କଥା
ଦଶଲକ୍ଷ ଯୋଦ୍ଧାନ୍ତ ସେ ଯେକା ହୋଇଅଛୁ ଶକତା । ୬୫ ।
ଅନେକ ଶର ଆଧାନ କରଇ କୁମର ଦୁର୍ଦ୍ଦକ୍ଷ
ରାଜଲେ କୁରୁଥାଟ ହୋଇଣ ନିରେଖ । ୬୬ ।
ସମରେ ଗୋଳ ଯହୁଂ ବାଜନ୍ତି ଚହଳ
ଜଗନ୍ନାଥେ ବୋଇଲେ ହନୁ, ଥାଟେ ହୋଇଲା କସ ଗୋଳ । ୬୭ ।

---

୫୮ { ଅର୍ଜୁନର ହାଥେ ମୁଂ ଶଙ୍ଖଚକ୍ର ଦେଖିଲି
ରଥରେ ବସିଛୁ ହନୁମନ୍ତ ମହାବଳୀ ( ଥ, ଧ, ନ )

୫୮ { ଅର୍ଜୁନ ରଥେ ସାରଥି ପଣେ ଶଙ୍ଖଚକ୍ର ଚହ୍ନ ଦେଖ ।
ଧ୍ୱଜେ ହନୁମନ୍ତ ଯେ ହୋଇଅଛୁ ସାକ୍ଷ । (ଝ,ତ)

୬୦ { ହେ ସ୍ୱାମୀ ମୁହିଂ ଭୁମ୍ଭନ୍ତ ଯେବେ କରୁଅଛୁ ଦଇନ
ଅର୍ଦ୍ଧ ରାଜ୍ୟ ଦେଇ ତାଂକୁ କରିବା ସମାଧାନ । (ଠ,ତ,ଙ)

୬୩।୨ କୋପେଣ ଗର୍ଜଇ ରାଜା ଶରଦ ମେଘ ପ୍ରାୟେ । (ଅ,ଙ୍କ,ଧ,ନ,)

ହନୁମନ୍ତ ବୋଇଲେ ଦେବ ଗଲେ ଯେ ଯୁଧିଷ୍ଠିର
ଆଠ ଯେନ ତାଙ୍କୁ ସେ ବେଢ଼ିଅଛନ୍ତି ଧୃତରାଷ୍ଟ୍ର । ୬୮ ।
ବଡ଼ାଇ ସମରେକ ଦେବ ହୋଉଅଛି ଯେ ଗୋଳ
ଯୁଧିଷ୍ଠିରଙ୍କ ଧର ଧର ବୋଲି ଶୁଭୁଅଛି ଯେ ଚହଳ । ୬୯ ।
ଅର୍ଜୁନ ବୋଇଲା ଦେବ ଶୁଣିମା ଗୋବିନ୍ଦ
ଯୁଧିଷ୍ଠିର ଦେବ ଠାକୁରେ ହାତେ ବଦ୍ଧ କଲେ ମନ୍ଦ । ୭୦ ।
ଶରୀର ବଇକୁଲ୍ୟ ମୋର ବଡ଼ାଇ ବିଷାଦ
ସଞ୍ଜୟେ ଠାକୁରଙ୍କୁ ପଡ଼ିଲା ପରମାଦ । ୭୧ ।
ସ୍ୱାମୀ ତୁ ମୋ ରଥେ ସାରଥି ସର୍ବଦା ମୋତେ ରକ୍ଷି
ତୋହୋର ଆଶ୍ରାନ୍ତେ ଆମ୍ଭେ ହୋଇବୁ ନିରମାର୍ଖୀ । ୭୨ ।
ତୁ ଦେବ ଜଗ୍ରଜନ ସୋଦର ଜଗୁନାହା
ବହନ କର କୁରୁଆଠକୁ ରଥ ମୋର ବାହା । ୭୩ ।
ସଂସାର ତାରଣ ନାଥ ମୂଳ ଅନାଦି
ତୋହୋର ଆଶ୍ରାନ୍ତେ ଯୁଧିଷ୍ଠିର ଦେବ ହୋଇଛନ୍ତି ବନ୍ଦୀ । ୭୪ ।
ଗୋବିନ୍ଦେ ବୋଇଲେ ପାର୍ଥ ନୁହଇଟି ସ୍ୱେମନ୍ତ
ସମସ୍ତେ ଅଭିନ୍ନ ତୋହୋର ସୋଦରରେ ପାର୍ଥ । ୭୫ ।
ଖାଣ୍ଡେ ତୋହୋର ଅଜା ଦ୍ରୋଣେ ତୋହୋର ଗୁରୁ
ଶଲ୍ୟ ମାତୁଳ କର୍ଣ୍ଣ ତୋହୋର ଭ୍ରାଥ କମ୍ପେ ମନେ ଅନ୍ତର ଧରୁ ।୭୬।
କୁରୁପତି ଭାଇ ତୋର ଶକୁନି ମଉଳା
ଅଶ୍ୱତ୍ଥମା ତୋର ଭ୍ରାଥ କୃପେତ ଦ୍ରୋଣଙ୍କର ଶଳା । ୭୭ ।
ତୁମ୍ଭେ ସମସ୍ତ ଅଭିନ୍ନ ଅଟ ଯେକ କାୟେ
ସେ କମ୍ପେ ଯୁଧିଷ୍ଠିରଙ୍କ ଶନ୍ତୁବେ ଅଟେଜୟେ । ୭୮ ।
ଅର୍ଜୁନ ବୋଇଲେ ଦେବ ଶୁଣିମା ହୃଷୀକେଶ
ଯେ କଟୁ ବାକ୍ୟେ ମୋତେ ନ କର ଝିଂଘାସ । ୭୯ ।
ନ ପୁଣ ଯୁଧିଷ୍ଠିରଙ୍କ ନଅନ୍ତି ଦେବ ଧରି
ବେଗ କର ରଥ ମୋର ବାହା କନା ଦେବ ହରି । ୮୦ ।
ମୁହିଂ ଅଗ୍ୟାଂନେ ସ୍ୱାମୀ ବୋଇଲି ନ ବରିବ
କଉରବେ ଧର୍ମ ଆଗ ଲଂଘିଲେ ଦ୍ୱନ୍ଦକୁ ଇଚ୍ଛା କର । ୮୧ ।

ଯେତେବେଳେଂ ସମର କରିବଇଂ ଦେବ ମୁହିଂ
ମାରିବ କଉରବେନ୍ତ ରଖନ୍ତା କେହି ନାହିଂ । ୮୨ ।
ଅର୍ଜୁନ ମୁଖରୁ ଯେସନେକ ବାକ୍ୟ ଶୁଣି
ପଞ୍ଚଜନ୍ୟ ଶଙ୍ଖ ଶବଦ କଲେକ ଚକ୍ରପାଣି । ୮୩ ।
ଧାନ୍ତକାରେ ଅଶ୍ୱମନ୍ତ ଯେ ଚଳିଲେ ଶ୍ରୀରଙ୍ଗ
ପବନ ଗନ୍ତ ହୋଇଣ ଉଡ଼ଲେ ତୁରଙ୍ଗ । ୮୪ ।
କୁରୁବଳ ସନ୍ୟ ସାଗର ହାଦେ ବୋଲ
ସେ ସାଗରେ ବହନ୍ତନ୍ତି କ ଚରି ଅଶ୍ୱ ହଂସ ପକ୍ଷୀ । ୮୫ ।
ନାରାୟଣଂକ ଆଗ୍ୟାଂଯେ ଉଡ଼ନ୍ତ ହୟେବର
ମହା ଅନଳ ଜାଣି ଯେ ଅର୍ଜୁନର ଶରୀର । ୮୬ ।
ଗର୍ଜିଣ ହୟେବର କଉରବ ଥାଠେ ପଣି
ନନ୍ଦିଘୋଷ ରଥ ଖ୍ରେଷ୍ଟେ ଓଗାଳଲେ ଆସି । ୮୭ ।
ଗୋବିନ୍ଦେ ବୋଇଲେ ତୁ ଶୁଣ ବୃକୋଦର
ଯୁଝେଷ୍ଟି ଦେବଂକୁ ଘେନି ଆସ ହେ ଧାନ୍ତକାର । ୮୮ ।
ଶୁଣିଣ ପ୍ରଣପତ୍ୟ କରଇ ଭୀମସେନ
ବିନୟ ଭକତ ହୋଇ ଶ୍ରୀହରି ଚରଣ । ୮୯ ।
ଯେତେକ ଥାଠ ବେଢ ଅଛନ୍ତି ଦେବ ହରି
ସମସ୍ତ ମାରି ଆଣିବିକ ଯୁଝେଷ୍ଟି ଦଣ୍ଡଧାରୀ । ୯୦ ।
ସ୍ୱାମୀର ଆଗ୍ୟାଂଯେ ଚଳେ କାଳଦଣ୍ଡ ପାଣି
ଯୋଜନ ବାହୁ ପ୍ରାୟେ ଟେକିଲା ବେନି ଗଦା ଘେନି । ୯୧ ।
ବାଜନ ବାଜନ ଘୋର ବେନି ଗଦା ହାଥେ
ଯେସନେକେ ମନ୍ଦର ଗିରି ଉଠଇ ପ୍ରଳୟ ଅନ୍ତେ । ୯୨ ।
ଯେସନେ ନାଶକର କାଳଦଣ୍ଡ ଘେନି କରେ
ତେସନକ ଆରମ୍ଭ ହଣଇ ବୃକୋଦରେ । ୯୩ ।

---

୮୪ { ଯାଅରେ ଅଶ୍ୱେ ବୋଲି ଆଗ୍ୟାଂ ଦଲେ ଶ୍ରୀରଙ୍ଗ
ପବନେ ବିକ୍ରମ ହୋଇ ଉଠିଲେ ତୁରଙ୍ଗ । (ଝ, ଟ)

୮୮।୨ ତୁ ଯାଇଂ ମିଶ ଯୁଝେଷ୍ଟି ଠାକୁରଂକ ସଙ୍ଗତର । ( ଘ, ଝ, ଛ )

କଉରବେ ଆଗେ ଯାଇଂ ପଶଇ କୋପ ମନେ
ଭୀମସେନ ଡାକଇ କାହିଂ ଅଛୁ କଳିଙ୍ଗସେନେ । ୯୪ ।
ମହାତେଜ ବୃକୋଦର ଘୋଟିଲା ବିଶ୍ୱରୂପ
ଦେଖିଣ ଭାଙ୍ଗିଲା ଯେ କଉରବଂକ ଦର୍ପ । ୯୫ ।
କାଳଚନ୍ଦ୍ର ପ୍ରାଯେକ ବୁଲାଇ ବେନି ଆଖି
ହାସେଣ ଭାଙ୍ଗିଲେ ଯେ ଭୀମର ଭୀଷ୍ମ ରୂପ ଦେଖି । ୯୬ ।
ଅନେକ ଢୋଲ ଦମା ନିଶାଣ ଗାରଡୂର ବାଜେ
କୃତାନ୍ତକ ଜାଣି ବୃକୋଦର ଆଗରେ ଯାଇଂ ଭଜେ । ୯୭ ।
ଧାମଇଂ ମାରୁତି ଯେ ସମରେ ଅଭୟ୍ୟ
ରଣରଙ୍ଗ ଧନ୍ଦୋଳେ ଘୋଟିଲା ତାର କାୟା । ୯୮ ।
ସମରେ ପଶିଲା ଯେ ନିର୍ଦ୍ଦୟା କାଳ ଯମ
ରଥ ଗଜ ଅଶ୍ୱନ୍ତ ଧରି କରୁତଇ ଗାର ଭୀମ । ୯୯ ।
ଓହୋବଳ ମଧ୍ୟେ ମାରୁତି ଧରଣି ମଯେମତ୍ତି
ଅନ୍ତରୀକ୍ଷ ମାର୍ଗେ ବୁଲାଇ ଫିଙ୍ଗିଲା ବେନି ଦନ୍ତୀ । ୧୦୦ ।
ରଣରଂକା ସୋହଡ଼ ସେ କଇଛା ଜଗଜେଠୀ
ବେନି ଗଦା ବୁଲାଇ ସେ ରଥରେ ନେଇ ପିଟି । ୧୦୧ ।
ଭାଙ୍ଗନ୍ତ ରଥ ଯେ ପଡନ୍ତ ମଯେମତ୍ତି
କୁରୁଆଠ ମନ୍ଥିବାକୁ ଯେକା ଭୀମସେନ ଶକତା । ୧୦୨ ।
କାଉଂଶୀ ଦେଶର ଯେ କାମପାଳ ନୃପତି
ତାହାର ଭୁଲେ ଛନ୍ତି ତିନି ସସ୍ର ରଥୀ । ୧୦୩ ।
ଯେତେକ ଯୋଦ୍ଧା ଯେନି ନୃପତି କାମପାଳ
ଭୀମସେନ ଆଗେ ଯାଇଂ କରଇ ରଣଗୋଳ । ୧୦୪ ।
ଭୀମସେନ ମୁରତିକ ନାହିଂନା ସହନ୍ତା
ତାହାର ସ୍ତୁମୁରେ ମିଳଲା କାମପାଳ ମହାରଥା । ୧୦୫ ।

---

୧୦୧ { ରଣ ରଙ୍ଗ ସୋହୋଡ଼ କଇଗ୍ଣ ଜଗଜେଠୀ
ବେନି ଗଜ ବୁଲାଇ ସେ ରଥରେ ନେଇ ପିଟି । ( କ, ଙ, ଘ, ଚ, ଛ, ଥ, ନ)
୧୦୨।୨ କୁରୁ ସାଗର ମନ୍ଥିବାକୁ ପାଣ୍ଡବେହିଂ ଶକତା ( କ, ଚ,)

ଧାମଇଂ ପାଣ୍ଡବ ସୋଦ୍ଦୋଡ କଉରବବଳ ଧ୍ୱଂସା
କାମପାଳ ରଜାକୁ ଯେ କଞ୍ଚିତ ଅଟଇ ଭରସା । ୧୦୬ ।
ଧାଇଂଣ ଭୀମସେନ ଗଦାବର ପିଟି
କାମପାଳ ନୃପତି ଯେ ପଡ଼ିଲ ମହୀ ଲୋଟି । ୧୦୭ ।
କୋପେ ପ୍ରହାର କଲା ପାଣ୍ଡବ ବଜ୍ର ମୁଥେ
ଗୁଣ୍ଡା ହୋଇଗଲେ ମାହୁନ୍ତ ଗଜ ସହିତେ । ୧୦୮ ।
ରଥେ ରଥ ନେଇ ଭୀମସେନ କରୁଡ଼ି
ଦେଖିଣ ସନ୍ୟ ବଳ ଭୟେ ପଳାଇଲେ ଅପସରି । ୧୦୯ ।
ସମରେ ଅନିବାରଣ ସେ ଯେବଣ ପାଣ୍ଡବ
ବପୁ ସ୍ନେହ ନାହିଂ ତାର ଭାବ ଯେ ଅଭାବ । ୧୧୦ ।
କଉରେବ ସେନାୟେ ସମରେ ମହାବଳୀ
ଭୀମସେନ ଉପରେ ପିଟନ୍ତି ଗଦା ତୋଳି । ୧୧୧ ।
ବିଶେଷେ ବୃକୋଦରର ଅଟଇ ବଜ୍ର ବାମ ଅଙ୍ଗ
ପଡ଼ନ୍ତେ ମୁଦ୍‌ଗର ଗଦା ଶୂଳ ଗୁରୁଜ ହୁଅନ୍ତି ସର୍ବ ଭଙ୍ଗ । ୧୧୨ ।
ପାଦାଘାତ ବୃକୋଦର ମାରଇ ସେ ଯାହାକୁ ମୁଥେ
ଭାଙ୍ଗିଣ ଗୁଣ୍ଡାୟେ ହୋଇଲେ ସର୍ବ ରଥେ । ୧୧୩ ।
ବିକଟ ଦଶନ ଯହୁଂ ଅଧରେ ବିକାଶି
ନରକେଶରୀ ରୂପ ପ୍ରାୟେକ ଭୀମସେନ ପ୍ରକାଶି । ୧୧୪ ।
ସୁରସିଧ ଦେଶର ରଜା ବିତପାଳ
ପାଞ୍ଚ ସହସ୍ର ଯୋଦ୍ଧା ତୁଲେ ନବ କ୍ଷଉଣୀ ବଳ । ୧୧୫ ।
ବହୁତ ପ୍ରତଗ୍ୟାଂ ସେ କଟଣ ମହାବଳୀ
ଦଶ ସହସ୍ର ଯୋଦ୍ଧା ଘେନ ଭୀମସେନକଇଂ ଓଗାଳ । ୧୧୬ ।
ବହୁତ ସଇନ ତାର ନ-ଯାଇ କଳଣା
ପୃଥୀ ଘେନିମାକୁ ସେ ସମର୍ଥ ମହାରଣା । ୧୧୭ ।
ଯେସନେକେ ପରବତେ ବିଶନ୍ତି ବରଷାର କାଳେ
ସେହିମତ ବିଶଇ ରଥ ମାଳେ ମାଳେ । ୧୧୮ ।

---

୧୦୭।୨ କାମ ନରପତି କାହିଂ ଭୀମସେନ ଆଗେ ରହନ୍ତି । ( ଥ, ପ, ନ)
୧୧୮।୨ ସେହି ପ୍ରକାର ବିଶନ୍ତି ରଥ ଗଜ ଗହଳେ । ( ଥ, ଊ, ନ )

ଗହଳ ଧନ୍ଦୋଳ ଥାଠ ସେ ନ ଯାଇ ବାରଣ
ଯେତୁକା ଭୀମସେନକେ ହୋଇଲା ବହୁତ ଆବୋରଣ । ୧୧୯ ।
ବହୁତ ସମ୍ବର ସେ ଦେଖିଣ ବୃକୋଦର
ଭୟ ଭ୍ରାନ୍ତ ନାହିଁ ତାର ନିକମ୍ପ ଶରୀର । ୧୨୦ ।
କୋପେଣ ପ୍ରହାର ସେ କରଇ ମାରୁତି
ଯେତୁକା ପ୍ରହାରକେ ପଡ଼ଲେ ଦଶ ବଂଶ ମହାରଥୀ । ୧୨୧ ।
ପୁଣିହିଁ ପ୍ରହାର କରଇ ବୀର ଗଦା ତୋଳି
ପଡ଼ଣ ଅନେକ ରଥ ଗଜ ଯୋଦ୍ଧା ହୋଉଛନ୍ତି ଧୂଳି । ୧୨୨ ।
ରଣ ରଙ୍ଗ ଧନ୍ଦୋଳ କଲା ପାଣ୍ଡବ ବଳବନ୍ତା
ସମ୍ମୁଖରେ ରହିବାକୁ କେହି ନୋହିଲେ ଶକତା । ୧୨୩ ।
ଉଠନ୍ତି ପୁଟନ୍ତି ଗରଜନ୍ତି ଭାଞ୍ଜନ୍ତି ସବ ଯୋଧୀ
ଯେତୁକ ମୁଖ ହୋଇଣ ନାଗଜନ୍ତ ବନ୍ଧି । ୧୨୪ ।
ଅବଛନ୍ନେ ନାଗଜ ବନ୍ଧନ୍ତି ମହାରୋଷେ
ଜଳୁଜଳା ପୋକ ପ୍ରାୟେ ଦିଶନ୍ତି ଆକାଶେ । ୧୨୫ ।
ଲୋହ ଶର ପ୍ରାୟେକ ଦିଶଇ ଯାହାର ରୋମାବଳି
ନାଗଜମାନ ପଡ଼ଣ ଯେ ହୋଉଛନ୍ତି ଧୂଳି । ୧୨୬ ।
ବେଳ ଅସ୍ତ ହୁଅନ୍ତେ ସନ୍ୟ ପାଇଲେ ବିମୁଖ
ଭାଙ୍ଗିଲେ ଦୁରାନ୍ତେକ ବଳ ହୋଇଣ ନିରେଖ । ୧୨୭ ।
କେହି ନ ରହିଲେ ଭୀମସେନର ଆଗର
ବେନି ଭାଗ ହୋଇଲେକ କୁରୁ ଯେ ସାଗର । ୧୨୮ ।
କାଳ ରୁଦ୍ର ଜାଣି ସେ ଭୀମସେନ ଉଠି
ଧାମନ୍ତେ ଭେଟିଲା ଯାଇଂ ଧର୍ମ ରାୟେ ଯୁଷ୍ଟେଷ୍ଠି । ୧୨୯ ।
ଦୁର୍ଦ୍ଧକ୍ଷର ରଥରେ ବଜାୟେ ଧର୍ମବାଳ
ଧୃଷ୍ଟଗ୍ରୟ ନନ୍ଦନ ସମର କରଇ ବେଳ । ୧୩୦ ।
ଉଜାଣି ନଗ୍ର ରାଜା ନାମ କେତୁମାଳ
ଦଶ ଲକ୍ଷ ଯୋଦ୍ଧା ଘେନ ସେ ଯୁଷ୍ଟେଷ୍ଠିଂକ ଓଗାଳ । ୧୩୧ ।

---

୧୨୭ { ବେଳ ଉଦ୍ୟାନେ ବୀରେ ହୋଇଲେ ବିମୁଖ ।
{ ପଳାବନ୍ତ ସଇନମାନେ ହୋଇଣ ନିରେଖ ।, ( ଖ, ଙ, ଝ )

ତାହାଙ୍କର ଭୁଲେ ଯୁଦ୍ଧ କରନ୍ତି ଦୁର୍ଦ୍ଦକ୍ଷ ସଇନ
ଯୁଦ୍ଧେଷ୍ଟିଙ୍କ ମାର ବୋଲ ଶୁଭଇ ମୁଖଧୂନ । ୧୩୨ ।
ଦୂରେଣ ଦେଖିଲା ତାହା ପାଣ୍ଡବ ପଞ୍ଚାଣ
ଧାଇଣ ମାରୁତି ଓଗାଳଲା ତାର ବଳ ପୁଣ । ୧୩୩ ।
କୃତାନ୍ତକ ରୂପ ଦେଖି ନୋହନ୍ତି କେହି ଆଗ
ଭାଞ୍ଜିଣ ସଇନ ଯେ ହୋଇଲେ ଦେନଭାଗ । ୧୩୪ ।
ଉଜାଣି ଦେଶର ସଇନ ଯୁଦ୍ଧେଷ୍ଟିଙ୍କ ବେଢ଼ିଥିଲେ
ଭୀମସେନ ରଡ ଶୁଣି ସଭଯେଁ ପଳାଇଲେ । ୧୩୫ ।
ଓହୋବଳ ଥାଠେ ମାରୁତି ଗଲଗାଜେ
ଯୁଦ୍ଧେଷ୍ଟିଙ୍କ ସନ୍ନିଧାନେ ଭୀମସେନ ବଜେ । ୧୩୬ ।
ସାରବର ସୁନ୍ଦର ସେ ବଚନ ପ୍ରକାଶି
ବୁଡାଇଲୁ ନା ସମ୍ପଦ ସକଳ ଧର୍ମ ନାଶି । ୧୩୭ ।
ସ୍ୱାମୀ ବଧିର ଶୁଣଇ କ କମ୍ବୁ ରସ ବାଣୀ
ତସ୍କର ସଭାରେ କ ଧର୍ମ ପୁରାଣ ବଖାଣି । ୧୩୮ ।
ପାଦେଣ ଠାଳଲୁ ନାଥ ଅର୍ଜିଲା ସମ୍ପଧି
ନଶନ୍ତ କାଳକୁ କଲ ବପରୀତ ବୁଦ୍ଧି । ୧୩୯ ।
କର୍କଶ ମଧୁ ପିଙ୍ଗଳ ରାଜା ଦୁର୍ଯୋଧନ ମନ୍ଦ ଜାତି
କର୍ଣ୍ଣ ଶକୁନ ଭୁଲେ ଦୁଃଶାସନ ମନ୍ଦ ମତି । ୧୪୦ ।
ସ୍ୱାମୀ ବାରଣ ବୋଲ ମେଣ୍ଟି ଅଇଲୁ ନରନାହା
ପୁଣ୍ୟେ ତୁ ଉବୁରିଲୁ ଧର୍ମ ବଳ ହୋଇଲା ସାହା । ୧୪୧ ।
ସଞ୍ଚୟେ ରାଜ୍ୟ ତୁ ବୁଡାଇଲୁ ନରପତି
ଯେବେ ଦୁର୍ଦ୍ଦକ୍ଷ ରକ୍ଷା କଲା ପାଣ୍ଡବଙ୍କ ବଭୂତି । ୧୪୨ ।
ବୋଧ ମନାଇଣ ଅଇଲୁ ହୋ ଧର୍ମରାଯେ
ମନ୍ଦ କାଳର ବଶେ ପଡିଲା ଯେତେକ ଅପ୍ରାଜନ୍ୟେ । ୧୪୩ ।
ଭୀମସେନ ପାଦତଳେ ଦୁର୍ଦ୍ଦକ୍ଷ ପରଣାମି
[illegible] ମୋହୋତ [illegible] ରକ୍ଷା କର ଦେବ ସ୍ୱାମୀ । ୧୪୪ ।

---

୧୪୨।୨ ଯେବେ ଦୁର୍ଦ୍ଦକ୍ଷ ରଖିଲ ଯେ ତୋର ଜୀବନ । ( ଙ, ଥ, ନ )

ଭୀମସେନ କୋଳ କରି ଧଇଲା ଦୁର୍ଦ୍ଧର୍ଷକୁ
ତୁ ସେ ଉଦ୍ଧାରିଲୁ ବାବୁ ଧୃତରାଷ୍ଟ୍ର କୁଳକୁ । ୧୪୫ ।
ବାବୁ ତୁ ଦୟା କଲୁ ମୋତେ ସୋଦର ଭାବ ଘେନ
ଭବିଷ୍ୟ ବୁଝିଲୁ ବାବୁ ବେଳକାଳ ଜାଣି । ୧୪୬ ।
ବାବୁ ଆମ୍ଭର ଜୀବନ ଥିବ ଯେତେ କାଳ ପରିଯନ୍ତେ
ଦେବେ ଦାନବେ ପ୍ରମାଦ ନ ଚିନ୍ତିବେ ତୋତେ । ୧୪୭ ।
ଦୁର୍ଦ୍ଧର୍ଷ ବୋଇଲା ସ୍ୱାମୀ ମାଡ ପଡୁଅଛି ଦୁର୍ଯୋଧନର ଥାଟ
ଯେହୁହାନ୍ତ ଭାଞ୍ଜିଲେ ସେ ଆମ୍ଭନ୍ତ ଅଛି ବାଟ । ୧୪୮ ।
ନାରାୟଣଙ୍କ ଅଗ୍ରତେ କହନ୍ତ ବିନୟେ ଫାଲଗୁନ
ହରି ହେ ମୋହୋର ହୃଦୟ ବିଷାଦ କଂକେ ସ୍ଥିର ରଇ ଚକ୍ଷୁ ବେନ ।
ଲୋଚନ ପ୍ରଖରତା ସେ ଫୁରଇ ଘନ ଘନ
କେଉଣ ଉତପାତ ପଡିବ ଆଜ ଦିନ । ୧୫୦ ।
ସ୍ୱାମୀ ଯୁଧିଷ୍ଠିରଙ୍କ ଧରି ବୋଲି ଶୁଭିଲାକ ଗୋଳ
ସମସ୍ତେ ଥିରି ହୋଇଲେନି ନାହିଁତ ଚହଳ । ୧୫୧ ।
ଯଦ୍ୟପି ବିଜେ କରି ଗଲେଣି ଭୀମସେନ
ଯୁଧିଷ୍ଠି ନ ଦେଖିଲେ ଥିରି ନୋହେ ମୋର ମନ । ୧୫୨ ।
ସ୍ୱାମୀ ବହନ କରି ରଥ ମୋର ବାହା ହୃଷୀକେଶ
ନୟନେ ଦେଖିଲେ ଯୁଧିଷ୍ଠି ଫିଟଇ ହୃଦୟର ତ୍ରାସ । ୧୫୩ ।
ଭୀମସେନ ଠାକୁରଙ୍କର ତ ନ ଶୁଭଇ ମୁଖଧ୍ୱନି
ଯେଣୁ ଅବା ଯୁଧିଷ୍ଠିରଙ୍କ କଉରବେ ଗଲେ ଘେନି । ୧୫୪ ।
ବେଗ କରି ରଥ ମୋର ବାହା ନାରାୟଣ
କପଟେ ଦୁର୍ଦ୍ଧର୍ଷ ନ ପୁଣ ପଶି ଥାଇ ଶରଣ । ୧୫୫ ।
ଅର୍ଜୁନର ବଚନେ ଦେବ ରଙ୍ଗହାଥେ
ଧାଡିକାରେ ଧୁଆଁଇଲେ ନନ୍ଦଘୋଷ ରଥେ । ୧୫୬ ।
ଆକାଶଗାମୀ ଗମନ୍ତ ସେହୁ ହୟେବର ଗୁରି
ଥାଟର ଭିତରେ ରଥ ପଶିଲା ଆଗ ସରି । ୧୫୭ ।
ଯେସନେକେ ଆରତ ହୋନ୍ତ ବାସଭଗ୍ନ ପକ୍ଷୀ
ଭାଞ୍ଜିଲେ କଉରବେ ବଳ ଅର୍ଜୁନକୁ ଦେଖି । ୧୫୮ ।

ଭାରଭର ସଂହରଣ ଯେଉଣ ଜଗନ୍ନାଥ
ସାରଥି ପଣେ ରଥେ ଧ୍ୱଜେ ଜଗଭୂତ । ୧୫୯ ।
ଦୁଷ୍ଟ ଜଗନ୍ନାଥ ଅର୍ଜୁନର ତେଜ ଦେଖି
ଭାଞ୍ଜିଲେ କଉରବେ ବଳ ଭୟେଣ ବଡ ଦୁଖୀ । ୧୬୦ ।
ବଳ ଭଗ୍ନ ଦେଖି ଶାନ୍ତନୁର ବତ୍ସ
ଧ୍ୱଜେକେତନ ରଥେ ଆରୋହି ଅଛନ୍ତି ଗାଙ୍ଗେବ ବୀର ଛତ୍ରୀ । ୧୬୧ ।
ନନ୍ଦିଘୋଷ ରଥ ଆସନ୍ତେ ଓଗାଳିଲେ ଗଙ୍ଗା ଦେବୀର ତନୁ
ନଉ ସହସ୍ର ବଳର ଶ୍ରୀଭୁଜେ ରତ୍ନ ଧନୁ । ୧୬୨ ।
ଭୀଷ୍ମେ ହାକ ଦିଲେ କାହିଂକ ଯାଉ ରେ ପାର୍ଥ
ମୋହୋର ଶ୍ରମୁରେଣ ଆଣି ଟେକ ନନ୍ଦିଘୋଷ ରଥ । ୧୬୩ ।
ଅର୍ଜୁନ ବୋଇଲା ତୁମ୍ଭେ ଯେ ଗୁରୁ ପରମ ଗୁରୁ
କେହ୍ନୁ ସାମରଥ ହୋଇବ ଟାଳିବାକୁ ମେରୁ । ୧୬୪ ।
ଓହୋବଳର ସୋଦର ଅଟ ତୁମ୍ଭେ ଗାଙ୍ଗେବ
ତୁମ୍ଭର ଥାଆନ୍ତେ ଯେକା ସହୋଦ୍ରେ ଉପୁଜଇ ଅଭାବ । ୧୬୫ ।
ଭୀଷ୍ମେ ବୋଇଲେ ଆପଣାର କର୍ମ କୃତ
ତାହା ସେ କର୍ମ ଘୋଳି ଲହିଲା ବିଧାତ । ୧୬୬ ।
ଅର୍ଜୁନ ବୋଇଲା ତାତ ଯେବେ ଅଛି ବୁଦ୍ଧି
ହାଦେ ହତ୍ୟା ନ ପଡୁ ସମର କର ସନ୍ଧି । ୧୬୭ ।
ଦୁଦ୍ଧର୍ଷ ବୋଲି କରି ଯୁଧିଷ୍ଠିରଙ୍କ ରକ୍ଷାକଲା
ଭୀଷ୍ମେ ବୋଇଲେ ବାବୁ ସମରହିଂ ସରିଲା । ୧୬୮ ।
ଧର୍ମ ଲଂଘି ସହୋଦ୍ରେ ନାଶିବାକୁ ଯାର ବୁଦ୍ଧି
ଆବର କଥା ବାବୁ କାହିଂ ଲୋଡୁ ସନ୍ଧି । ୧୬୯ ।
ଭୀଷ୍ମେ ବୋଇଲେ ସନ୍ଧିକ ଆଶା ନ କର ବାବୁ
କେବଣ ବୁଦ୍ଧିରେ ଆମ୍ଭନ୍ତ ଜିଣିବୁ ତାହିଂ ସେ ଲୋଡୁଥିବୁ ସବୁ ।୧୭୦।

---

୧୬୦।୧ ଦୁଷ୍ଟ ଜଗନ୍ନାଥ ଅର୍ଜୁନର ନନ୍ଦିଘୋଷ ରଥ କେମ୍ପାଣ୍ଡ ଦେଖି । ( ଙ, ଠ)
୧୫୯।୧ ସଂହରଣ — ସଙ୍ଘରଣ ।

ଆମ୍ଭେ ବ୍ରତ କଲୁ କର୍ଣ୍ଣ ଅଶ୍ୱତ୍ଥାମାଂକ ଝିଂଘାସେ
ଦଶ ସହସ୍ର ରଥୀ ମାରିବୁଁଟି ପ୍ରତି ଦିବସେ । ୧୭୧ ।
ବାବୁ ସମରେ ଯେବେ ବଧ କରି ପାରିବୁ ମୋତେ ପାଥ
ତେବେ ସେ ଆମ୍ଭର ପୂରିବନା ସତ୍ୟବ୍ରତ । ୧୭୨ ।
ରଥୁଂ ଓଲାଇ ଆସଇ ପାଣ୍ଡବ ଧନଞ୍ଜୟେ
ଭୀଷ୍ମଂକର ଚରଣେ ପ୍ରଣପତ୍ୟ ବିନୟେ । ୧୭୩ ।
ବଦୟନ୍ତି ଗାଙ୍ଗେୟେ ତୋହୋର ପୂରୁ ମନୋବାଞ୍ଛା
ଯେ ପଞ୍ଚ ସ୍ଥଳୀ ଭୋଗ କର ଯେ ତୋହୋର ଇଚ୍ଛା । ୧୭୪ ।
ଗଙ୍ଗାର ନନ୍ଦନ ଯେ ପରମ କଲ୍ୟାଣ ଭ୍ରଷ୍ଟି
ଭୀଷ୍ମଂକ ମୁଖ ଶୁଣିହିଂ ଅର୍ଜୁନ ବଚନ ପ୍ରକାଶି । ୧୭୫ ।
ସ୍ୱାମୀ ପ୍ରାଣହୁଂ ଅଧିକ କରି ପାଳିଲୁ ଆମ୍ଭନ୍ତ
ଭୁମ୍ଭନ୍ତ ମାରିବାକୁ କେମନ୍ତେ ବଳିବ ଆମ୍ଭଚିତ୍ତ । ୧୭୬ ।

---

୧୭୪।୨ 'ଘ' ପୋଥିରେ—"ଯେ ପଞ୍ଚ ସ୍ଥଳୀ ଭୋଗକର ଯେ ତୋହୋର ଇଚ୍ଛା" ପାଠ ପରେ ଅଧିକା ପାଠ:—

ଗଙ୍ଗାର ନନ୍ଦନ ପରମ କଲ୍ୟାଣ ଭ୍ରଷ୍ଟି
ଶତ୍ରୁ ମାରି ନିକଣ୍ଟକେ ରାଜ୍ୟ ତୁ କରସି ।
ଶପୁ ଛପ୍ନେୟାଉ ପରମ ହୋଉ ତେଜ
ଦିଗ ଧବଳ ତୁମ୍ଭେ ଭୁଞ୍ଜ ଅଇଶ୍ୱର୍ଯ୍ୟ ।
ଭୀଷ୍ମଂକର ବଚନେ ବଦନ୍ତି ଅର୍ଜୁନ
ସ୍ୱାମୀ ଧାର୍ଯ୍ୟ ହୋଇବଟିକି ଯେ ତୋହୋର ବଚନ ।
ମହନ୍ତର ବଚନ ଯେ ପାଷାଣ ରେଖ ଗାର
ନଟଳଇ ରେଖା ଯେହ୍ନେ ବାକ୍ୟ ଯେ ତୋହୋର । (ଘ)

୧୭୬।୧ "ସ୍ୱାମୀ ପ୍ରାଣହୁଂ ଅଧିକ କରି ପାଳିଲୁ ଆମ୍ଭନ୍ତ" ପରେ 'ଘ ପୋଥିରେ ଅଧିକା ପାଠ ।

ଯେବେ ନାଶିବୁ ବୋଲି ହୋଇଛୁ ଉପଗତ ।
ଶହସ୍ର ଧରି ଯେ ନିୟମ କଲୁ ତୁହି
ମାରିବ ଦଶସହସ୍ର ରଥୀ ଦିନେକ ଶେଷ ବହି ।
ଯେ ବଧି ଦଶଦିନ କରିବୁ ସାଂଗ୍ରାମ
ମୋତେ କାହିଂ ରାଜ୍ୟ ପ୍ରାପତ ହୋଇବ ଗଙ୍ଗାରନନ୍ଦନ ।

(ଅବଶିଷ୍ଟ ପର ପୃଷ୍ଠାରେ)

୧୭୩।୧ ଓଲଇ—ଓହ୍ଲାଇ ।

ଖ୍ରେଷ୍ଟେ ବୋଇଲେ ପାର୍ଥ ଯେମନ୍ତ ନୋହୋଇ
ଯେତେବେଳେ ବାବୁ ରେ ଯେମାନ ନ ଶୋହଇ । ୧୭୭ ।
ସହୋଦର ମାରିବାକୁ ଯେବେ ତୋହୋର ନାହିଂ ଇଚ୍ଛା
ବନବାସ ତେଜ କମ୍ପା ରାଜ୍ୟ କଲୁ ମନବାଞ୍ଛା । ୧୭୮ ।
ଖ୍ରେଷ୍ଟେ ବୋଇଲେ ବାବୁ କୁଳେ କଳଂକ ହୋଇ ଅବଶ୍ୟ ଥାଇ ଜଣେ
ତାହାର ଦୋଷ ସହିବା ଅଟଇ ହାଦେ ଧର୍ମେ । ୧୭୯ ।
ପଣ୍ଡିତ ହୋଇ କରି ଗୁଡଲ ତୁମ୍ଭେ ଧର୍ମ
ଲୋଭ ଆଚରଣେ ରଖିଲ ଫାଗ୍ରାମ । ୧୮୦ ।
ଖ୍ରେଷ୍ଟେ ବୋଇଲେ ତୁ ଯେ ବାନ୍ଧବ କ୍ରୋଧକାଷ୍ଠ
ରାଜ୍ୟ ଅପେକ୍ଷା ନ କର ଯେତୁ ଯାଅ ଯା ଅପସର । ୧୮୧ ।
ତେବେ ସେ ଜାଣିମାନା ତୋହୋର ସୋହୋଦରମା ପଣ
ତୁମ୍ଭର ବୁଦ୍ଧିରେ ଯେ ବଂଶ ହୋଇବ ରକ୍ଷଣ । ୧୮୨ ।
ଅର୍ଜୁନ ବୋଇଲେ ସ୍ୱାମୀ ହୋଇଲୁ ଆମ୍ଭେ ବଡ ଦୋଷୀ
ପଡା ଖଣ୍ଡିଯେ ନ ଦେଇ କମ୍ପେ ଆମ୍ଭନ୍ତ ନ ପୋଷି । ୧୮୩ ।
ଖ୍ରେଷ୍ଟେ ବୋଇଲେ ବାବୁ ଯେ ତୋହୋର ନୋହୋଇ କଲ୍ପ
କେ ଦେଇ ମଲ୍ କେ ନ ଦେଇ-ମଲ୍ । ୧୮୪ ।
କେ ପାଇଣ ମଲ୍ କେ ନ ପାଇ ମଲ୍
କେହୁ ଦେଖି ମଲ୍ କେହୁ ନ ଦେଖିଣ ମଲ୍ । ୧୮୫ ।
ଯେସନେକ ନର୍ବାଣ ଅଛଇ ହାଦେ ପୂର୍ବେ
କେ ତାହା ଅନ୍ୟଥା ବାବୁ କର ପାରିବାକ ଯେବେ । ୧୮୬ ।

---

ପୂର୍ବ ପୃଷ୍ଠାର ପାଠାନ୍ତର:—
ତୋତେ ଜଣିମାକୁ ନଇଲୋକ୍ୟେ କ୍ଷମ କାହିଂ
ହୋଇଛୁ ଅମର ତୁ ଇଚ୍ଛାମୃତୁ ବହି ।
ତୋତେ ସମରେ କାହିଂ ଜଣିମା କହ ସତ
ତୋତେ ଜଣିମାକୁ ମୋହୋର କୋଧ ଚଢ଼ି ।
ପୋତ୍ର ପୋତ୍ର ସମ୍ପତ୍ତି ନୋହୁ ନୋହୁ ଯେ ରାଜ୍ୟ ଭୋଗ
ସୋଦର ବନାଶିବ ଯାହା ହୋଇବ ରାଜ୍ୟ ଆଗ ।

ଆହେ। ଦେଖି ମଲ୍ଲ କଂସ ନ ଦେଖି ମଲ୍ଲ ଦଶରଥ
ପୂର୍ବେ ଶୁଣିଅଛୁ ଯେସନେକ ଉକତ । ୧୮୭ ।
ଦେଇ ମଲ୍ଲ ବଳୀ ନ ଦେଇ ମଲ୍ଲ ରାବଣ
ନ ଯାଇ ଖାଚକ ମଲ୍ଲ ନ ଦେଇ ମରିବ କୁରୁରାଣ । ୧୮୮ ।
ଅର୍ଜୁନ ବୋଇଲେ ସେ ନ ଦେଇ ନାଶଯିବ
କମ୍ପୁତ କାରଣେ ଯେବେ ତୁମ୍ଭେମାନେ ମରିବ । ୧୮୯ ।
ଭୀଷ୍ମେ ବୋଇଲେ ବାବୁ ଆମ୍ଭେତ ଯେହା ଜାଣୁ
ଭାରଥ ଯୁଦ୍ଧେ ଆମ୍ଭେ ମରିବୁ ବୋଲ ଶୁଣୁ । ୧୯୦ ।
ଅର୍ଜୁନେ ଭୀଷ୍ମେ ଯେମନେକ କଥା ହୋନ୍ତେ
ଯୁଦ୍ଧକ୍ଷେତ୍ରିରେ ଦେଜ ଭୀମ ଧାମଇ ଯେକା ରଥେ । ୧୯୧ ।
ଭୀଷ୍ମଂକ ତୁଳେ ଅଛୁ ପାଞ୍ଚ ଅଦ୍ଭୁତ ରଥୀ
ଭୀମସେନ କରୁଡ ମାରଇ ସବୁନ୍ତ । ୧୯୨ ।
ଚଳାବନ୍ତ ସଇନ ଯେ ହୋଇଣ ନରେଖ
ଉଚସ୍ୱରେ ଶବଦ ଶୁଭଇ ଭୀଷ୍ମଦେବ ରଖ ରଖ । ୧୯୩ ।
ଗୋବିନ୍ଦେ ବୋଇଲେ ପାର୍ଥ ତୁ କମ୍ପାଇ ଶର ନ ବନ୍ଧୁ
ଆବର ପାଣ୍ଡବେ କଉବେରେ କାହ୍ନିଂ ବନ୍ଧୁ । ୧୯୪ ।
ଭୀଷ୍ମେ ବୋଇଲେ ବାବୁ ଶୁଣସି ରେ ପାଥ
ମାନଗୋବିନ୍ଦେ ଜିଣିମାକୁ କେ ଅଛି ସାମରଥ । ୧୯୫ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଯାହାର ସେ ପିଠି
ତ୍ରଇଲୋକ୍ୟ ଯେକ ହୋଇଲେ କେ ଜିଣିମ ଧୃତରାଷ୍ଟ୍ରି । ୧୯୬ ।
ଇଚ୍ଛା ମୃତ୍ୟୁ ବାନା ଅଛଇ ଆମ୍ଭର
ଦ୍ରୋଣଂକୁ କେ ଜିଣିମ ଶହସ୍ର ଥିଲେ କର । ୧୯୭ ।
କର୍ଣ୍ଣକୁ କେ ଜଣଇଂ ସେ ଅଛଇ ଅଜୟେ
ଶଲ୍ୟ ଶର ବନ୍ଧନ୍ତେ ପର୍ବତ ନ ରହେ । ୧୯୮ ।
ଅଶତ୍ଥମା ନାରାଜ ପ୍ରଚଣ୍ଡ ହୁତାଶ
ଅମର ବର ତାହାକୁ ଦଲେ କମଳ କୋଶ । ୧୯୯ ।

---

୧୯୨।୨ ଭୀମସେନ ଆନେକି ତେଜେ ପିଠଇ ସବୁନ୍ତ । ( ଊ, ଥ, ନ)

ଜଦ୍ୟରଥ କଥାତ ଅଛି ଅଲେଖନ
ଅଭସ୍ୱେ ବର ତାହାକୁ ଦଲେ ଶୂଳ ହସ୍ତ । ୨୦୦ ।
ମୁଣ୍ଡ କାଟିଲେ ତାହାକୁ ନୋହିବ ମରଣ
କୃପ ଭୂରିସର୍ବାସ୍ୱେ ଯେ କରିବେ ମହାରଣ । ୨୦୧ ।

ଖର୍ବ ଖର୍ବ ଯୋଦ୍ଧାସ୍ୱେ ଅଛନ୍ତି ବଳୀୟାର
ସତୁରି ସହସ୍ର ଯେଁଠି ଅଛନ୍ତି ନୃପବର । ୨୦୨ ।

ନାରାଜ ବଳେ ଜିଣି ପାରନ୍ତି ସିନ୍ଧୁ ବୀର
କେ ତାହାଂକୁ ପାଥ, ସମରେ ଜିଣି ପାର । ୨୦୩ ।

ଅର୍ଜୁନ ବୋଇଲେ ସହସ୍ରେ ଭୀଷ୍ମ ଦୁଇ ସସ୍ର ଦ୍ରୋଣ
ଗୁରୁ ସହସ୍ର ଶଲ୍ୟ ଆଠ ସହସ୍ର କର୍ଣ୍ଣ । ୨୦୪ ।
ଯେତେକ ଭୂଲ ହୋଇ ଯେବେ କଉରବେ ଥାଠ ଦେଖି
ତଥାପି ମାନଗୋବିନ୍ଦଙ୍କୁ ନ ପାରିବେ ରଖି । ୨୦୫ ।

ଅର୍ଜୁନ ବୋଇଲେ ସହୋଦ୍ଭ୍ରମା ପଣକୁ ମୋର ଗୁରୁ ପରମ ଗୁରୁ
ନିଠୁର ସମର କଲେ ଅର୍ଜୁନ ଗ୍ରୁମ୍ଟରେ କେ ଶସ୍ର ଧରୁ । ୨୦୬ ।

କହୁଂ କହୁଂ ପ୍ରେଷିତ ସେ ବୀର ଫାଲଗୁନ
ଭୀଷ୍ମଂକ ଉପରକୁ ଯେ ମୂରେଇଲା ଶହସ୍ର ଘେନ । ୨୦୭ ।

କଉଶିକ ମନ୍ତ୍ରେଣ ସେ ନାରାଜ ଘେନ ସନ୍ଧି
ନମସ୍କାର କରଣ ସେ ପଞ୍ଚୁବାଣ ବନ୍ଧି । ୨୦୮ ।
ଭୀଷ୍ମଂକ ଚରଣ ତଳେ ପଡଇ ପଞ୍ଚୁ ଶର
ଗୁରୁ ବନ୍ଦନା ନମନ୍ତେ ଆରାଧଇ ପଯୂର । ୨୦୯ ।

ବିନୟ ଭାବ ଶର ଦେଖିଣ ଗଙ୍ଗା ଶିଷ
ପଞ୍ଚୁ ନାରାଜ ଗାଙ୍ଗେବେ ବନ୍ଧିଲେ କରଣ ଆଶିଷ । ୨୧୦ ।

ଅର୍ଜୁନ ମୁଖରେ ଚୁମ୍ବନ ଦଅନ୍ତି ପଞ୍ଚୁବାଣ
କାଳବଶେ ଉତ୍ପ୍ରୋଧ ଗ୍ରୁଡଲେ ଭୀଷ୍ମୁଗଣ । ୨୧୧ ।

---

୨୧୧।୧   ବାଳୁଡ ଉତ୍ପ୍ରୋଧ ଗ୍ରୁଡଲେ ଭୀଷ୍ମଗଣ । ( ଙ, ଥ, ନ )

କଂକ ପକ୍ଷୀ ନାରାଜ ଭେଦଶର ଖଗମୁନା
କ୍ରୋଧେ ବନ୍ଧିଲେ ଭୀଷ୍ମେ ଅର୍ଜୁନର ସେହ୍ନା । ୨୧୨ ।
ଗର୍ଜିଣ ନାରାଜେ ଯେ ଆସୁଛନ୍ତି ଆଗେ
ଗୋବିନ୍ଦେ ବୋଇଲେ ଅର୍ଜୁନ ନବାର ସ୍ନେହା ବେଗେ । ୨୧୩ ।
ହି ଶାଖା ନାରାଜ ପାର୍ଥ ବନ୍ଧିଲ ଶର ତିନ
ଭୀଷ୍ମଂକର ସପତ ଶର ଛେଦିଲ ଫାଲଗୁନ । ୨୧୪ ।
ପୁଣ ଗାଙ୍ଗେୟ ମହାଭୀଷ୍ମ ରୂପେ ବ୍ୟାପି
ପଞ୍ଚବଂଶ ନାରାଜ ପୂରେଇ ବେଗେ କ୍ଷେପି । ୨୧୫ ।
ବେନ୍ତୁଂବେଲ ଗାଙ୍ଗେୟ କୋପେଣ ପ୍ରଜ୍ଵଳ
ଅବକ୍ଷଣେ ନାରାଜ ବନ୍ଧନ୍ତି ଜାଳାବଳୀ । ୨୧୬ ।
ଶାସ୍ତ୍ରେନ୍ଦ୍ରନୁର ନନ୍ଦନ କଇଛା ଜଗଜେଠୀ
ଢୋଟିଲେ ରଣରଙ୍ଗେ ତୁଷାର ଯେହ୍ନେ ବୃଷ୍ଟି । ୨୧୭ ।
ଭାନୁମନ୍ତ ଗୋଟୀ ତାରାକ୍ଷୀ ନାମେ ପକ୍ଷୀ
ନନ୍ଦଘୋଷ ରଥେ ବସି ସେ ସମର ଦେଖୁଅଛି । ୨୧୮ ।
ଅଷ୍ଟାଦଶ ଦିବସ ମହାଭାରଥ ଯୁଦ୍ଧ ଦେଖିବାକୁ
ଉଡଇ ଗଗନେ ସେ ମହା ମୁକତ ଲଭିବାକୁ । ୨୧୯ ।
ଭୀଷ୍ମଂକର ଶର ଢୋଟଇ ଗଗନ ପଥେ
ନାରାଜ ପଡିଲ ଯାଇଂ ତାରାକ୍ଷୀ ହୃଦଗତେ । ୨୨୦ ।
ନାରାଜ ପଡନ୍ତେ ସେ ହୋଇଲ ବେନଫାଳ
ଗର୍ଭରେ ଗୃହ ଡମ୍ବେ ଥିଲେ ସେ ପଡିଲେ ଭୂମିତଳ । ୨୨୧ ।
କୁରୁକ୍ଷେତ୍ର ମଣ୍ଡଳରେ ବେନି ଥାଠ ମଧ୍ୟଭୂମି
ତହିଂ ପଡିଲେ ସେ ଗୃହ ଡମ୍ବେ ମହାବ୍ରହ୍ମି । ୨୨୨ ।
ଭୀଷ୍ମ ଅର୍ଜୁନଂକର ଗହନ ଶରଘାତେ
ପଡିଲେ ଯୋଦ୍ଧାଯେ ଗଜ ଅଶ୍ଵ ରଥେ । ୨୨୩ ।
ଯମନକ ଦେଶର ରାଜା ଶିବପାଳ ନୃପତି
ଶ୍ଵେତ ମନ୍ଦର ବୋଲ ତାହାର ଦାନାନ ମତ୍ତ ହାଥୀ । ୨୨୪ ।
ଭୀଷ୍ମଂକର ଥାଠରେ ସେ ହୋଇଥିଲ ଆଗିଆଣି
ମର୍ଦ୍ଦେକ ମତ୍ତନାଗ ତାହାର ଥାଠ ଯେ ପଲାଣି । ୨୨୫ ।

କୋପେ ଯେ ବାଣ ପୁଣ ବିନ୍ଧଇ ବୀର ଫାଲଗୁନ
ହାବୋଡ଼ା ଶରେ ଯୋଦ୍ଧାନ୍ତ ମାଇଲ୍ କରେ ଘେନ । ୨୨୬ ।
ଶିବପାଳ ନୃପତି ପଡ଼ିଲ୍ ଅସାଷ୍ଟମେ
ଶ୍ୱେତ ମନ୍ଦର ହାଥୀ ପଡ଼ିଲ୍ ମତ୍ତଭ୍ରମେ । ୨୨୭ ।
ସେ ଗଜର ଘଣ୍ଟା ଦଉଡ଼ି ପଡ଼ିଲ୍କ ଛିଡ଼ି
ସେ ଗୃଧ୍ର ତମ୍ୱକୁ ଘଣ୍ଟା ପଡ଼ିଲ୍କ ମାଡ଼ି । ୨୨୮ ।
ସେ ଗୃଧ୍ର ତମ୍ୱକୁ ଘୋଟିଲା ଗଜ ଘଣ୍ଟା
ମଟିରେ ଆବୋରି ବସିଲ୍ ଅମ୍ୱୁକାଷ୍ଟା । ୨୨୯ ।
ସେ ଘଣ୍ଟାକୁ ମାଡ଼ି ବସିଲ୍ ଶ୍ୱେତ ମନ୍ଦର ମତ୍ତହାଥୀ
ତାହାର ଉପରେ ପଡ଼ିଲେ ରଥୀ ହାଥୀ ପାଦାନ୍ତ । ୨୩୦ ।
ହରଥ ଯୁଦ୍ଧକଇ ସେ ଆଦ ଈଶାନ
ତାରକ୍ଷୀ ପକ୍ଷୀର ପ୍ରେସନେକ ବିଧାନ । ୨୩୧ ।
ଅଗସ୍ତିଂକ ପୁଚ୍ଛାକଲେ ଯେ ବଇବସ୍ୱତ ମନୁ
ସଂସାରକୁ ପରମ ଗତି ମହାଭାରଥ ଶୁଣୁଂ । ୨୩୨ ।
ଜନ୍ମେ ଜନ୍ମେ ଭଜଲି ତୁମ୍ଭର ପଦ୍ମପାଦେ
ପରମ ଗତି ଲଭିଲି ମୁଂ ତୁମ୍ଭର ପ୍ରସାଦେ । ୨୩୩ ।
ପିତାମହ ନନ୍ଦନ ତୁମ୍ଭେ ପ୍ରତ୍ୟକ୍ଷେ ବ୍ରହ୍ମବେତ୍ତା
ମହାକଳ୍ପ ତରୁ ତୁମ୍ଭେ ଦୁର୍ବାକ୍ୟେକ ମହାଗ୍ୟାଂତା । ୨୩୪ ।
ପ୍ରଳୟ ଉଦ୍ଧାରଣ ନାଥ କାଳକାମ ଭୋଗି
ଜଗୁଜନ ଜୀବନ ତୁ ପରମାନନ୍ଦ ଯୋଗୀ । ୨୩୫ ।
ଯଶୋବନ୍ତୀ ନନ୍ଦନ ତୁ ମହା ଅନଙ୍କୁଂ ଅବତାର
ଶତେକ ଚନ୍ଦ୍ର ବ୍ରତିଲୁ ସାଧନେ ଯୋଗ କରି । ୨୩୬ ।
ତୋହାର ନାଭିରୁ ନିର୍ଜିତ ପଞ୍ଚ ଘଟ
ଚନ୍ଦ୍ରକଳା କାମ ଅନନ୍ତ ଯେ ଯେକ ବାଟ । ୨୩୭ ।
ଆୟୁର ଜ୍ୟୋତି ଧନୁ ଶସ୍ତ୍ର ଶିଶୁମନା
ଯେକାଦଶ ଦେବ ଯେ ତୋର ମୁଖରେ ସାଧନା । ୨୩୮ ।
ସ୍ୱାମୀ ଜାତ ଅନ୍ତ ମଧ୍ୟ ଅବସାନ ଜାଣୁ
ପ୍ରଳୟେକ ହୋଇଲେ ତୁ ଦିବସ ପ୍ରାୟେକ ମଣୁ । ୨୩୯ ।

ଜନ୍ମେ ଜନ୍ମେ ଭଜଇ ମୁଁ ତୋହୋର ପଦ୍ମପାଦେ
ପରମ ଗତି ପାଇଲି ମୁଁ ତୋହୋର ପରସାଦେ । ୨୪୦ ।
ବ୍ରହ୍ମାର ନାଥ ତୁ ପ୍ରତକ୍ଷେ ବ୍ରହ୍ମବେତ୍ତା
ମହତ୍ତ୍ୱ କଳ୍ପତରୁ ମୁଁ ତୋତେ ଆଶ୍ରିତା । ୨୪୧ ।
ଦଶଦ୍ୱାର ନିରୋଧି ସାଧିଲୁ ବ୍ରହ୍ମଗ୍ୟାଂନ
ପ୍ରଳୟ କାଳ ତୁ ଦେବ ବୁଝିଲୁ ଯେତିକଦିନ । ୨୪୨ ।
ସ୍ୱାମୀ ବାଳ ଅର୍କ ପ୍ରାୟେକ ବିରାଜେ ତବ ତନୁ
ତୋହୋର ଯେତିକ ଲୟକେ ଭୁଟିଲି ଶତମନୁ । ୨୪୩ ।
ଯାହାର ମହିଂମା ସ୍ୱାମୀ କହନ୍ତେ ନ ସରଇ
ମୁଁ କିସ କହିବି ମୁନି ହେ ମାନବ ଦେହ ବହି । ୨୪୪ ।
ଅଗସ୍ତିଂକର ଚରଣେ ଶରଣ ମୁଁ ନିତ୍ୟେ
ଶୂଦ୍ରମୁନି ସାରଳ ଦାସ ଭାବଇ ଅନୁବ୍ରତେ । ୨୪୫—୧୭୨୯ ।



## ଭୀଷ୍ମଙ୍କର ପ୍ରଥମ ଦିନ ଯୁଦ୍ଧ ଓ ତାରାକ୍ଷୀ ପକ୍ଷୀ ବିବରଣ

ବଇବସ୍ୱତ ମନୁ ପଚ୍ଛିଲେ ଶୁଣିମା ଅଗସ୍ତିଏ
ଯେ ଗୃଧ୍ର ଜନ୍ମ କଥା ତ ବଡ଼ାଇ ସନ୍ଦେହେ । ୧ ।
ସେ ତାରାକ୍ଷୀ ପକ୍ଷୀ ପୂର୍ବେ କେବଣ ଅଟଇ
କେବଣ ଅଭିଶାପେ ଭାରଥ ଯୁଦ୍ଧେ ପେଟ ତା ଫାଟଇ । ୨ ।
ମୁନି ହେ ଯେ କଥା ଶୁଣିତେ ମୋହୋର ବଡ଼ ଇଚ୍ଛା
ତୋ ମୁଖୁଂ ଶୁଣି ମୋର ପୂରୁ ମନବାଞ୍ଛା । ୩ ।
କହନ୍ତି ମହାମୁନି ପିତାମହ ବାଳଖିଲା
ଶୁଣ ହୋ ମନୁ ପୁରୁଷ ତୋହୋର ମତି ଅନର୍ଗଳା । ୪ ।

---

୨୪୫।୨ ଶୂଦ୍ରମୁନି ସାରଳ ଦାସ ଚଇତନ ମହାଭାରତେ । ( ଙ, ଟ, ଘ )
୪।୨ ଶୁଣ ବଇବସ୍ୱତ ମନୁ ସେ ମହିଂମା ଅନର୍ଗଳା । ( ଜ, ଥ )

ସତ୍ୟ ଯୁଗେ ଶ୍ୱେତକଳ୍ପ ବୋଲି ଯେଉଁକଇ ନରେନ୍ଦ୍ର
ସମସ୍ତେଙ୍କେ ଆକାଶେ ସେ ହୋଇଲା ଅସକନ୍ଦ । ୫ ।
ଶୁକ୍ର ବୋଲି କରି ଯେ ତାହାର ସନ୍ତତି
ପଦ୍ମ ଦ୍ୱୀପରେ ସେ ଅଛଇ ଆଧିପତି । ୬ ।
ବଡାଇ ବିଖ୍ୟାତ ସେ ଶୁକ୍ର ନାମେ ମହାରାଜା
ବ୍ରହ୍ମବତୀ ବୋଲି ଯେ ତାହାର ଭରଯା । ୭ ।
ପତିଭକ୍ତା ସ୍ତ୍ରିୟା ସେ ଅଛଇ ମହାସତୀ
ଦୟାୟେ ଜଗତବୋଧିନୀ ଆଚରେଣ ସତ୍ୟବ୍ରତ । ୮ ।
ସତ୍ୟହୁଂ ମିଥ୍ୟା ସେ ନ କହଇ ସର୍ବ କାଳେ
ଚାରି ପୁତ୍ର ଉପୁଜିଲେ ତା ଗର୍ଭ ମଣ୍ଡଳେ । ୯ ।
ସାରି, ସୁରି, ସରି, ସିରି ଯେଉଁହି ଚାରିବଳା
ପଶ୍ଚିମ ସାରକ୍ଷେ ତାହାଂକ ତେଜ କୃଷ୍ଣ ବର୍ଣ୍ଣ କଳା । ୧୦ ।
ଶ୍ୱେତ ଦ୍ୱୀପ ନଉଞ୍ଚ ଦ୍ୱୀପ ଶାକଳ୍ପ ଯେ କୁଶ ଦ୍ୱୀପ
ଯେଉଁ ଚାରି ଦ୍ୱୀପେ ଚାରି ଭାଇ ହୋଇଲେକ ନୃପ । ୧୧ ।
ପଦ୍ମ ଦ୍ୱୀପେ ସେ ଯେ ଶୁକ୍ର ମହାରାଜା
ଆପଣା ଇଚ୍ଛାୟେ ସେ ପାଳଇ ଜନପ୍ରଜା । ୧୨ ।
ଶୁକ୍ର ରାଜାର ରାଜ୍ୟେ ଜନପ୍ରଜା ସୁଖୀ
ସୁବର୍ଣ୍ଣର କଳସ ନେତ ପବିତ୍ର ପିଡାରେଣ ଦେଖି । ୧୩ ।
ସେ ମହାରାଜ୍ୟରେ ସମସ୍ତେହେଂ ମହାଋଷୀ
ଯେ ଯିସ ଅର୍ଜଇ ସେ ନଅଇ ଦୁଇରାଶି । ୧୪ ।
ଆଠ ସଇନ ନାହିଂ ସେ ଶୁକ୍ର ରାଜା ଭୁଲେ
ଯେଉଁକେଶ୍ୱର ପଞ୍ଚଦ୍ୱୀପ ରକ୍ଷା କରଇ ସେ ଭଲେ । ୧୫ ।
ଆଭରଣ ହୋଇଥାଇ ସେ ବ୍ୟାଘ୍ରଚର୍ମ ଗୋଟାୟେ
କଣୟ ମୃଗ ଛଉଂଣୀ କଟିରେ କାଛଟାୟେ । ୧୬ ।

---

୫।୨  ସମସ୍ତେଙ୍କେ ସର୍ଗେ ସେ ହୋଇଲା ରାଜ ଇନ୍ଦ୍ର । ( ଛ, ଔ, ଚ, ଥ )
୧୦।୨  ପଶ୍ଚିମ ସାରକ୍ଷେ ତାହାଂକ ତେଜ ବର୍ଣ୍ଣ କଳା । ( ଙ, ଧ )
୧୬।୨  କୃଷ୍ଣାଜିନ ମୃଗ ଛାଲ ତାହାର କଟିରେ କାଛିଟାୟେ । (ଥ, ଧ, ନ, ଔ )
୫।୨  ଅସକନ୍ଦ — ଇନ୍ଦ୍ର ।

ଭସ୍ମ ବିଲେପନ ଅଙ୍ଗେ, ମାଥେ ତାର ଯେକ ଜଟା
ପଞ୍ଚଦ୍ୱୀପକଇ ତାର ନାଭିକ ପାଞ୍ଚଗୋଟା । ୧୭ ।
ଯେକା ଦିବସେକ ନୃପତି ପୃଥିବୀ କରଇ ପୟାଣ
ସେ ପଦ୍ମଦ୍ୱୀପର ଆୟତନ ଯେ ପଞ୍ଚଲକ୍ଷ ପୂର୍ଣ୍ଣ । ୧୮ ।
କନ୍ୟମାସ ଶୁକ୍ଳପକ୍ଷ ପଉର୍ଣ୍ଣମୀର ଦିନ
ଲଅ ନର୍ଟୀକାଳ ଯେକାବେଳେ ସେ କରଇ ଭୋଜନ । ୧୯ ।
ବାହୁଡ଼ି ସେ ଦିନ ପର୍ଯ୍ୟନ୍ତେ ସେ ଆହାର କରି ନ ଥାଇ
ଭଣ୍ଡାର ଧନ ପାଦ ରେଣୁ ପ୍ରାୟେକ ମଣଇଂ । ୨୦ ।
ସେ ପଦ୍ମଦ୍ୱୀପ ଈଶାନ କୋଣେ ଉଦେ ନାମେ ଗିରି
ତହୁଂ ସେ ଭାସ୍କର ଦେବତା ଉଦୟେ ଗଗନ ବିହାରୀ । ୨୧ ।
ସେ ଶୁକ ରାଜାର ତେରଲକ୍ଷ ପଞ୍ଚତରଶି ସହସ୍ର ଅଂକେ
ଅନୁସର ବୋଲଣ ଯେକ ସମ୍ବତ୍ସରେକେ । ୨୨ ।
ସେ ଶ୍ରାଦ୍ଧ କନ୍ୟମାସ ଶୁକ୍ଳପକ୍ଷ ପଉର୍ଣ୍ଣମୀ
ବୃହସ୍ପତି ବାର ଅଶ୍ୱିନୀ ନକ୍ଷତ୍ର ଯେ ଭୂମି । ୨୩ ।
ତଇତିଳ ନାମେ କରଣ ଆୟୁଷ୍ମାନ ନାମେ ଯୋଗ
ସପତ ଦିବସ କନ୍ୟ ସଂକ୍ରାନ୍ତିକ ଯେ ଭୋଗ । ୨୪ ।
ସେ ଦିନ ନୃପତିର ହବିଷ୍ୟ ପାରଣାର କାଳେ
ଅତି ଅମାତି ହୋଇଲା ପଶ୍ଚିମ ସମୁଦ୍ରର କୂଳେ । ୨୫ ।
ମେରୁନାଭି ଖଣ୍ଡରେ ମନ୍ଦର ବୋଲି ଗ୍ରାମ
ବଇଶ୍ୟାନର ବୋଲି ଯେକ ବର୍ଣ୍ଣର ଯେ ନାମ । ୨୬ ।
ସେ ବଇଶ୍ୟାନର ଭାରିଯା ନାମ ଯେ ମାଳତୀ
ଅତିଅନ୍ତ ସୁନ୍ଦରୀ ସ୍ୱୀଣ ସେ ସ୍ୱାମୀରେ ଭଗତି । ୨୭ ।

---

୨୦।୨ ଧନଭଣ୍ଡାର ସମ୍ପଦ ଦ୍ରବ୍ୟ ପ୍ରାୟେକ ମଣଇଂ । ( କ, ଙ, ଟ )
୨୨।୧ ସେ ଶୁକ ରାଜାର ତେର ସହସ୍ର, ପଞ୍ଚତରଶ ଅଂକେ । ( ଧ, ଛ )
୨୨।୨ ଅନୁସର ବୋଲଣ ଯେକଇ ସମ୍ବତ୍ସରେକେ । ( କ, ଘ, ତ )
୨୫।୧ ସେ ଦିନ ନୃପତର ହବିର୍ଭାଗ କାଳେ । ( ଙ, ଙ )
୨୭।୧ ସେ ବଇଶ୍ୟାନର ଭାରିଯା ନାମ ଯେ ମାଳାବତୀ । ( ଙ, ଔ, ଧ, ନ )

ବଇଶ୍ୟାନର ଭରଯାର ପାକାଶୁଦ୍ଧ କାଳେ
ସ୍ନାନ କରି ଗଲା ପଦ୍ମାବତୀ ତୀର୍ଥ ଜଳେ । ୨୮ ।

ସ୍ନାହାନ କରି ସାରି ସେ ବାଳୀ ବାହୁଡ଼ି ଆସନ୍ତେ
ବେଳ ଉଦ୍ୟାନ ହୋଇଲା ଯେ ସନ୍ଧ୍ୟାର ଯୁଗତେ । ୨୯ ।

ସେ ପଦ୍ମାବତୀ ନଦୀ ତୀରରେ ଶାହାଡ଼ା ବନକା
ତହିଂର ଭିତରେ ବାଳୀ ଗମନ କରଇ ଯେକା । ୩୦ ।

ଋଷିକେଶନ ବୋଲ ଯେତକଇ ଶୂଦ୍ର ଜାଣି
ବଳକାରେ ଧଇଲା ତାକୁ ପ୍ରଥମ ଦଣ୍ଡ ରାତି । ୩୧ ।

ପେଲି ପକାଇ ତାକୁ ବୋଇଲା ଯେ ମାଳତୀ
ଶୁଦ୍ଧ ମହାରାଜା ରାଜ୍ୟେ ତୋର ଯେତେକ ଅନୀତି । ୩୨ ।

ପୁଣି ସୁନ୍ଦରୀ ଯେ ଅଭାବେ ଡାକୁ ଲେଖି
ତୁ ମୋତେ ଧରୁ ବୋଲ ଶୁଦ୍ଧ ମହାରାଜା ଆନ ତୋତେ ଅଛି । ୩୩ ।

ଋଷିକେଶନ ଶୂଦ୍ର ତାକୁ ବଳେ ଧରି ଆଣି
ମବନ ଆରମ୍ଭିଂ ମୋତେ ରଖ ଗୋ ସନ୍ଧ୍ୟାରୂଣୀ । ୩୪ ।

ସେ ମାଳତୀ ଶୁଦ୍ଧ ମହାରାଜାଂକ ନାମ ଧରି ଡାକିଲା
ବୋଇଲା ଶୁଦ୍ଧ ମହାରାଜା ଜୀବନ୍ତେ ନାହିଂକ ଆଜ ମଲା । ୩୫ ।

ନଟୀକାଳ ଖଣ୍ଡ ଲଆ ମୁଣ୍ଡିଂ ଯେ ଚୋଟିଯେ
କଉତୁକେ ଭୋଜନ କରଇ ଶୁକ୍ର ମହାରାଯେ । ୩୬ ।

ଉଦୟ ଗିରି ନିକଟିଂ ପଦ୍ମତୋଳା ଘାଟ
ଲକ୍ଷଣ ସହସ୍ର ଯୋଜନ ଦୂର ନିକଟ ନୁହେଂ ବାଟ । ୩୭ ।

---

୨୮।୧ ବଇଶ୍ୟାନର ଭରଯାର ପାକାସ୍ପର୍ଶ କାଳେ । ( ଊ, ଠ, ଥ, ନ )
୨୮।୧ ବଇଶ୍ୟାନର ଭରଯାର ସ୍ନାନ ସ୍ନାହାନର କାଳେ । ( ଘ, ଛ )
୨୮।୨ ସ୍ନାନ କରି ଗଲା ପଦ୍ମତୋଳା ନଦୀ କୂଳେ । ( ଘ, ଙ, ଟ, ଠ, ଢ଼ )
୩୦ { ସେ ପଦ୍ମତୋଳା କୂଳେ ବଳୀ ଗମନ କରଇ ଯେତିକା
ମତ୍ତ ଗଜ ଠାଣି ଜାଣି ଚଳଇ ସେ ନାୟିକା । (ଙ, ଝ, ଧ)

୧,୦

ତେବେ ଦୂରେ ପରଦାର ହରଣ ପଡିଲା
ଶୁନ୍ଦ ମହାରାଜାଂକୁ ସେ ଦୂଶହ୍ନଂ ହୋଇଲା । ୩୮ ।
ଘେଜନର ବେଳେ ରାଜା ପେଷିଲା ଶର ଗୋଟି
କେ କାହାକୁ ବଳହ୍ରାରେ ହରୁଛି ତାହା ଇନ୍ଦ୍ର ପକା କାଟି । ୩୯ ।
ଗୃଳଶ ସହସ୍ର ଯୋଜନେ ପଡିଲା ସେହୁ ବାଣ
ବଶିକୈସନ ଇନ୍ଦ୍ର କାଟିଲା ତତକ୍ଷଣ । ୪୦ ।
ଅଗସ୍ତି ବୋଇଲେ ଶୁଣ ବଇବସ୍ୱତ ମନୁ
ଜୀବ ଜନ୍ତୁ ଉପଦ୍ରବ ନାହିଂ ଶୁନ୍ଦ ମହାରାଜା ରାଜ୍ୟଂକୁ । ୪୧ ।
ଉପସ୍ଥ ଥିଲେ ସେ ହରଇ ନା ପରସ୍ତିରୀ
ତାହାକୁ ଛେଦ ନାରଜ ଗଳକ ବାହୁଡ । ୪୨ ।
ଯେସନେକ ମହିମା ସେ ଶୁନ୍ଦ ନାମେ ନୃପତି
ତାହାରେ ଶୃଙ୍ଗଦଗେ ନାହିଂ ଲଂଘନ୍ତା ଅମାତ୍ତି । ୪୩ ।
ଯେସନେକ ତାହାର ରାଜ୍ୟ ନାହିଂ ଭିକ୍ଷାବାସୀ
ପରଜା ଯାହା ଅରଜଇ ସେ ନଅଇ ଦୁଇ ରାଶି ।
ବତଶ ଯୁଗ ଭୋଗ କଲା ରାଜା ହୋଇଣ ସନ୍ୟାସୀ । ୪୪ ।
ସେ ରାଜାର ଧର୍ମ ଦୃଷ୍ଟିକା ନିମନ୍ତେ
ଇନ୍ଦ୍ର କୁବେର ବେନି ହେଲନ୍ତି ଅନୁବ୍ରତେ । ୪୫ ।
ଇନ୍ଦ୍ର ବୋଲଇ ନ ପୁଣ ଇନ୍ଦ୍ର ପଦ ଘେନ ବସଇ ଅମର ସ୍ୱର୍ଗେ
କୋବେର ବୋଇଲା ମୋର ଅଳକା ବାରିନିଧି
ଭଣ୍ଡାର ଘେନଇ ବଇଶ୍ରବଣ । ୪୬ ।
ଯେସନେକ ବଗୃର ସେ ବେନି ଦିଗପାଳେ
ଦରିଦ୍ର ଅବସ୍ଥା ହୋଇଲା ତନୁ ଖିନ୍ନ ଅଛନ୍ତି ଅବଳେ । ୪୭ ।

---

୪୬ { ଇନ୍ଦ୍ର ବୋଲଇ ନ ପୁଣ ମୋର ଇନ୍ଦ୍ର ପଦ ଘେନଇ
କୋବେର ବୋଲଇ ନିଜ ମୋର ଅଳକା ପୁର ନଅଇ । (ଙ, ଥ)

୪୨।୧ ଉପସ୍ଥ—ଇନ୍ଦ୍ର ।

୪୬।୨ କୋବେର—କୁବେର ।

କେଶ ବାସ ମଳିଣ ଯେ ହୋଇ ମହା ଦୁଃଖୀ
ଶ୍ୱେତବଟ ତଳେ ଶୁନ୍ଦ ମହାରାଜା ଦେଖି । ୪୮ ।
ଶୁନ୍ଦ ମହାରାଜାର ଯେ ଉପୁଜିଲା ସାହସ
ବୋଇଲା ବ୍ରାହ୍ମଣଙ୍କର କଷ୍ଟ ଦେଖି ମୋର ସକଳ ଧର୍ମ ଗଲା ନାଶ ।୪୯
ମୋହୋର ରାଜ୍ୟେ ତ ନାହିଁ ଯେତେନେକ କଷ୍ଟି
ଆଜ ବ୍ରାହ୍ମଣଙ୍କର ମୁଁ ପୂରେଇବି ଆଶିଷ୍ଟି । ୫୦ ।
ମାଗ ହେ ବ୍ରାହ୍ମଣ ତୁମ୍ଭ ମନେ ଯାହା ଇଚ୍ଛା
ପୂରେଇବି ମନୋରଥ ତୁମ୍ଭର ମନ ବାଞ୍ଛା । ୫୧ ।
ବେଦ ଆଧ୍ୟାନ କରଣ କରେ ହଲେ ଶଙ୍ଖ
ଜଗନ୍ନାଥ କରଣ ଶୁଣନ୍ତ ମାଗନ୍ତ ବ୍ରାହ୍ମଣ ଦ୍ୱିଜ ରଙ୍କ । ୫୨ ।
ବ୍ରାହ୍ମଣେ ବୋଇଲେ ଶୁଣ ଶୁନ୍ଦ ଯେ ନୃପତି
ଉପର ହାଥେ ପାଣି ଦିଅ କର ସତ୍ୟବ୍ରତି । ୫୩ ।
ଶୁନ୍ଦ ରାଜା ବୋଇଲେ ଯେ ମୋହୋର ସତ୍ୟ ସତ୍ୟ
ଯାହା ମାଗିବ ତାହା ଦେବଇଁ ନିଶ୍ଚିତ । ୫୪ ।
ଉପର ହାଥ କରି ରାଜା ଶଙ୍ଖେ କୁଶ ପାଣି
ମଦ୍ୟ ମାଂସେ ଭୋଜନ ତୁ ଦେବା ହୋ ନୃପମଣି । ୫୫ ।
ଶୁନ୍ଦ ମହାରାଜା ବୋଇଲା ବ୍ରାହ୍ମଣ ଜନ୍ମ ତୁମ୍ଭେ ମୁହିଁ
ଦ୍ୱିଜବର ହୋଇଲେ କି ଏମନ୍ତ କଥା କୁହ । ୫୬ ।
ମୁହିଁ ତ ଜାଣିଲି ତୁମ୍ଭେ ଅଟ ଯେ ରାକ୍ଷସ
ଅସୁରେ ଭକ୍ଷଣ ନିତ୍ୟ କରନ୍ତି ମଦ୍ୟ ମାଂସ । ୫୭ ।
ବୋଲନ୍ତି ବେଦଜନେ ବ୍ରାହ୍ମଣ ହୋଉ ଅଥବା ରାକ୍ଷସ ହୋଉ
ସତ୍ୟ ଲଂଘିବୁ କି ତୁ ହୋଇଣ ମହାପ୍ରଭୁ । ୫୮ ।
ଆମ୍ଭେ ନ ମାଗିଲୁ ତୁ ପ୍ରାର୍ଥନା କଲୁ ଯାଚ
ନ ହଲେ ଧର୍ମ ରାଜା ନାହିଁଟି ତୋର କଚ୍ଛ । ୫୯ ।

---

୫୦ { ମୋର ରାଜ୍ୟରେତ ନାହିଁ ଦୁଃଖୀ କଷ୍ଟି
   ମାଗ ବେଳ ବପ୍ରେ ତୁମ୍ଭର ଦରିଦ୍ର ଯାଉ ଫିଟି । (ଡ, ଥ, ନ)

୫୩।୨ ଶଙ୍ଖେ ପାଣି ଭରି ହସ୍ତେ କର ସତ୍ୟବ୍ରତା । (କ)

ଶୁନନ୍ତି ବୋଇଲେ ମୋର ଜୀବନେ ଆଶା ନାହିଁ
ସେହୁ ତେଜକ ଦୁଃଖପଦ ଭୋଗିଲ କାହିଁ ପାଇଁ । ୬୦ ।

ଶୁନ ମହାରାଜା ବୋଇଲେ ମୁଂ ଜାଣିତ ନୁଆରଇ
ଭକ୍ଷ ମନୁଷ ମାଂସ ଦେହ ମୋର ଦେଲ । ୬୧ ।

ବ୍ରାହ୍ମଣ ବୋଇଲେ ତୋର ଅପାର କାଳର ମାସେଂସ
ତାହା ଭୁଞ୍ଜିଲେ ତହିଂରେ ଅଛଇ ସ୍ୱାଦୁ ରସ । ୬୨ ।

ତୋହୋର ପ୍ରାପ୍ତେ ରାଜାକୁ ଭେଟିଲୁ ସୁବେଳେ
ସର୍ବେହିଂ ନିବୃତ୍ତ ହୋଇବୁନା ସେ ତୋହୋର ପୁଣ୍ୟବଳେ । ୬୩ ।

ଶୁନ ମହାରାଜା ବୋଇଲ ବୃଦ୍ଧ ମାଂସ ବୋଲ ମୋତେ ଯେବେ ନ ଭକ୍ଷି
ଚେଲକ ବୟସେ ମୋର ଗୃହ ଗୋଟି ପୁତ୍ର ଅଛି । ୬୪ ।

ଅପାର କଷ୍ଟୋର ମୋତେ ଦାନ ମାଗୁଅଛ
ଯାଅ ଯା ବ୍ରାହ୍ମଣେ ତୁମ୍ଭେ ଗୃହ ପୁତ୍ରନ୍ତ ମୋର ଭକ୍ଷ । ୬୫ ।

ଦୁଇ ପୁତ୍ର ଭକ୍ଷ ଦୁଇପୁତ୍ର ନେଇଯାଅ ଘରକୁ
ବ୍ରାହ୍ମଣେ ବୋଇଲେ କୋଟି କଲ୍ପ ଆଇଷ ହୋଉ ତୁକୁ । ୬୬ ।

ଶୁନ ମହାରାଜା ବଚନେ ଗଲେ ଦ୍ୱିଜବର ବେନି
ଗୃହ ପୁତ୍ରନ୍ତ ଭେଟିଲେ କାଳାନଳ ବଦନ । ୬୭ ।

ସାର, ସୁର, ସର, ସିର, ଗୃହ ପୁତ୍ରଂକର ନାମ
ଚେଲକ ସୁକୁମାର ସେ ଅଭିନବ କାମ । ୬୮ ।

ମନେ ବିସ୍ମରନ୍ତ ବେନି ଦିଗପାଳ
ବାବୁ ଧନ୍ୟ ଧନ୍ୟ ଶୁନ ମହାରାଜା ତୋହୋର ପୁଣ୍ୟବଳ । ୬୯ ।

କାହିଁ ନାହିଁ ନରେନ୍ଦ୍ର ଯେସନେକ ମହତ୍ତ୍ୱ
ସେ ପୁତ୍ରନ୍ତ ଛାଡିବାକୁ ବଳବ କାହାର ପୁଣ ସତ । ୭୦ ।

କୁମରଂକ ଅଗ୍ରତେ କଲେ ବେଦ ଧ୍ୱନି
ଗୃହ କୁମରେ ଆସି କଲେକ ବନସ୍ତେ ଦଇନ । ୭୧ ।

---

୬୪।୨ ଚେଲ୍‌କ—ଖେଳୁଆଳ ବା କମ୍ ବୟସ ।

କୁମାରେ ବସ୍ତିରନ୍ତି ବୁଭୁକ୍ଷିତ ଦ୍ୱିଜବର
ଅନ୍ନେ କ୍ଷୀଣ ଦାରିଦ୍ର କ୍ଷୁଧାରେ ଆତୁର । ୭୨ ।
ମହାମନ୍ତ୍ର ପଢ଼ି କରି କଲ୍ୟାଣ ହାଦେ ବାଞ୍ଛି
ବାବୁ ଶୁନ୍ଦ ମହାରାଜାଂକର ତୁମ୍ଭନ୍ତ ଆଗ୍ୟାଂ ଅଛି । ୭୩ ।
ପିତାଂକର ଆଗ୍ୟାଂ ସେ ଯେ ନବେଶିତ ଶିରେ
ପ୍ରଣପତ୍ୟ ହୋଇ ଜିଜ୍ଞା ହୋଇଲେ ଗୃହ ଯେ କୁମରେ । ୭୪ ।

ବ୍ରାହ୍ମଣେ ବୋଇଲେ ଆମ୍ଭେ ମହ୍ଣୁ ମାସ୍ୟେଂସ ଭୋଜ
ଶୁନ୍ଦ ମହାରାଜାଂକର ଆଗ୍ୟାଂରେଣ ଭୁଞ୍ଜି । ୭୫ ।
ସତ୍ୟ ପାଳଲ ଆମ୍ଭନ୍ତ ଭୋଜନ ନମିତ୍ତ
ମହ୍ଣୁ ମାଂସେ ଆମ୍ଭେ ସର୍ବଦାସ୍ୟେ ବ୍ରତୁଂ । ୭୬ ।

ଆପଣାର ସତ୍ୟ ନମିତ୍ତେଣ କର
ଗୃହଜଣ ମାନଲ ତାହାଣାବ୍ରତେକ ଶଙ୍ଖେ ଜଳତଳ ଭରି । ୭୭ ।
ତୁମ୍ଭେ ପୁଣ ଶୁନ୍ଦ ମହାରାଜାଂକର ଗୃହପୁଜ ଗୋଟି
ତୁମ୍ଭର ମାସ୍ୟେଂସ ଆମ୍ଭେ ଭୁଞ୍ଜିବୁ ସୁଖେ ବାଣ୍ଟି । ୭୮ ।

ଆମ୍ଭେ ଦୁଇଜଣ ଦୁଇଜଣଂକୁ ଭୁଞ୍ଜିବୁ
ଦୁଇଜଣଂକର ମାସ୍ୟେଂସ ଦୁଇ ଭାରଯାଂକ ପାଇଂ ନେମୁଂ । ୭୯ ।
ଶାନ୍ତଚବନ୍ତ ହୋଇ ସୁମର ଇଷ୍ଟ ଦେବତା
ବକୋଞ୍ଚ କାଟିବୁ ତୁମ୍ଭର ମାସ୍ୟେଂସ ଆଗ୍ୟାଂ ଦଲେ ତୁମ୍ଭ ପିତା ।୮୦।
ବୁଭୁକ୍ଷିତ ନମନ୍ତେ ବହନ କର ବୋଲ
ଆଧାର ଭିତରୁ କାଢିଲେ ନଶିମଳ । ୮୧ ।
କୁମାରେ ବୋଇଲେ ହୋ ରହ ରହ ଦ୍ୱିପ୍ରବର
ପିତା ହୋଇ ସ୍ୟେମନ୍ତ ଦେଖିଲ ଅଛୁ କ ତୁମ୍ଭର । ୮୨ ।

---

୭୨ { କୁମାରେ ବସ୍ତିରନ୍ତି ସ୍ୱେ ବୁଭୁକ୍ଷିତ ଅଭ୍ୟାଗତ
{ ତନୁକ୍ଷୀଣ ଦରିଦ୍ର ସ୍ୱେ କ୍ଷୁଧା ଆତୁର । (ଘ,ଝ,ଚ)

୮୨।୧ ପିତା ହୋଇ ସ୍ୱେହେନେକ ଅଛୁ କି ଦେଖିଲ ସଂସାର । (ଝ,ଥ)

୮୧।୨ ନଶିମଳ—ତୀକ୍ଷ୍ଣ ଖଡ୍ଗ ।

ପୂର୍ବେଣ ଶୁଣିଲୁ ଅଛନ୍ତି ଶିବି ନାମେଣ ନୃପତି
ଆପଣା ମାଂସ କାଟି ଦେଇ ରଖିଲା କପୋତି । ୮୩ ।
ଆରେକ ରାଜାଏ ଥିଲା ଜୀମୂତବାହାନ
ଶରୀରୁ ମାଂସ ଦେଇ ତୋଷିଲା ଗରୁଡ଼ର ମନ । ୮୪ ।
ଯଦ୍ୟପି ସୁଗ୍ୟାନୀ ହୋଇବନା ପିତା
ପୁତ୍ର ଜାତ ନିମନ୍ତେ ଦେବ ପିତୃରେ ବ୍ୟଗତା । ୮୫ ।
ବଂଶ ରକ୍ଷାର ନିମନ୍ତେ ଯେବେ ପିତାର ମନବାଞ୍ଛା
ଅନେକ କଷ୍ଟେରେ ଯେ ସନ୍ତାନେ କରଇ ରକ୍ଷା । ୮୬ ।
ପିତା ହୋଇ ଯେବେ ପୁତ୍ରନ୍ତ ନାଶ କରି
ନରଏ ଜାଣିଲୁ ବାର୍ଯ୍ୟଦାତା ସେ ନୋହଇ ଆମ୍ଭରି । ୮୭ ।
ଆମ୍ଭେ ତ ସାମର୍ଥ ଜଗୁଜନ କତା
ସେ ଘୁର ଆମ୍ଭର ନୋହଇନା ପିତା । ୮୮ ।
ପିତା ହୋଇ ପୁତ୍ରନ୍ତ ଯେବେ ନ ବାଞ୍ଛଇ ଭଲ
ଆମ୍ଭେ କମା କରିବୁ ସେ ଦୁଷ୍ଟ ପିତାର ବୋଲ । ୮୯ ।
ଯାଅ ଯା ବ୍ରାହ୍ମଣେ ତୁମ୍ଭେ ଏଠାରୁ ବେଗେଣ ବାହୁଡ଼ି
ସେ ତୁମ୍ଭନ୍ତ ନିପୁତ୍ର କରୁ ଆନ ମାଂସ ଦେଇ କରି । ୯୦ ।
ନରଗଣ ବଚନେ ଦ୍ୱିହ୍ମଂ ଚଳଚଲେ ଦ୍ୱିଜବରେ
ବଡ଼ାଇ ଅଶକତେ ମିଳିଲେ ଯାଇଂ ଶୂନ୍ୟ ମହାରାଜାର ସମ୍ମୁଖରେ । ୯୧ ।

---

୮୪।୨ "ଶରୀରୁ ମାଂସ ଦେଇ ତୋଷିଲ ଗରୁଡ଼ର ମନ"
ଏହି ପାଦର ପାଦାଂଶ ପରେ 'ଛ' ପୋଥିର ଅଧିକା ପାଠ—
ଆବର ରାଜାଏ ଥିଲା ହରିଚନ୍ଦନ ନୃପତି
ପୁଅ ଭାରିଜା ବିକା ତୋଷିଲ ବିଶ୍ୱାମିତ୍ର ଯତି ।
କାଳୁଘଣ୍ଟ ନାମେ ପୂର୍ବେ ରାଜାଏକ ଥିଲା
ଭିକ୍ଷା ମାଗିଣ ତାହାର ସୁକୃତ ରଖିଲା ।
ମହା ଧାର୍ମିକ ରାଜା ପୂର୍ବେ ଯେତେ ଯେତେ ଥିଲେ
ପୁଅ ମରାଇ କେହି ଧର୍ମ ନ ରଖିଲେ
୯୦।୨ ସେ ତୁମ୍ଭନ୍ତ ନିପୁତ୍ର କରୁ ତାହାର ମାଂସ ଦେଇ କରି । (ଭ,ଥ,ନ)

କ୍ଷୁଧାର୍ତ୍ତୀ ହୋଇଣ ସେ ବୋଲନ୍ତି ବ୍ରାହ୍ମଣେ
ଷଇଲୋକ୍ୟେ ଶୁଣିଲୁ ତୋହୋର ସାଧୁପଣେ । ୯୨ ।

ତୋହୋର ଷାର୍ଥେ ପୁତ୍ରେ ନୋହନ୍ତି ଯେ ଜାତ
ଭାର୍ଯ୍ୟା ତୋହୋର ଦାର ଚଉର୍ଯ୍ୟପଣେ ଜାତକଲ ତାହାନ୍ତ । ୯୩ ।

ନଚେତ୍ୟେ ଯେବେ ପୁତ୍ର ତୋହୋର ହୋଇଥାନ୍ତେ
ପିତାର ଆଜ୍ଞାଂ ସେ କେମନ୍ତେ ଲଂଘନ୍ତେ । ୯୪ ।
ପୁତ୍ରହିଂ ସେ ବ୍ରତନ୍ତି ସିନା ପିତାର ଧର୍ମବଳେ
ଭାର୍ଯ୍ୟାର ମନ୍ଦପଣେ ଦୂଷିତ ହୋଇଲୁ ଯେଉଁକାଳେ । ୯୫ ।

ଆହ୍ମହିଂ ଅନର୍ଥାପ ଜାଣନ୍ତୁ ଯେବେ ତୋତେ
ତୋତେହେଂ ପ୍ରାର୍ଥନା ଆହ୍ମେ କରନ୍ତୁ କେମନ୍ତେ । ୯୬ ।

ଗୁରସ୍ତର ଆଜ୍ଞାଂଏ ଯେବେ ନ ଚଳଇ ଗୃହବାସ
ସେ ପୁତ୍ର ବ୍ରତବାରେ ପ୍ରୟୋଜନ କସ । ୯୭ ।
ବହୁତ ଝିଂଘାସି ବୋଇଲେ ବ୍ରାହ୍ମଣେ
ସତ୍ୟ ବିବେକ ତୁ ବୋଲାଉ କେଉଂ ଗୁଣେ । ୯୮ ।
ଅନେକ ଝିଂଘାସ ରାଜା ନୁଆରିଲ ସହି
ରାଗେଣ ଶୁନ୍ଦ ରାଜା ଖଡଗ ଘେନି କହି । ୯୯ ।

ଭାର୍ଯ୍ୟାର ମୂଣ୍ଡ ଯେ କାଟିବି ଯେଉଁକ୍ଷଣ
ହତ୍ୟା ଦୋଷ ଲଭିବ ହୋଇବ ଅଧର୍ମିଣ । ୧୦୦ ।

ଭାର୍ଯ୍ୟାକୁ ବୋଲଇ ଶୁନ୍ଦ ସେ ନୃପତି
ପରଦାରାଏ ଜାତକଲୁ ଯେ ସନ୍ତତି । ୧୦୧ ।
କୋପେଣ ଶାପ ସେ ଦେଇଲ ମହାରାଜେ
ଦାର ଚଉର୍ଯ୍ୟେ ଯେବେ ଜନ୍ମିଲ [illegible] । ୧୦୨ ।

କହୁଂ କହୁଂ ମହାରାଜା ବୋଇଲା [illegible]
ପକ୍ଷୀଣୀ ହୋଇ ଜାଇ [illegible] । ୧୦୩ ।

---

୯୪।୨ ତୋହୋର ବଚନ ଯେମେ ମେଣ୍ଟଣ କରନ୍ତେ । (ତ,ଥ,ନ)

ଯେ ସୁରକୋଟି କୁମାର ଜନ୍ମ ହୁଅନ୍ତୁ ତୋର ଗର୍ଭେ
କାଳ ବଞ୍ଚ ତୁ ତାଙ୍କରି ପତ୍ନୀ ହୋଇ ମନ୍ଦଗର୍ବେ । ୧୦୪ ।
ଯେଣୁ ମୋହୋର ବଚନ ଭ୍ରଷ୍ଟ କଲେ ତୋର ପୁତ୍ରେ
ଅନ୍ଧ ଜନ୍ମ ହୋଇ ଥାଆନ୍ତୁ ତୋହୋର ଗର୍ଭଗତେ । ୧୦୫ ।
ଗର୍ଭେ ଥିବେ ତୋହୋର ଜନ୍ମ ଗୁରୁକୋଟି
ଦ୍ରୁପଦ ଶାପ ପଶ୍ଚାଂ କାଳ ଶୁନ ତପୋନଷ୍ଟି । ୧୦୬ ।
ବନସ୍ତୁ ହୋଇଣ କୋଳଇ ତାଙ୍କର ଭରସା •
ଦ୍ରୁପଦ ଶାପ ମୋତେ ଲାଗ ତ ମହାରାଜା । ୧୦୭ ।
ପୁତ୍ରଂକର ଦୋଷେ ମୋତେ ଦେଲ ଅଭିଶାପ
କେମନ୍ତେ ଖଣ୍ଡନ ଯେ ହୋଇବ ଯେ ମୋହୋର ପାପ । ୧୦୮ ।
ଶାନ୍ତ ଭଜଲା ରାଜା ଭାର୍ଯ୍ୟା ବଚନେ
ଆଶ୍ୱାସି ବଚନ ଯେ କହଇ ତୋଷ ମନେ । ୧୦୯ ।
ପୁତ୍ର ଦୋଷେ ବାହ୍ମଣ ମୁହିଁ ଶାପ ତୋତେ
ମୋହୋର ଶାପ ମେଣ୍ଟଣ ନୋହିବ କଦାଚିତେ । ୧୧୦ ।
ସତ୍ୟ ତ୍ରେତାୟୁ ଦ୍ୱାପର ଅତୀତ ଯୁଗ ପର୍ଯ୍ୟନ୍ତେ
ଯେ ଗୁଣପୁତ୍ର ଗୁରୁଜନ୍ମ ହୋଇଥିବେ ତୋହୋର ଗର୍ଭଗତେ ।୧୧୧।
ଦ୍ୱାପର ଯୁଗରେ ମହାଭାରଥ ଯୁଦ୍ଧ ଯେ ହୋଇବ
କୁରୁ ପାଣ୍ଡବଂକ ସମରେ ଲକ୍ଷେ ନୃପତି ମିଳିବ । ୧୧୨ ।
ଶ୍ରୀକୃଷ୍ଣ ସାରଥି ହୋଇଥିବେ ଅର୍ଜୁନର ରଥେ
ଭୀଷ୍ମଂକର ଭୁଲେ ସମର କରୁଥିବେ ପାର୍ଥେ । ୧୧୩ ।
ଦେବ୍ୟ ଗ୍ୟାନ ହୋଇ ତୁ କହୁଥିବୁ କେତୁ
ପ୍ରଥମ ଦିନ ସମର ଦେଖିବ ସିବୁ ତୁ । ୧୧୪ ।
ଦୁଷ୍ଟ ପୁତ୍ର ଜାତକଲୁ ତୁ ଯେଣୁ ଗର୍ଭଗତେ
ତେଣୁ ପେଟ ଫାଟ ହୋଉ ତୋହୋର ଭୀଷ୍ମଂକ ଶରଘାତେ । ୧୧୫ ।
ଉଦରେ ଥିବ ତୋହୋର ଜନ୍ମ ସୁର କୋଟି
ସମର ମଣ୍ଡଳେ ପଡ଼ୁ ତୋହୋର ପେଟ ଫାଟି । ୧୧୬ ।
ସେ ରଣରଙ୍ଗ ମଧ୍ୟେ ଜିଣି ହୋଉ ତୋହୋର ମାର୍ଯ୍ୟେଂସ
ବାହୁଡ଼ି ମୋକ୍ଷ ହୋଇ ତୁ ମୋ ମନ୍ଦିରକୁ ଆସ । ୧୧୭ ।

 

ସେ ଗୃଧ୍ର ଜମ୍ବୁ ପଡ଼ିବ ରଣ ସ୍ଥାନେ
ହାଥୀର ଘଣ୍ଟି ଆବୋରି ପଡ଼ିବ ଜମ୍ବୁର ଉଦ୍ୟାନେ । ୧୧୮ ।

ତହିଁର ଉପରେ ପଡ଼ିବେ ମତ୍ତହାଥୀ
ତହିଁର ଉପରେ ପଡ଼ିବେ ରଥୀ ଯେ ପାଦାନ୍ତି । ୧୧୯ ।

ଅନେକ ଯୁଦ୍ଧ ତହିଁ ହୋଇବ ଅପାର
କୁରୁବଳ ଥାଠରୁ ଅନେକ ସନ୍ୟ ଯିବେ ମାର । ୧୨୦ ।

ଅଷ୍ଟାଦଶ ଦିବସ ଯେ ହୋଇବ ସମର
ସେଥିଂ କେତେ ବ୍ରତିବେ କେତେ ଯିବେ ମାର । ୧୨୧ ।

ସେହା ମୋତେ ସମ୍ପ୍ରତି କହିବା ମହାମୁନି
କେହୁମାନେ ରହିବେ ସେହୁ ଅନ୍ୟାଅନ୍ୟ । ୧୨୨ ।

ସେହା ମୋତେ ବୁଝାଇଣ କହିବା ତପୋନଷ୍ଟି
ସେ ମହା କଷ୍ଟଣୁଂ ତୁମ୍ଭେ ପ୍ରାଣ କରିବଟି । ୧୨୩ ।

ସେମନ୍ତେ କହୁତ ଶୁଣି କଲ ସେ ଶୁନିବର
ଯେଥିଂ ଉଦ୍ଧାରଣ କର ପ୍ରଭୁ ଚକ୍ରଧାରୀ । ୧୨୪ ।

ମୁହିଂ ହୀନ ପାମରୀ ଅଟେ ଦୁରାଚାରୀ
ସେ କଷ୍ଟଣୁଂ ମୋତେ ପାରିକର ନରହରି । ୧୨୫ ।

ନବତାଳ ଉଚ୍ଚର୍ଗେ ଯେ ପଡ଼ିବ ମୃତ୍ତୁପିଣ୍ଡ
ସାତତାଳ ଉଚ୍ଚର୍ଗେ ରୁଧିର ନଦୀ ବହିବ ପ୍ରଚଣ୍ଡ । ୧୨୬ ।

ଭୀଷ୍ମପର୍ବ ଦେବ ଦିନ ଉପ୍ତରେ ଜମ୍ବୁ ଫୁଟି
ଘଣ୍ଟି ଭିତରେ ଥାଇ ସମର ଦେଖିବେ ଜମ୍ବୁ ଗୃଧ୍ରଗୋଟି । ୧୨୭ ।

ପିତାର ବଚନ ସହୁଂ ମେଣ୍ଟିଲେ ଗୃଧ୍ରପୁତ୍ରେ
ଭରଦ୍ୱାଜ ନାମ ସେହୁ ବହିବେ ଯୁଗତେ । ୧୨୮ ।

ଶୁଣ ବଇବସୁତ ମନୁ ବଦସୂନ୍ତ ଅଗସ୍ତି
ସେ ତାରକ୍ଷୀ ପକ୍ଷୀର ଚରିତ ଯେସନେକ ଗତି । ୧୨୯ ।

ସତ୍ୟଯୁଗେ ଶୁକ୍ର ରାଜାର ବଚନ ପୁତ୍ରେ ମେଣ୍ଟି
ତଦ ଦୋଷ କରଣ ତାହାର ଯେଟଗଲ ଫାଟି । ୧୩୦ ।

ଶୁଣି ପରମ ସାନନ୍ଦ ହୋଇଲେ ମହାରାଜା
ଅଗସ୍ତିଂକର ଚରଣେ କଲେ ଦ୍ରବ୍ୟପୂଜା । ୧୩୧ ।
ଭୋ ମୁନି ତବ ମୁଖୁଂ ଶୁଣିଲି ଦିବ୍ୟ କଥା
ସଞ୍ଜିପି ପାଇଲି ସେ ମାର୍କଣ୍ଡ ପୁରାଣ ଭାରତା । ୧୩୨ ।
ଭୀଷ୍ମଂକର ସମର ସେ ବଡାଇ ଦୁର୍ଲଭ
ତାରାକ୍ଷୀ ମୁକତ ହୋଇଲା ଶାପରୁ ସୁଲଭ । ୧୩୩ ।
ଶୁଣନ୍ତେ ମହା ପାତକ ନ ଥିବ ପ୍ରାଣୀଂକର ଅଙ୍ଗେ
ପାଇବ ପରମ ଗତି ବସିବ ବୃନ୍ଦାରକ ସ୍ୱର୍ଗେ । ୧୩୪ ।
ବଦପୂନ୍ତ ଅଗସ୍ତି ସାର୍ଥକ ବ୍ରହ୍ମବେତ୍ତା
ବାଲଂକ ନୃପତି ବଇବସ୍ୱତ ମନୁ ଶ୍ରୋତା । ୧୩୫ ।
ଭୀଷ୍ମ ସେ ନାରାଜ ବନ୍ଧିନ୍ତି ଅର୍ଜୁନକୁ
ରୋମେକେ ଶତେ ନାରାଜ ଯେ ବନ୍ଧନ୍ତି ପାର୍ଥକୁ । ୧୩୬ ।
ଦେବନ୍ତ ଦୁର୍ଲଭ ଯେ ମନୁଷ୍ୟ ଅଗୋଚର
କହନ୍ତେ ନ ସରଇ ଭୀଷ୍ମଂକ ସମର । ୧୩୭ ।
ବାଣ ଆଘାତେ ମହୀ ଯେ କମ୍ପଇ ଥରହର
ସାଧୁ ସାଧୁ ମହିମା ସେ ଅର୍ଜୁନ ମହାବୀର । ୧୩୮ ।
ସାଧୁ ସାଧୁ ପାର୍ଥ ସମରେ ମହାଚକ୍ରୀ
ଭୀଷ୍ମଂକୁ ନାରାଜ ସେ ବନ୍ଧଇ ପ୍ରତି ପ୍ରତି । ୧୩୯ ।
ନୟନ ପିଚ୍ଛୁଡ ନ ପାରଇ ସାଂଗ୍ରାମେ
ନଶ୍ୱାସକେ ମର୍ଦ୍ଦିତେ ଶର ନାହିଂ ସେ ବିଶ୍ରାମେ । ୧୪୦ ।
ଆଗେ ଭୀମସେନ ପଛେ ଦୁର୍ଦ୍ଧର୍ଷ ମଧ୍ୟେ ଧର୍ମରାୟେ
କଉରବ ଥାଟେ ତିନ ଅକ୍ଷୟ୍ରତ ଯୋଦ୍ଧା ପଡଲେ ଯେକଠାୟେ ।୧୪୧।
ବଡାଇ ଦୁରାପଦ ହୋଇଲା ମହାରଣ
ରଥ ଗଜ ଅଶ୍ୱ ପାଦାନ୍ତ କେହୁ କରିବ କଳଣ । ୧୪୨ ।
ପର୍ବତ ନ ସହଇ ଯେବଣ ଭୀମସେନ ପାଦଭାର
ରୁଧିର ମାଂସ୍ୟେ କର୍ଦ୍ଦମ ଯେ ହୋଇଲା ବସୁନ୍ଧରା । ୧୪୩ ।

ଥାଠ ସଂଶୋଧନ କରଇ ଖମ ଦୁର୍ଦ୍ଦକ୍ଷ ସମରେ ଆସନ୍ତେ
ଓଗାଳିଲେ ଦୁର୍ଦ୍ଦକ୍ଷକୁ କର୍ଣ୍ଣ ଅଶ୍ୱତ୍ଥାମା ଚଢ଼ିଣ ରଥେ ରଥେ । ୧୪୪ ।
ଦୁର୍ଦ୍ଦଂକର ଭୁଜେ ଅଛନ୍ତି ପଞ୍ଚଶତ ସହସ୍ର ଯୋଧୀ
ଯେକମୁଖ ହୋଇ ଦୁର୍ଦ୍ଦକ୍ଷକୁ ଘାର ବନ୍ଧ । ୧୪୫ ।
କୋଇନ୍ତାଂକ ନନ୍ଦନ ବୃକୋଦର ସମରେ ମହାବଳୀ
ଖମସେନ ଆସନ୍ତେ ଶଲ୍ୟେ କୃପେ ଓଗାଳି । ୧୪୬ ।
କର୍ଣ୍ଣକଇଂ ଦେଖିଣ ଯେ ବୋଲଇ ଦୁର୍ଦ୍ଦକ୍ଷ
କମ୍ପାଇଂ କର୍ଣ୍ଣସ୍ୱେ ଦୃଯୋଧନର ଥାଠେ ଅଛ । ୧୪୭ ।
ଯୁଦ୍ଧେଷ୍ଟି ଠାକୁରଂକର ତୁମ୍ଭେ ଜ୍ୟେଷ୍ଠ ଭ୍ରାଥ
ତେଣୁ କର ବନସ୍ୱେ ମୋର ଭୁମ୍ଭନ୍ତ ବହୁତ । ୧୪୮ ।
କର୍ଣ୍ଣ ବୋଇଲା ରେ ମୃତ୍ୟୁକୁ କରୁ ଇଚ୍ଛା
ବୁଡାଇଲୁ ଶିଘ୍ର ସମ୍ପଦ ଆଜ କେ କରୁ ତୋତେ ରକ୍ଷା । ୧୪୯ ।
ଆରେ ନଶନ୍ତ କାଳକୁ ତୋର ବପଶତ ବୁଦ୍ଧି
ପାଦେ ଠେଳାଇଲୁ ଯେତେ ବଡ ସମୃଦ୍ଧି । ୧୫୦ ।
କୋପେଣ ଦୁର୍ଦ୍ଦକ୍ଷ ଗଦାବର ଧର ହାଥେ
ବେଗେଷେଣ ପ୍ରହାର କଲା କର୍ଣ୍ଣର ଯେ ରଥେ । ୧୫୧ ।
ଭାଙ୍ଗିଣ ରଥ ତାର ହୋଇଲା ଶତେ ଚୂନା
ଆଡେଣି ଗୁଣ୍ଡା ହୋଇ ବଦାଇଣା ହେଲା ବଜ୍ରସେହ୍ନା । ୧୫୨ ।
କର୍ଣ୍ଣର ବରଥ ଦେଖିଣ ସୋମଦତ୍ତ
ଦଶସସ୍ର ଯୋଦ୍ଧା ସେନା ଆବୋରଲା ଜଦ୍ୟରଥ । ୧୫୩ ।
ଗଦା କୋନ୍ତ ଅସିପଶ ଗୁରୁଜ ଲଂକଆ
ବୁଲାନ୍ତେ ଦଶଇ ନିର୍ମଳ ମେଘେ ବଦ୍ୟୁତରେହା । ୧୫୪ ।
ଯେକ ଯୋଦ୍ଧାକୁ ବେଢିଲେ ଦଶସସ୍ର ରଥୀ
ଯେକା ଦୁର୍ଦ୍ଦକ୍ଷ କୁରୁସାଗର ବଳ ମନ୍ଥି । ୧୫୫ ।

---

୧୫୪।୨ ବୁଲାନ୍ତେ ଶ୍ୟାମଳ ମେଘେ ବଜୁଳର ଛୁସ୍ଥା । (ଘ,ଙ,ଝ)

ରେ ରେ କାର କର ଧାମଇଂ କୁମାର ଦୁର୍ଦ୍ଧର୍ଷ
ସ୍ଥଗ ଫଳକୁ ଯେହ୍ନେ ବ୍ୟାଘ୍ର ଧାମଇଂ ପ୍ରତକ୍ଷ । ୧୫୬ ।
ଗର୍ଜିଣ ଧାମନ୍ତ ଯେ କଉରେବ ସଇନ
ମାର ମାର ଶବଦରେ କମ୍ପଇ ମେଦ୍ଦନୀ । ୧୫୭ ।
ଗହଳ ଧହୋଳ ଦେଖି ଉଠିଲ୍ଲ ଭୀମସେନ
ନାଗକର ଦେବତା ପ୍ରାଏ ତାକୁ ଦେଖିଲେ ସର୍ବ ସେନା । ୧୫୮ ।
ବେନଭାଗ ହୋଇଣ ସମସ୍ତ ସଇନ ଭାଙ୍ଗି
ଖାରବର ଖାଣ୍ଡବ ସୁନ୍ଦର ଉଠିଲ୍ଲ ଗଳଗାଜ । ୧୫୯ ।
ଦୁର୍ଦ୍ଧର୍ଷ ଭୀମସେନ ହୋଇଛନ୍ତ ପ୍ରେକମୃତ
ଯୁଦ୍ଧେଷ୍ଟିଂକ ଘେନଗଲେ ଅର୍ଜୁନର କତ । ୧୬୦ ।
ଦେଖିଣ ବାସବୀ ଯେ ପ୍ରଣମ୍ୟ କର ଶୋଇ
ପ୍ରେକା ହୋଇ ସ୍ୱାମୀ କଣ୍ଠେ ପଶିଲ ଉଣଭୂଇଂ । ୧୬୧ ।
ଯୁଦ୍ଧେଷ୍ଟି ବୋଇଲେ ତୁ ଶୁଣ ସବ୍ୟସାଚୀ
ଗୋବନ୍ଦ ପ୍ରସାଦେ ଆନ୍ନନ୍ତ ଭୟ ପ୍ରମାଦ ନାହିଂ କଚ୍ଛୁ । ୧୬୨ ।
ସ୍ନେହନେକ ସମୟେ ଓହୋଳବ ହୋଇଲେକ ଭେଟ
କରନ୍ତ ସମର ତହିଂ ଗରୁ ଯେ ମୁହାଠ । ୧୬୩ ।
ଧୃଷ୍ଟଦ୍ୟୁମନ ରଥେକ ଚଢିଣ ଅତ ବେଗେ
ଯାଆନ୍ତେଣ ଗୁରୁ ଦ୍ରୋଣ ମିଳଲେକ ତାର ଆଗେ । ୧୬୪ ।
କରେଣ ଧନୁ ଧର ଆମନ୍ତ୍ରଲେ ପାଞ୍ଚାଳ
ବନ୍ଧଲେ ନାରାଜ ଯେ ଭାରଦ୍ୱାଦଶଂକର କାଳ । ୧୬୫ ।
ପଞ୍ଚ ନାରାଜ ଯେମନ୍ତ ବନ୍ଧନ୍ତେ ଦ୍ରୋଣ ଗୁରୁ
ଦେଖିଣ ଧୃଷ୍ଟଦ୍ୟୁମନ ଛେଦଲେ ତାହା ଦୂରୁଂ । ୧୬୬ ।

---

୧୫୭।୨ ଡାକହାକ ଶବଦେ କମ୍ପଇ ମେଦ୍ଦନୀ । (ଘ, ଛ, ଝ, ଢ, ଥ)
୧୬୫।୧ କରେଣ ଧନୁ ଧରଣ ଯେ ଦ୍ରୋଣ ବକରାଳ । (ଙ୍ଗ, ଥ, ନ)

ପଞ୍ଚଦଶ ବାଣ ଯେଜନ ଗୁରୁ ପୁଣ
ପବନନ୍ଦନଂ ବେଗେ ବନ୍ଧଲେ ଗୁରୁଠାଣ । ୧୬୭ ।
ହରସେନ ବୋଲଣ ଧୃଷ୍ଟଦ୍ୟୁମ୍ନଙ୍କ ସାରଥି
ବାହଇ ରଥ ସେ ପବନନ୍ଦନଂ ବେଗ ଗତି । ୧୬୮ ।
କ୍ଷଣେକେ ରଥ ଭୂମିଗତେ କ୍ଷଣକେ ବାହଇ ଆକାଶେ
ଦ୍ରୋଣେ ପ୍ରଶଂସା କଲେ ସାରଥିଂକ ହରଷେ । ୧୬୯ ।
ହାଥରୁ ଶସ୍ତ୍ର ବ୍ୟଗ୍ର କରି ବନ୍ଧଲେ ଦ୍ରୋଣ ଗୁରୁ
ଧୃଷ୍ଟଦ୍ୟୁମ୍ନ ତାହା ନବାରିଲେ ଦୂରୁଂ । ୧୭୦ ।
ଶଲ୍ୟଂକର ସାରଥି କଣସୃ ରଥ ମଣ୍ଡି
ତାହାଂକର ରଥ ଦେଖି ଓଗାଳିଲ ଶ୍ରୀଖଣ୍ଡୀ । ୧୭୧ ।
ଶଙ୍ଖଚଲ ପଙ୍କ୍ତି ହାଦେ ହାଦଶ ନାରଜ
ଶଲ୍ୟଂକୁ ବନ୍ଧିଲ କ୍ରୋଧେ ଦ୍ରୁପଦର ଆତ୍ମଜ । ୧୭୨ ।
ବାଣ ପଡନ୍ତେଣ ଦେଖିଲେ ମହାରଥୀ
ବାୟୁବ୍ୟା ଶସ୍ତ୍ର ଯେ ବନ୍ଧିଲେ ତତକ୍ଷଣ । ୧୭୩ ।
ବେନି ଶର ଘାତେ ଯେ ଶର ପଡନ୍ତାଳ
ଉଠିଲକ ବହନ ଯେ କଉଣ ସଞ୍ଚାଳ । ୧୭୪ ।
ଘୋର ଅନ୍ଧକ୍କାର ବରଷା ଯେହ୍ନେ ଋତୁ
ଧାୟେଣ ମେଦ୍ଦିନୀ ନ ଦିଶଇ ଶରପଥୁଂ । ୧୭୫ ।
ଅନ୍ୟୋଅନ୍ୟ ହୋଇଣ ଥାଟେ ଯେ ଡାକହାକ ବାଣୀ
ତର୍ଜନ୍ତି ଗର୍ଜନ୍ତି ଯାରେ ମହାମତ୍ତ ଗଜ ଜାଣି । ୧୭୬ ।
ମହାରଥ ସମରେ ଯାରେ ବଡାଇ ସାମରଥା
ଏକକୁ ଆରେକ ଲକ୍ଷୀ ଅଟନ୍ତି ବଳବନ୍ତା । ୧୭୭ ।

---

୧୬୭।୧ { ପଞ୍ଚବଂଶ ବାଣ ଯେଜନ ଗୁରୁ ପୁଣ । (ଛ, ଙ, ଝ, ଠ, ଡ)
       { ଶତେକ ବାଣ ଯେଜନ ଗୁରୁ ପୁଣ । (ଓ, ଥ, ନ)

୧୭୧।୧ ଶଇଲ ମହାରଥୀ ଯେବଣ ରଥ ମଣ୍ଡି । (ଓ, ଝ, ଠ, ଥ, ନ)

୧୭୫।୧ ଅନ୍ଧକ୍କାର—ଅନ୍ଧକାର ।

ଦ୍ରୁପଦଙ୍କର ପୁତ୍ର ଭୁଜେ ଧରି ବାଣ
ଶଲ୍ୟଙ୍କଇଂ ନାରାଜ ଯେ ବନ୍ଧିଲା ଗରୁଡ଼ଥାଣ । ୧୭୮ ।

ବିଶାଶତେ ନାରାଜ ଯେହ୍ନଣ ନିଜ ହାଥ
ଶର ଘାୟେଣ ଭାଞ୍ଜିଲା ଯେ ଶ୍ରୀଖଣ୍ଡୀର ରଥ । ୧୭୯ ।

କୁମୁଦ ନାମେ ଗଜ ଆରୋହିଣ ପିଠି
ଶଲ୍ୟଙ୍କର ରଥେ ନେଇ ପ୍ରହାର କଲା କାଠି । ୧୮୦ ।

କୋନ୍ତ ମୁନେ ଧଇଲକ ଶଲ୍ୟଙ୍କର ରଥ ତୋଳି
ଚକ୍ରାକୃତି କରି ବୁଲଇଲା ମହାବଳୀ । ୧୮୧ ।

ଦେଖିଣ ବିରସ ଯେ ଗାଲବଂକର ସୁତ
ଶଲ୍ୟଙ୍କର ବିଅର୍ଥେ ଧାଇଂଲେ ସୋମଦତ୍ତ । ୧୮୨ ।

ବିଜେକଲେ ଶଲ୍ୟେ ଯାଇଂ ସୋମଦତ୍ତ ରଥେ
ବେନି ଯୋଦ୍ଧା ଏକମୁଖ ହୋଇ ବନ୍ଧିଲେ ଶର ଶତେ । ୧୮୩ ।

ହେନଜନ ପରତାଳ କରନ୍ତି ଏକ ରଥେ ବସି
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ରମା ପ୍ରକାଶି । ୧୮୪ ।

ସମର ହାନ୍ଦୋଳ କଲେ ବାଣ ଜାଳାବଳୀ
ଗହନ ବାଣ ବନ୍ଧନ୍ତେ ଅଦୃଶ୍ୟ ଅଂଶୁମାଳୀ । ୧୮୫ ।

ଦେଖ ହୋ ମହ୍ନଂମା ହାଦେ ଶ୍ରୀଖଣ୍ଡୀର ସମର
ରଣେ ଅନିବାରଣ ସେ କ୍ଷତ୍ରିୟ ମହାବୀର । ୧୮୬ ।

ଏକା ଯୋଦ୍ଧାକଇଂ ବେଢିଲେ ପଞ୍ଚ ସହସ୍ର ରଥୀ
ଏକମୁଖ ହୋଇଣ ସମସ୍ତେ ନାରାଜ ବିନ୍ଧନ୍ତି । ୧୮୭ ।

ମହା କମ୍ପିଲା ପୁଣ ଗୁଣ ଘୃଷ୍ଟ ନାଦେ
ପୃଥିବୀ ଟଳମଳ ଗଜ ଅଶ୍ୱଂକର ପାଦେ । ୧୮୮ ।

ଶଲ୍ୟ ସୋମଦତ୍ତ ଯେହ୍ନେ ବେନି ମହାରଥୀ
ଶତେ ଶତେ ନାରାଜ ବନ୍ଧିଲେ ଦୁହେଁହିଂ ହେତ । ୧୮୯ ।

ଦୂରହୁଂ ଦେଖିଲା ତାହା ପାଞ୍ଚାଳ ମହାରାଣ
ଧାଇଂଣ ଶ୍ରୀଖଣ୍ଡୀ ଯେ ବନ୍ଧିଲା ପଞ୍ଚବାଣ । ୧୯୦ ।

ଶଇଲ ସୋମଦତ୍ତ ଯେ ଅନେକ ସନ୍ୟ ଘେନ
ସବୁନ୍ତ ନାରାଜ ଶ୍ରୀଖଣ୍ତୀ ବନ୍ଧିଲ ଭିନ ଭିନେ । ୧୯୧ ।
ଅବରକ୍ଷଣେ ଶର ପେଷିଲ ମହାବୀର ଅତି ଅଗୋଚର
ପଡଲେ ନାରାଜ ସମସ୍ତ ରଥୀଂକ ଉପର । ୧୯୨ ।
ସେହ୍ନା ଫୁଟିଣ ସବୁଂକର ଭେଦିଲାକ ଅଙ୍ଗ
ମନ୍ଦାର ପୁଷ୍ପ ଜାଣି ବଶିଲ ସୁରଙ୍ଗ । ୧୯୩ ।
ରଣରେ ବରଅର୍ଥୀ ହୋଇଲେ ଯୋଦ୍ଧାଏ
ସାଧୁ ସାଧୁ ଶ୍ରୀଖଣ୍ଡୀ ବୋଲି ପ୍ରଶଂସା କଲେ ସର୍ବରାଏ । ୧୯୪ ।
ବଡ ବଳବନ୍ତ ଭୁଳାକର୍ଣ୍ଣର ପ୍ରସାଦେ
ମୃତ୍ୟୁପୁର ରାଜା ସର ନୋହନ୍ତ ରଣ ମଧ୍ୟେ । ୧୯୫ ।
ଭୀଷ୍ମ ଅର୍ଜୁନର ସମର ମହାଘୋର
ଦୁହିଂକ ସମରେ କମ୍ପଇ ତିନପୁର । ୧୯୬ ।
କେହି କାହାକୁ ସମରେ ନୋହନ୍ତ ନା ଊଛ
ଦେବଂକୁ ଦୁଲଭ ସମର କରଇ ବବଚ୍ଛ । ୧୯୭ ।
ଯୋଦ୍ଧା ଏକ ପାଡ ନୁଆରଲେ ରାଙ୍ଗବେ
ସାଂଗ୍ରାମ ଅବଶ୍ରାମ ବେଳ୍ଠୁଂକେଲ ଆରମ୍ଭେ । ୧୯୮ ।
ଦ୍ରୋଣଂକର ସଙ୍ଗ ସମର ଧୃଷ୍ଟ ଯେ ଦ୍ୟୁମନ
ନକ୍ଷବଚନ୍ତ ଯେହ୍ନେ ବଶଇ ଗଗନ । ୧୯୯ ।
ଶଲ୍ୟ ସୋମଦତ୍ତକୁ ଯେ ଏକ ବୀର ଶ୍ରୀଖଣ୍ଡୀ
ତିନ ସସ୍ତ ଯୋଦ୍ଧାକୁ ଏକାଏ ରଣ ମଣ୍ଡି । ୨୦୦ ।
ଦୁର୍ଦ୍ଧର୍ଷର ତୁଲେ ଯୁଝଇ ଯେ ଧୃଶାସନ
ନକୁଳର ତୁଲେ ଯୁଦ୍ଧ ଜୟଦ୍ରଥ ରାଜନ । ୨୦୧ ।

---

୧୯୫।୧ ଅବଳ ବଳବନ୍ତା ତୁ ଶ୍ରୀକୃଷ୍ଣର ପ୍ରସାଦେ । (କ, ଠ, ଚ)

ଉଭୟ ଦଳ ଯୋଦ୍ଧାଏ ନ ଘୁଞ୍ଚନ୍ତି ରଣେ
ଯଥା ଆଚାର୍ଯ୍ୟ ସମର କରନ୍ତି ଜଣେ ଜଣେ । ୨୦୨ ।
ଏମନ୍ତେକ ସମର କରନ୍ତି କାଳ ଦେଖ
ଦିନକର ନାଥ ଅସ୍ତକୁ ଆଉ ବେଳ ଅଛଇ ଘଡି ତିନ । ୨୦୩ ।
କ୍ଷୁଧା ପିପାସାରେ ଆରତ ଅଶ୍ୱ ବଳ ଯୋଧୀ
ଶସ୍ତ୍ର ଅଶକତେ ଶର ନୁଆରନ୍ତି ବନ୍ଧି । ୨୦୪ ।
ମାନଗୋବିନ୍ଦର ଅଗ୍ରତେ ଜଣାଏ ମନ୍ତ୍ରୀ ଶକୁନି
ଜମବାସେ ଅଶକତ ହେଲେ ସବୁ ସଇନ । ୨୦୫ ।
ତୁ ଯେ ମହାରାଜା ରାଜେଶ୍ୱର ଅଟୁ ମହାପ୍ରଭୁ
ଆଜ୍ଞା ଦେଲେ ନାଥ ସମର ଆଜକ ରହୁ । ୨୦୬ ।
ମନ୍ତ୍ରୀର ବଚନେ ବୋଇଲା କୁରୁନାହା
ଭୀଷ୍ମଙ୍କୁ ବୋଲ ମାତୁଳ ସମର ଆଜ ରୁହା । ୨୦୭ ।
ରାଜାର ବଚନେ ମନ୍ତ୍ରୀ ସେ ଶକୁନି
ରଥଧ୍ୱଜେ ଉଠି ସମର ରହୁ ବୋଲି ଧୁନି । ୨୦୮ ।
ସମରେ ମହାଶ୍ରମ ଆବର ବେଳ ଅସ୍ତ
ଧନୁରୁ ଗୁଣ ଖସାଇ ନ ପାରନ୍ତି ସଇନ ବଡାଇ ଅଶକତ । ୨୦୯ ।
ଯୋଦ୍ଧାମାନଙ୍କର ବିରସ ନିଶସ୍ତ୍ର ଥାଠମାନ ଦେଖି
ଶାନ୍ତନୁର ନନ୍ଦନ ସମର ଉପେକ୍ଷି । ୨୧୦ ।
ସମର କରନ୍ତେ ଯେ ଆଦିତ୍ୟ ଅସ୍ତଗଲା
ଉଭୟଦଳ କୁରୁକ୍ଷେତ୍ର ମଣ୍ଡଳେ ରହିଲା । ୨୧୧ ।
ଯୁଦ୍ଧେଷ୍ଟି ଦୁର୍ଯୋଧନ ଯେତକଇ ଆସନେ
ଯେତେକ ଆସ୍ଥାନେ ବସିଲେ ଭୀମ ଧୃଷ୍ଟାସନେ । ୨୧୨ ।
କର୍ଣ୍ଣ ଅର୍ଜୁନ ଯେତେକ ଆସନେ କଲେ ବିଜେ
ସହୋଦ୍ୱମା ପଣ ପାଳିଲେ ସେ ସକଳ ଦେଶର ମହାରାଜେ । ୨୧୩ ।
ପଣା ଶକଟା ପାଗଡା ନଉବଳ ରସ ଖେଳ
ଝିମାଣି ଘୁମାଣି ଗୁଆଳ ବାହାବନ୍ଧ ବାଘବଦାଇ ସାଂକୁଡ଼ି ଖେଳ
କୁତୂହୋଇ । ୨୧୪ ।

---

୨୦୨।୧ ଅଣ ଉପ୍ରୋଧି ଯୋଦ୍ଧା ସେ ନ ଘୁଞ୍ଚନ୍ତି ରଣେ । (କ,ଚ)

ଭକ୍ଷ ଅନ୍ନ ଭୋଜନ କେ କ୍ରମେଣ ମହାନିଦ୍ରା
ପୂଜାନ୍ୟାସ ସନ୍ଧ୍ୟାସ୍ତେ ସାଧନ ଯୋଗମୁଦ୍ରା । ୨୧୫ ।
କେ ମାଲ ଗୁଳୁଚ୍ଛି କେ ଆଖଡାଶାଳ ଘୂମନ୍ତକେ ଲାଗି
କୋଲ ଆମଞ୍ଜଣ କେ ନାଗଜ ପଚ୍ଛୋଗି । ୨୧୬ ।
ଯେସନେକ କଉତୁକେ ନିତ୍ୟକର୍ମ ସାରନ୍ତ
ଅରୁଣ ପ୍ରକାଶଇ ଈଶାନ୍ୟେ ପ୍ରବେଶ ହୁଅନ୍ତ । ୨୧୭ ।
ବିନତା ନନ୍ଦନ ଅରୁଣ ଦିନକର ରଥ ସାଜ
ମେଘନାଦ ମହାନାଦ କାଳମେଘ ଉଚ୍ଚୈଶ୍ରବା ବାଜ । ୨୧୮ ।
ଯେକଚକ୍ର ଆରୋହଣ ମଣ୍ଡିତ ସୂର୍ଯ୍ୟମଣ୍ଡଳ ରଥ
ଉଦୟ ଗିରିରେ ବିଜେ ଦିନକର ନାଥ । ୨୧୯ ।
ସ୍ୱର୍ଗ୍ୟାଂର ବଲ୍ଲଭ ଜଗତ ପ୍ରତିପାଳ
ତିମିର ବିଦାରଣ ନାଥ ଜୟ ତୁ ଅଂଶୁମାଳୀ । ୨୨୦ ।
ବ୍ରହ୍ମ ଭଗବନ୍ତ ସନ୍ୟାସୀ ଯୋଗୀ ଯତି
ନଦୀ କୂପର ତଟେ ନିତ୍ୟକର୍ମ ସାରନ୍ତି । ୨୨୧ ।

---

୨୧୬।୨ { ଧନୁ ଆମଞ୍ଜଣ କେ ନାଗଜ ପଚ୍ଛ୍ୟାଗି । (ଥ, ଝ, ନ,)
ଗୋଲ ଆମଞ୍ଜଣ କେ ନାଗଜ ପଚ୍ଛ୍ୟାଗି । (ଘ) }
୨୧୭।୧ ଯେସନେକ କଉତୁକେ ନିତ୍ୟକର୍ମ ଈଶାନ ପ୍ରଶସ୍ତେ । (ଙ,ଟ,ଥ)
୨୧୮।୨ ମେଘନାଦ ମହାନାଦ କାଳମେଘ ସପ୍ତବାଜି । (ଘ,ଙ,ଛ,ଟ)
୨୨୦।୨ "ତିମିର ବିଦାରଣ ନାଥ ଜୟ ତୁ ଅଂଶୁମାଳୀ" ପରେ 'ଛ'ରେ
ଅଧିକା ପାଠ ।
ବ୍ରହ୍ମ ଉତପତ୍ତି ସପତ ନାଗ ଘେତ
ନମସ୍ତେ ନିରଞ୍ଜନ ପ୍ରଚଣ୍ଡ ଦିବ୍ୟ ମୂର୍ତ୍ତି ।
ନିଗ୍ରକୁଳ ସ୍ୱାମୀ କଶ୍ୟପ ନନ୍ଦନ
କମଳା କର ସ୍ୱାମୀ ତିମିର ବିଦାରଣ ।
ତୋହୋର ଉଦେ ନୋହିଲେ ସକଳେ ପାନ୍ତି ପୂଜା
ତୋହୋରେ ଉଦେ ନୋହୋନ୍ତେ ସକଳେ ଅପୂଜା ।
୨୧୫।୧ ମହା ନିଦ୍ରା—ଘୋର ନିଦ୍ରା ।
୨୧୬।୧ ଗୁଳୁଚ୍ଛି—ଗୁଳୁଚ କାଠ, ମାଲ୍‌ଖମ୍ବ ।

ପାଞ୍ଚଜନ୍ୟ ଶଙ୍ଖ ଶବଦ କଲେ ମଧୁହାସୀ
ଦଣ୍ଡ ସାଜ ଦଣ୍ଡ ସାଜ ବୋଲି ବାଜଇ ମର୍ଦ୍ଦଳ ଭେରୀ ମହୁରୀ
ତତକ୍ଷଣେ ସଜ ହେଲେ ସକଳ ଦଣ୍ଡଧାରୀ । ୨୨୨ ।

ଉଚ୍ଛବାଚ ହୋଇ ଉଠିଲେ ଦେବ ଥାଠ
ନିତ୍ୟ କର୍ମ ବିଧାନ ସାରନ୍ତି ଜଳଘାଟ । ୨୨୩ ।

ସନ୍ଧ୍ୟା ତର୍ପଣ ଯେ ସାରଣ ଶାସ୍ତ୍ରକ୍ରମ
ଦେବତା ଘରେ ପଶି ମାଧବଙ୍କଇଂ ବନସ୍ତେ ଦଇନ । ୨୨୪ ।
ମାଧବ ଯୋଗେଶ୍ୱର ଯେ ଶ୍ରୀ ସର୍ବମଙ୍ଗଳେ
ପୂଜନ୍ତି ବିପ୍ରରାଜ ନିତ୍ୟକର୍ମ ଆଳେ । ୨୨୫ ।

ଶଙ୍ଖ ଚକ୍ର ଗଦା ଶ୍ରୀଭୁଜେ ସାରଙ୍ଗୀ
ଭାଗବତ ବିହାନ୍ତା ନାଅ ବିଶ୍ୱକୂଟ ଭଙ୍ଗି । ୨୨୬ ।

ଶ୍ରୀ ତୁଳସୀର ବଲ୍ଲଭ ଚରଣେ ମୋର ଧ୍ୟାନ
ଶୂଦ୍ରମୁନି ସାରଳା ଦାସର ନାରାୟଣ ପଞ୍ଚପ୍ରାଣ । ୨୨୭ ।

ଜନ୍ମ ମରଣ କାଳର ତୁହି ଦେବ ସାକ୍ଷୀ
ବୈରାଗ୍ୟ କରନ୍ତି ଜନ ଜନ୍ତୁ ତୁହି କରୁ ଯାହା ଯାହା । ୨୨୮ ।

---

ନମସ୍ତେ ଦିନମଣି ହୋଇବା ପ୍ରସନ୍ନ
ସାରଳା ଦାସ ନିତ୍ୟେ ସେବଇ ଚରଣ ।
ସ୍ତୁତି ଅନନ୍ତରେ ଶୁଣ ହେ ଯୋଗେଶ୍ୱର
ବଦସ୍ଥନ୍ତି ଅଗସ୍ତି ଯେ କୁମ୍ଭଋଷିଙ୍କ କୁମର ।
ଗଗନେ ଉଦେ ଯହୁଁ ହୋଇଲେ ଦିନକର
ନିତ୍ୟକର୍ମ ବିଧାନ ସାରଲେ ଯେ ଯାହାର ।
ରଥ ଗଜ ମଣ୍ଡନ୍ତି ସକଳ ନୃପବରେ
ଯେ ଯାହାର ହାଥ ଧରି ରହିଲେ କୂଳରେ ।
ଗଙ୍ଗା ନଦୀ ଜଳେ ପଶି ନିତ୍ୟକର୍ମ ସାରି
ପଞ୍ଚଜନ୍ୟ ଶଙ୍ଖ ଶବଦ କଲେ ଦେବ ହରି ।
୨୨୭ ଶ୍ରୀ ତୁଳସୀର ବଲ୍ଲଭ ଚରଣ ମମ ଧ୍ୟାନେ
ଶୂଦ୍ର ମୁନି ସାରଳା ନ ଭାବୁ ଆନ ମନେ । (କ,ଟ,ଙ,ଢ଼)

ଶାସକ ନାଶକ ତୁ ଦେବ ବନ୍ଦନ୍ତା
ଶୂଦ୍ରମୁନି ସାରଳେ ଦାସଂକର ଫେଡ଼ ମନ ବ୍ୟଥା ଚିନ୍ତା । ୨୨୯-୧୯୫୮



## ଭୀଷ୍ମଙ୍କର ଦ୍ୱିତୀୟ ଦିନ ଯୁଦ୍ଧ ଓ ପାଣ୍ଡବଙ୍କର ଦଶ ସହସ୍ର ଯୋଦ୍ଧାଙ୍କ ପତନ

ସାଜରେ ସାଜରେ ବୋଲ ଶୁଭଇ ବେନି ଥାଠ
ମଣ୍ଡନ୍ତି ରଥ ଗଜ ଅଶ୍ୱ ଯେ ମୂରଟ । ୧ ।
ବାଜନ୍ତି ବଜଘୋଷ ଟମକ ନିଶାଣ
ଗଜ ଅଶ୍ୱଂକର ଗର୍ଜନ ଘଡ଼ଘଡ଼ି ବଜ୍ରବାଣ । ୨ ।
ବୀର ଦାଉଣ୍ଡି ବୀର ମର୍ଦ୍ଦଳ ଦମାଲୁ ବୀର କାହାଳି
ଧାଅଁରେ ସାଜରେ ବୋଲ ଡାକନ୍ତି ନାଦ ତୋଳି । ୩ ।

---

୪।୧ ଠ ଓ ଢ ରେ ଦ୍ୱିତୀୟ ଦିନ ଯୁଦ୍ଧ ଆରମ୍ଭରେ ଜଗନ୍ନାଥଙ୍କ ସ୍ତୁତି ଅଛି:—
ଜୟ ତୁ ଜଗନ୍ନାଥ ନୀଳ କନ୍ଦର ବାସୀ
କଳିକାଳ ଦୁଃଖ ତବ ଦରଶନେ ନାଶି ।
ଜୟ ତୁ ଜଗନ୍ନାଥ ସାଧୁ ଜନ ହିତକାରୀ
ସର୍ବ ଜନଂକୁ ଉଦ୍ଧାରୁ ଜଗତ ବିହାରୀ ।
ଜୟ ତୁ ଜଗତ ଜୀବନ ଜଗତ ଉଦ୍ଧାରଣ
ଗୋପୀଂକ ମନମୋହନ ଶରଣ ରକ୍ଷଣ ।
ଯୋଗୀଜନ ବକ୍ଷସ୍ଥଳେ ତୁହି ପଦ୍ମମାଳୀ
କାଳିନ୍ଦୀ ହ୍ରଦରେ କାଳି ନାଗ ଦର୍ପ ଦଳି ।
ଭଗତ ଜନ ବାନ୍ଧବ ତୁହି ଜଗନ୍ନାଥ
ଭବ ଦୁଃଖ ଖଣ୍ଡନ୍ତା ତୁ ଅଟୁ ସାମରଥ ।
ପରମ ବ୍ରହ୍ମ ମୂରତି ତୁମ୍ଭେ ଜଗନ୍ନାଥ ଜ୍ୟୋତି
ଯେ ଚିନ୍ତନ୍ତି କୋଟିଏ ଜନ୍ମ ଦୁଃଖରୁ ତରନ୍ତି ।
ଜଗତଜନ ନାୟକ ତୁ ଜଗତ ଶାସକ
ଜଗତଜନ ବନ୍ଦନ୍ତା ତୁ ରକ୍ଷନ୍ତା ତ୍ରଇଲୋକ୍ୟ । (ଠ, ଢ)

ରହିଲେ ଯୋଦ୍ଧାମାନେଂ ଯେ ଯାହାର ଲଗେ
ରଥ ଗଜ ସଇନ୍ୟ ହୋଇଲେ ବେନି ଭାଗେ । ୪ ।
ଆବୋର ରହିଲେ ବଳ ଯେ ଯାହାର କତ
ପୂର୍ବେଣ ପାଣ୍ଡବେ ପଶ୍ଚିମେ କୁରୁପନ୍ତ । ୫ ।
କୃଷ୍ଣବର୍ଣ୍ଣ ଚରିତ ଯେ ମହାମତ୍ତ ନାଗ
ଦିବ୍ୟ ଅବତାର ହୋଇ ମାନଗୋବିନ୍ଦ ପିଠିଭାଗ । ୬ ।
ଉଭାରଲେ ପାଟନେତ୍ର ଆଲମ୍ବ ପଞ୍ଚଲକ୍ଷୀ
ତାରକା ବଧ କାଳେ ଯେସନ୍ତେ କାର୍ତ୍ତିକେଶ୍ୱର ଦେଖି । ୭ ।
ଡାହାଣେ ଧୃଷ୍ଟାସନ ବାମେଣ ଜୟଦ୍ରଥ
ଆଗେଣ ସିନ୍ଧୁଦେଶ ବଳ ଯେ ଦଶ ସହସ୍ର ରଥ । ୮ ।
ପଛେ ଅଲମ୍ବୁଷ ଦଇତର ଥାଟ ଯେ ପଲାଣି
ବାମେ ବାଜ ମହାବାଜ ଯେ ଏକାଦଶ କ୍ଷଉଣୀ । ୯ ।

---

୬।୨ "ଦିବ୍ୟ ଅବତାର ହୋଇ ମାନଗୋବିନ୍ଦ ପିଠିଭାଗ" ପାଦାଂଶ ପରେ
'ଘ' ପୋଥିରେ ଅଧିକା ପାଠ:—

ଶରଦ ମେଘ ଜାଣି ଦିଶଇ ତାର ପ୍ରଭା
କି ଅବା ଅଇରାବତ ବଂଶ କୁଳ ଅବା ।
ରତ୍ନ ତୋଡର ଯେ ବାଜଇ ରୁଣ ଝୁଣ
ଘର୍ଘର ଘଣ୍ଟ ନାଦେ ସିନ୍ଧୁ କି ଉଛନ୍ନ ।
ରତ୍ନାକର କ୍ୟୋତ ଜାଣି କି ଦନ୍ତ ଅବା
ଜଳଦ ମେଘେ ଯେସନ୍ତେ ବଜୁଳର ପ୍ରଭା ।
ସେ ହାଥୀ ଉପରେ ବିଜୟେ କୁରୁପତି
ରଥ ଗଜ ଅଶ୍ୱ ଅନେକ ଲାଗିଛନ୍ତି ।
ଲକ୍ଷେକ ରାଜା ଯାହାର ଅଛଇ ପରଶ୍ୱର
ଦୃଷ୍ଟି କାମଦେବ ଜାଣି ଧୃତରାଷ୍ଟ୍ରର କୁମର ।
ରଥ ଗଜ ପାଶେ ଛନ୍ଦୀ ଯେ ବିଶେଷ
ପଞ୍ଚ ପଥ ଯୋଜନ ଗହନ ଅଶେଷ ।
ବିମାନ ପାତାଙ୍ଗ ଯେ କହଣା ନ ଯାଇ
କୋଟିଏ ଶଙ୍ଖ ଧ୍ୱନି ଆଗରେ ଫୁରଇ ।

ମହା ସମ୍ମୁଖେ ଥାଠ ଯେଉଣ ରାଜା ଧୃତରାଷ୍ଟ୍ର
ବଜେ ଗୁଞ୍ଜଗଲ ଅଧିପ ଛଣାନେ୍ୟ ଦେଇ ଦୃଷ୍ଟି । ୧୦ ।
ବିରୂପାକ୍ଷ ସଇନ ଯେ ଅକଳତ କାଠି
ମହା ଅନକୂଳେ ବଜେ ଧର୍ମରାୟେ ଯୁଧିଷ୍ଠି । ୧୧ ।
ଯୁଧିଷ୍ଠିଙ୍କ ବାମେ ଦ୍ରୁପଦ ଡାହାଣେ ବିରାଟ
ନର୍ଥର ଦେଶର ରାଜା ଗଣପତ ଆଗିଆଣି ଥାଠ । ୧୨ ।
ସମସ୍ତେ ଦୂରେ ଥାଇ ଦେଖନ୍ତି ଯେ ହନୁମନ୍ତର ମୁଖ
ଦଧିବାବନ ସୁମନ୍ତ ଦଧି ମଚ୍ଛ ଶଙ୍ଖ ଚନ୍ଦ୍ର ଶିଗିବସ୍ତ । ୧୩ ।

କଣଠ୍ୟେ ନଚବାଣ ସେ ଶ୍ୱେତ ନାଗର ପିଠି
ଆରୋହଣ କରିଛନ୍ତି ଧର୍ମରାଜ ଯୁଧିଷ୍ଠି । ୧୪ ।
ଅଗସ୍ତି ମୁନି ବକତା ବଇବସୁତ ମନୁ ଶ୍ରୋତା
ପିଣ୍ଡ ପ୍ରାଣ ଦେୟକତ୍ତୁ ହୋଇବାରେ ମନ ହୋଇଛନ୍ତି ବକତା । ୧୫ ।
ଚଇତନ ବୋଲଇ ମନ କରିଥାଅ ହେତୁ
ଭୀଷ୍ମଙ୍କର ଦୃଷ୍ଟାୟୁ ହନ ଶୁଣ ସାଂଗ୍ରାମର ତତ୍ତ୍ୱ । ୧୬ ।
ଦିବ୍ୟ ଅବତାର ଗାଙ୍ଗେବ ମହାରଥୀ
ମକର ମାସ ଶୁକଳ ପକ୍ଷ ଦୃଷ୍ଟାୟୁର ତିଥି । ୧୭ ।
ପଣ୍ଡିତ ବାର ଅଟଇ ଯେ ଦୁରନ୍ତି
ଶାନ୍ତନୁରର ନନ୍ଦନ ନଦୀଧ ଅର୍କ ମୂର୍ତ୍ତି । ୧୮ ।
ନର୍ଧୂମ ଅଗ୍ନି ଜାଣି ବିରାଜଇ ତାହାଙ୍କର କାୟେ
ବେନି ଲୋଚନ ଭ୍ରମଇ କାଳ ଚନ୍ଦ୍ର ପ୍ରାୟେ । ୧୯ ।
ସହସ୍ରାର୍ଜୁନର ପ୍ରାୟେକ ତେଜ ବିକାଶି
ଉଭୟ ବଳ ସଇନ ଯେତା ଭୀଷ୍ମଙ୍କୁ ସେ ଆନେକଷି । ୨୦ ।
ଦେଖିଣ ପ୍ରଶଂସା କରଇ ରାଜା ମାନଡନ୍ଦବ୍ରହ୍ମ
ବାସବର ପ୍ରାୟେ ଦିଶଇ ଭୀଷ୍ମଙ୍କର ମୂର୍ତ୍ତି । ୨୧ ।

---

୨୧।୨ { ନାଶକର ଦେବତାର ପ୍ରାୟେ ଦିଶଇ ଭୀଷ୍ମଙ୍କର ମୂର୍ତ୍ତି । (କ, ଚ, ଢ଼)
କୋଟି ସୂର୍ଯ୍ୟର ତୁଲେ ତୋହୋର ତେଜମୂର୍ତ୍ତି । (ତ୍ର, ଥ, ଦ)

ନଚସ୍ୱେ ଗାଙ୍ଗେବ ଆଜ ଫେଡବେ ଦୁର୍ଗତି
ପାଣ୍ଡବ ବଳ ନଚେ ଆଜ ଦହିବ ସବୁନ୍ତ । ୨୨ ।
ପନ୍ନଗା ନାଗପୂଣ ଯେନଣ ରତ୍ନମାଳା
ଆପଣେ ଲମ୍ବାଇଲେ ନେଇ ଖ୍ରିଷ୍ଣଂକର ଗଳା । ୨୩ ।
ଯେ ମହା ମଣ୍ଡଳେ ଭୁଞ୍ଜ ଯେକା ରଥୀ ହାଦେ
ଲଭିବ ପଞ୍ଚ ରାଜ୍ୟ ତୋହୋର ପରସାଦେ । ୨୪ ।
ଶୁଭ ମଙ୍ଗଳ ଅନକୂଳ ଯେନ ଚଳ ବେଗେ ଯାସି
ପଞ୍ଚ କୋଟି ତୁରଙ୍ଗମ ଶ୍ୱେଖାର ସଙ୍ଗେ ନେସି । ୨୫ ।
ଗଙ୍ଗାର ନନ୍ଦନ ରଥେ ମାଳଦ ସାରଥି
ଶାନ୍ତନୁର ନନ୍ଦନ ଜଗୁଜତା ମହାରଥୀ । ୨୬ ।
ଶ୍ୱେଖାର ତୁରଙ୍ଗମ ହଣତ କାଳ ମେଘା
ପବନୁଂ ଚଞ୍ଚଳ ସେ ଚଳନ୍ତ ଅତି ବେଗୁଂବେଗା । ୨୭ ।
ଅଶି ସହସ୍ର ବଳ ଶ୍ରୀକଚରେ କଣସ୍ଥ ରତ୍ନ ଧନୁ
ଅନବାରଣ ବିଦ୍ୟା ଯାହାକୁ ଶିଖାଇଲେ ଶାନ୍ତନୁ । ୨୮ ।
ବେନ କୋଟି ନାଗଜ ପୂସ୍ରେଇ ବେନ କୋଣେ
ଶ୍ୱେତ କେଷଣି ଧ୍ୱଜ ଉଡଇ ଗଗନେ । ୨୯ ।
ଜନକର ନାଥ ରଥ ପ୍ରାସ୍ୱେ ଯେମନ୍ତ ଆକାଶୁଂ
ନନ୍ଦଘୋଷ ରଥ ଭେଟିଲ ଖ୍ରିଷ୍ମ ଦେବ ଅଂସୁ । ୩୦ ।
ଦେଖିଣ ଗାଙ୍ଗେବ ଧଇଲେ ଅଜଗ ଧନୁ ହାଥେ
ବୋଇଲେ କାଳର ପ୍ରାପ୍ୟ ଆଜ ନୋହୋଇ କାହ୍ନଂ ଆସୁ ପାଥେ । ୩୧ ।
ଦୁର୍ଦ୍ଧଷ ଶରଣ ଯେ ପଶିଲକ କାଳ
ସମର ସନ୍ଧ ପ୍ରାପ୍ୟେ ମଣି ମ୍ୟଂ ଉପ୍ରୋଧ ଯୁଦ୍ଧ କଲ । ୩୨ ।
ଅର୍ଜୁନ ବୋଇଲେ ତାତ କାଳି ତୋହୋରେ ଉପ୍ରୋଧ
ନଚସ୍ଥ ସମ୍ପଦ ତାତ ଆଜ ବୁଜାଇଲୁ ରଣ ମଧ୍ୟ । ୩୩ ।

---

୨୬।୧ ନଳେନ୍ଦୀ, ବସନ୍ତ, ନନ୍ଦାଦ, ବଶିଖ ପ୍ରଭୃତ ସାରଥିର ବିଭିନ୍ନ ନାମ ପୋଥିମାନଙ୍କରେ ଦେଖାଯାଏ ।

୩୩।୨ ନଚସ୍ୱେ ଶିର ଛେଦ ହୋଇବୁ ଆଜ ରଣ ମଧ୍ୟ । (ଧ, ଓ, ନ)

ଦୁର୍ଯ୍ୟୋଧନ ଅଶ୍ୱତ୍ଥମା ଦ୍ରୋଣ କର୍ଣ୍ଣର ଦେଖନ୍ତେ
ଗାନ୍ଧାରୀ ନନ୍ଦନଂକୁ ଆଜ କେ ପାଣ୍ଡବ ରଖିତେ । ୩୪ ।
ଅର୍ଜୁନର ଯେସନ ବଚନେ ଶାନ୍ତନୁର ସୁତ
କମ୍ପାଇ ଅର୍ଜୁନର ଆଚ୍ଛେଦିଲେ ରଥ । ୩୫ ।
ଯେସନେ ରାହୁ ଆଚ୍ଛେଦଇ ଶଶାଂକେ
ପାର୍ଥକୁ ଘୋଟିଲେ କ୍ଷତ୍ରିୟ ରଣରଂକେ । ୩୬ ।
କୋପେଣ ନାରାଚ ସେ ପୂରେଇଣ ଧନୁ
ସହସ୍ରେ ନାରାଚ ପୂରେଇଣ ବନ୍ଧିଲେ ଶାନ୍ତନୁର ତନୁ । ୩୭ ।
ପୁଣ ନାରାଚ ଯେ ପୂରେଇ ଅନ୍ତ୍ରବ୍ରତେ
ବନ୍ଧିଲେ ନାରାଚ ପଞ୍ଚ ଅଚ୍ଯୁତ କୃଷ୍ଣ ପାଥେ । ୩୮ ।
ପୁଣ ଛତ୍ତ ଦଶ ନାରାଚ ବନ୍ଧିଲେ ଆଚ୍ଛେଦି
ନନ୍ଦିଘୋଷ ରଥ ଉପରେ ଶର ସେ ବରଷି । ୩୯ ।
ହରି ଅର୍ଜୁନ ଶଂକଲେ ଯେ ଭୀଷ୍ମଂକର ବାଣ ଦେଖି
ଆଦିତ୍ୟ ଲୁଚିଲେ ଯେ ଗଗନ ଉପେକ୍ଷି । ୪୦ ।
ଅନିବାରଣ ଶର ଯେ ବନ୍ଧିଲେ ବୀର ପାଥ
ଶ୍ୱେତକା ଘାନ୍ତକେ ବନ୍ଧିଲେ ନାରାଚ ଅନ୍ତ୍ରବ୍ରତ । ୪୧ ।
ଭୀଷ୍ମଂକର ନାରାଚନ୍ତ ଛେଦିଲା ଫାଲଗୁନ
ଦେଖିଣ ଗାଙ୍ଗେବ ଧାଇଂଲେ ଦିବ୍ୟ ଶସ୍ତ୍ର ଘେନ । ୪୨ ।
ପଞ୍ଚମୁନା ନାରାଚ ପୂରେଇଲେ ବେନି ଶତ
ଅଶ୍ୱଂକର ଉପରକୁ ବନ୍ଧିଲେ ମହାମନ୍ତ୍ର । ୪୩ ।

---

୩୯।୧ ପୁଣ ସହସ୍ରେ ନାରାଚ ବନ୍ଧିଲେ ଆଚ୍ଛେଦି । (କ, ଘ, ଠ)
୩୯।୨ ହରି ଅର୍ଜୁନ ଉପରେ ଶର ଅବିରତେ ବରଷି । (ଥ, ଔ, ନ)
୪୧।୨ ଅନଯାପ ଶର ଯେ ବନ୍ଧିଲେ ବୀର ପାଥ । ( ଘ, ଧ )
୪୧।୨ { ଶ୍ୱେତକା ଘାନ୍ତକେ ଛେଦିଲା ସେ ଶର ନବ ଅନ୍ତ୍ରବ୍ରତ । ( ଔ, ଥ, ନ )
{ ଶ୍ୱେତକା ଘାନ୍ତକେ ବନ୍ଧିଲା ନାରାଚ ଘନ ଅନ୍ତ୍ରବ୍ରତ । (କ, ଘ, ଝ, ଛ, ଚ)
୪୩।୧ ପଞ୍ଚମୁନା ନାରାଚ ପୂରେଇଲା ପଞ୍ଚଶତ । ଔ, ଥ, ନ )
୪୩।୨ ଅର୍ଜୁନ ଉପରକୁ ବନ୍ଧିଲେ ମହାମନ୍ତ୍ର । ( ଝ, ଚ, ଢ )

ସଇନ୍ୟେକ୍ୟ ଅସଂଖ୍ୟ ତ ସେ ଭୀଷ୍ମଂକର ମହିଂମା
ବୀରବର ସୁନ୍ଦର ସୋମଦତ୍ତ ସେ କ୍ଷତ୍ରିସୁ ଉତ୍ତମା । ୪୪ ।
ରଥେକ ଆରୋହଣ ବୀର ଭୀମସେନ
ନଇରୂତ ନାମେ ସାରଥି ରଥ ବାହଇ ତୂନ୍ୟେ ଘନ ଘନ । ୪୫ ।
କଉରୋବ ଥାଟରେ ଯାଇଂ ପଶିଲ୍ଲା ବୀରମଣି
ବ୍ରଷଇ ନାରାଜ ଯେ ବରଷା ଋତୁ ଜାଣି । ୪୬ ।
କୋଟିଏ କାମ ଜିଣି ଭୀମସେନ ରୂପ ବର୍ଣ୍ଣି
ଭୀମସେନର କଳେବର ଶୋଭା ଯେ ଲଙ୍ଘଇ ସୁବର୍ଣ୍ଣି । ୪୭ ।
ଚନ୍ଦ୍ର ପ୍ରତିମା ଜାଣି ମେ ଭୀମସେନ ରୂପ ପରକାଶି
ଧନୁ ଗୁଣେ ନାରାଜ ଭୀମସେନ ପାଞ୍ଚଶତ ଧରି କଷି । ୪୮ ।
ଲୌହସାର ଧନୁରେ ଲୌହାର ଗୁଣ ଖଞ୍ଜି
ରଥେ ଅଷ୍ଟରତ୍ନ ମାଣିକ୍ୟ ପୁଞ୍ଜି ପୁଞ୍ଜି । ୪୯ ।
ଧନୁର କୋଣେ ଝଲକନ୍ତ ରତ୍ନମଣି
ଜଳଧର ମେଘେ ଯେହ୍ନେ ବିଜୁଳି ତେଜ ଜାଣି । ୫୦।
ପକ୍ଷମୂନା ନାରାଜେ କଂକପକ୍ଷୀ ରଞ୍ଜି
ଝଲକନ୍ତ ନାରାଜେ ଦିବାକର ତେଜ ଗଞ୍ଜି । ୫୧ ।
ଆରେ ଆରେ ବୋଲିଣ ଯେ ହାକଇ ମାରୁତି
ସୁମୁଖରେ ଭେଟନ୍ତା ନାହିଂ ନାହିଂ କେହି·ରଥୀ । ୫୨ ।
ଅନର୍ଯାପ ବାଣ ସେ ଯେ ବର୍ଷଇ ମାରୁତି
ପଳାବନ୍ତ ସଇନ୍ୟ କେହି ନ ରହନ୍ତ କତି । ୫୩ ।
ନଳେକ ପ୍ରମାଣେ ଯାର ଲୌହଶର ଅଟଇ
ବଜ୍ରକ୍ଷେଣ ହାଥୀ ଯୋଦ୍ଧା ଜଡ଼ିତ ହୋଇ ଫୁଟଇ । ୫୪ ।
ଆରଣ ଲାଗନ୍ତେ ଯେ କ୍ଷେପନ୍ତ ମଯ୍ୟେମନ୍ତା
ଧାମଇଂ ବୃକୋଦର ଅପ୍ରମିତ ବଳବନ୍ତା । ୫୫ ।
ଥାଟ ଭଗ୍ନ ଦେଖିଣ ଧାଇଂଲ୍ଲା ସୋମଦତ୍ତ
ଭୀମର ଆଗରେ ଟେକିଲାକ ନେଇ ରଥ । ୫୬ ।

---

୫୫।୧ ଆରଣ—ଅଂକୁଶ ।
୫୬।୧ ରଣ ରଙ୍ଗ ଦେଖିଣ ଧାଇଲା ସୋମଦତ୍ତ । ( ଙ, ଧ )

ତିନିଶତ ନାରାଜ ପୂରେଇ ମହାରଥୀ
ଭୀମସେନ ଉପରକୁ ବିନ୍ଧିଲେକ ଝାଟି । ୫୭ ।
ନାରାଜକୁ ନାରାଜ ପଡ଼ିଛାଳ କରନ୍ତି ଦୁହେଁ ମହାରଥୀ
ଝଣ ଝଣାନ୍ତି ନାରାଜ ତାହାର ଅଗ୍ନି ଜ୍ୟୋତି କାନ୍ତି । ୫୮ ।
ରଥ ଛେଦନ୍ୟା କରିଣ ବୀର ଭୀମସେନ
ଗଦାବର ବୁଲାଇ ସେ ଧାଇଁଲେ କୋପମନ । ୫୯ ।
ବାରେଣ ନାରାଜ ବିନ୍ଧଇ ସୋମଦତ୍ତ
ପଡ଼ିଲା ନାରାଜ ଭୀମସେନ ହୃଦଗତ । ୬୦ ।
ଲୋହଶର ପ୍ରାୟେକ ଯାହାର ରୋମାବଳୀ
ନାରାଜ ସେ ଦେହେ କ ପାରନ୍ତି ଯେ ଗଳି । ୬୧ ।
ଭାଙ୍ଗିଣ ଚୂନା ଯେ ହୋଇଲା ସର୍ବ ଶର
ଧାଇଁଣ ସୋମଦତ୍ତ ରଥେ ପିଟିଲା ଗଦାବର । ୬୨ ।
ପର୍ବତ ସମାନେ ଯାର ବାଜନ ବାଜନ ଭାର ଗଦା
ପିଟନ୍ତେ କଉରୋବ ସଇନ ସର୍ବ କଲା ପଦା । ୬୩ ।
ସୋମଦତ୍ତ ରାଜାର ରଥରେ ଗଦାବର ପଡ଼ି
ଭାଙ୍ଗିଣ ରହୁବର ହୋଇଲାକ ଶତେ ଚୂରି । ୬୪ ।
ଅଶ୍ୱ ସାରଥି ରଥ ଆଦି କରି
ସମସ୍ତ ଚୂର ଗଲା ରଥୀ ଗଲାକ ଅପସରି । ୬୫ ।
ଲୋହାର ଗଦା ଟେକି ଧଇଲା ସୋମଦତ୍ତେ
ଧାଡ଼କାରେ ପିଟିଲା ନେଇ ସେ ଭୀମସେନର ଗାତେ । ୬୬ ।
ଦେଖିଣ ପାବେନ ଯେ ପାଡ଼ିଲା ବାମଅଙ୍ଗ
ବୃକୋଦର ଅଙ୍ଗେ ପଡ଼ି ଗଦାବର ହୋଇଲାକ ଭଙ୍ଗ । ୬୭ ।
ଗଦା ପକାଇଣ ସେ ହୋଇଲା ଶୂନ୍ୟ ହାଥ
ସମରେ ଘୁଞ୍ଚିଣ ସେ ହୋଇଲା ନିସତ । ୬୮ ।

---

୫୮। { ରଥର ଉପରେ ଅଗ୍ନି ଉଠେଲକ ଝଲକାଇ ଝାଟ । ( ଧ, ଙ, ଝ )
{ ରଣ ଝଣ ନାରାଜ ଦିଶଇ ଯେସନ୍ତେ ବଡ଼ବାନଳ ଜ୍ୟୋତ । ( ଘ )

ପଛେ ଗୋଡ଼ାଇଣ ସେ କାଳଦଣ୍ଡ ପାଣି
ରହ ରହ ସୋମଦତ୍ତ ହାକଇ ଉଚ୍ଚେ ବାଣୀ । ୬୯ ।
ପଳାଇ ସୋମଦତ୍ତ ନ ଗୃହେଂ ଲେଉଟି
କ ଅବା ନାଶକର ଜଣ୍ଟୁକୁ ଅଷ୍ଟ ଘୋଟି । ୭୦ ।
ସୋମଦତ୍ତଙ୍କଇଂ କଷ୍ଟାଳ ଦେଖିଣ କୃପାଗ୍ରଯେଁ
ଭୀମସେନଙ୍କୁ ବନ୍ଧିଲେ ସଦ୍ଧସେ ନାରାଜେ । ୭୧ ।
ନାରାଜ ପଡ଼ନ୍ତେଣ ଯେ ଗର୍ଜଇ ପାବେନ
କୃପଂକ ଉପରକୁ ଧାମଇଂ ଗଦା ଘେନ । ୭୨ ।
ଗଜଯୂଥ ଦେଖି ଯେହ୍ନେ ଧାମଇଂ କେଶରୀ
କୃପଂକ ଉପରକୁ ପିଟିଲ ଗଦାବର ଘେନ କରି । ୭୩
କୃପଂକର ରଥରେ ଆକ୍ଷେପିଣ ପିଟି
ବଜ୍ର ବଢ଼ାଚଡ଼େଣ କୃପଂକ ରଥ ଗଲା ଫାଟି । ୭୪ ।
ବଚନ ଗଣ୍ଡି କରି ଡେଇଂ ପଡ଼ିଲେ କୃପ ସହୁଂ
ସାରଥିର ମୁଣ୍ଡ ବେଗେ ମୋଡ଼ିଲା ଭୀମସେନ ତହୁଂ । ୭୫ ।
ରଣ ରଙ୍ଗ ଧନ୍ଦୋଳ କରଇ ଘୋଟଇ ଘୋର ରୂପେ
କାଳାନଳ ରୂପ ଦେଖି ଭାଙ୍ଗିଲେ ସର୍ବ ଦର୍ପେ । ୭୬ ।
ପବନ ନନ୍ଦନ ସମରେ ଅବରୋଧି
ଯାବନ୍ତେ ବେଢ଼ିଲେ କଉରବ ଲକ୍ଷେ ଯୋଧୀ । ୭୭ ।
କେ ଶତେ କେ ସହସ୍ରେ କେ କୋଟିଏ ବାଣ ଧରି
ଭୀମସେନଙ୍କୁ ବନ୍ଧିଲେ ଆକର୍ଣ୍ଣ ସରି କରି । ୭୮ ।
ସମର ଘୋର ଅନ୍ଧାର ଦେଖିଣ ଦୁର୍ଦ୍ଧର୍ଷ
ଭୀମସେନର ଭୁଲେ ପ୍ରାକର୍ମ ସମକକ୍ଷ । ୭୯ ।

---

୭୧।୨ { ଭୀମସେନଙ୍କୁ ବନ୍ଧିଲେ ସପନ୍ତ ନାରାଜେ । ( ଙ, ଝ, ଟ )
{ ଭୀମସେନ ଉପରକୁ ବନ୍ଧିଲେ ସତୁରି ନାରାଜ । ( ଗ, ଠ )
୭୪।୨ କାଳେବର ଗଦା ବାଜି କୃପଂକର ରଥ ଗଲା ଫାଟି' (ତ, ଥ, ନ)
୭୮।୨ ପ୍ରତ୍ୟେକ ଭୀମସେନଙ୍କୁ ଯେ ବନ୍ଧିଲେ କୋପ କରି । (କ, ଠ)
୭୯।୨ ଭୀମସେନଠାରୁ ଅଧିକ ବଳ ତା ପ୍ରତକ୍ଷ । (ତ, ଥ, ନ)

ଚଉଷଠି ଚଉଷଠି ଘର ଲେଖେଂ ଯେନ ଗଦା ଦୁଇ କରେ
ରଣରଙ୍ଗ ମନ୍ଥିଲ ଯେତକା ଥାଟର ଭିତରେ । ୮୦ ।
ଦୁର୍ଦ୍ଧର୍ଷକୁ ଦେଖିଣ ସଇନ ହୋଇଲେ ବେନି ଭାଗ
ବିଜୟେ ଦୁର୍ଦ୍ଧର୍ଷ ଯାଇଂ ଭୀମସେନର ଆଗ । ୮୧ ।
ଭୀମ ଦୁର୍ଦ୍ଧର୍ଷ ଦୁହେଂ ଯେ ହୋଇଲେ ବେନି ସଖା
କଉରବେ ସଇନଂକୁ ସେ ନ କରନ୍ତି ଲେଖା । ୮୨ ।
ଲକ୍ଷେ ବଳ ଯେନ ସେ ଅଳମ୍ବୁଷ ରାକ୍ଷସ
ସବୁରି ବ୍ୟାଘ୍ର ବାହାନ ଊର୍ଦ୍ଧ୍ୱ ଖାଂକର କେଶ । ୮୩ ।
ବ୍ୟାଘ୍ରଚର୍ମ ସେନେହେ ଯେ ଟୋପର କାଛେଟି
ବାମ କରେ ମୂଷଳ ଡାହାଣ କରେ ଯାଠି । ୮୪ ।
କଳିଙ୍ଗସେନ ପ୍ରାୟେ ତାକୁ ମଣିଲା ମାରୁତି
ଦୁର୍ଦ୍ଧର୍ଷକୁ ପଛ କରି ଧାଇଂଲାକ ଧାଣ୍ଡି
ମହା ଭୟଂକାର ସେ କାଳାନଳ ମୂର୍ତ୍ତି । ୮୫ ।
ବେନି ଅନୁବ୍ରତ ଯୋଦ୍ଧା ଯେନ ଧାମଇଂ ଦୁଃଶାସନ
ଦୁର୍ଦ୍ଧର୍ଷର ଗ୍ରୀମ୍ବରେ ଆସି ମିଳିଲେ ବହନ । ୮୬ ।
ବିକର୍ଣ୍ଣ ସାରଥି ଦୁଃଶାସନକୁ ପୁଚ୍ଛଇ
ଦେଖ ତୋହୋର ସହୋଦର ଦୁର୍ଦ୍ଧର୍ଷଟି ଯେହ୍ନ । ୮୭ ।
ସହସ୍ରେକ ଯୋଦ୍ଧା ପାଡିଲେ ଆଜର ଯୁଦ୍ଧେ
ରକ୍ତ ମାଂସେ କର୍ଦ୍ଦମ ହୋଇ କବନ୍ଧ ନାଚନ୍ତି ରଣମଧ୍ୟେ । ୮୮ ।
ଦୁଃଶାସନ ବୋଇଲା ସୁଫଳ ଆଜର ଦିନ
ଦୁର୍ଦ୍ଧର୍ଷକୁ ମାରି ଆଜ ଫେଡିବ ଦୁର୍ଯୋଧନର ଅଭିମାନ । ୮୯ ।
ଶରଣ ପଶିବାର କାରଣ ପାଉ ମୋର ଭାଇ
ଜୀବନ୍ତେ ଧରିବଟି ପ୍ରାଣେ ନ ମାରିବ କେହି । ୯୦ ।
ଦୁଃଶାସନ ତିଆରନ୍ତେ ଦୁର୍ଦ୍ଧର୍ଷ କୁମର ଉଠି
ଯୋଦ୍ଧାମାନଂକ ଉପରେ ପ୍ରହାର କଲା ଯାଠି । ୯୧ ।

---

୮୨।୨ କଉରବେ ଥାଟରେ କହନ୍ତି କାହାକୁ ନାହିଂ ଶଂକା । (ଛ.ଠ)

ବଜ୍ର ମୃଦୁଗର ଯେ ଆବର କରେଣ ଗଦାବଳୀ
ଶିବବର ସାବଷେ ଯେ ପ୍ରହାର କରଇ ତୋଳି । ୯୨ ।
ସହୁ ଦେଖିଲେ ଯେହ୍ନେ ପଳାବନ୍ତ ବୃନ୍ଦାଅର୍କେ
ନ ରହନ୍ତ ଯୋଦ୍ଧାଏ ଯେ ଶତ ସହସ୍ରକେ । ୯୩ ।
ରେ ରେ କାର କରଣ ଦୁର୍ଦ୍ଧର୍ଷ ବୀର ବେଗେ ଉଠି
ବଜ୍ର ମୃଦୁଗର ନେଇଣ ଧୃଶାସନ ରଥେ ପିଟି । ୯୪ ।
ଦୁର୍ଦ୍ଧର୍ଷର ଘାଏ ପଡ଼ିଲା ରଥ ଭାଙ୍ଗି
ଗାନ୍ଧାରୀ ନନ୍ଦନ କୋପେ ଧାମଇଂ ଗଳଗାଜି । ୯୫ ।
ଡାହାଣ ଭୁଜେ ଅନ୍ତରୀକ୍ଷେ ଧଇଲାକ ରଥ
ଆରେକ ରଥେ ନେଇ ପିଟିଲା ତୁରିତ । ୯୬ ।
ରଥକୁ ରଥ ବାଜ ଉଠିଲା ଅନଳ
ପ୍ରତକ୍ଷେ ପ୍ରଚଣ୍ଡ କ ସେ ଗାନ୍ଧାରୀର ବାଳ । ୯୭ ।
ନଦାଧ ଆଦ୍ଭୁତ୍ୟ ଜାଣି ଦୁର୍ଦ୍ଧର୍ଷର ମୃତ
ବେନି ଦଣ୍ଡେ ନାଶ କଲା ବେନିଶତ ରଥୀ । ୯୮ ।
ଶୁଣ ହୋ ରଇତନ ଧର୍ମବଳର କଥା
ପାଣ୍ଡବ ଆଗ୍ରେକେ ଦୁର୍ଦ୍ଧର୍ଷ ଯେତେକ ବଳବନ୍ତା । ୯୯ ।
ବହୁତ ସମରକୁ ସେ ନ କରଇ ଶଂକା
ରାମାୟଣ ଯୁଦ୍ଧେ ଯେହ୍ନେ ହନୁ ବଧଂସିଲା ଲଂକା । ୧୦୦ ।
ବେଢିଣ ଯୋଦ୍ଧାଏ ପ୍ରହାର କରନ୍ତ ତା ଅଙ୍ଗ
ଶହସ୍ରେ ଉପୁଡନ୍ତ ଗଦାଏ ହୋଅନ୍ତ ଯେ ଭଙ୍ଗ । ୧୦୧ ।
ଦୁର୍ଦ୍ଧର୍ଷ ପ୍ରହାର କେହ୍ନେ ନୁଆରନ୍ତ ମେଣ୍ଟି
ଯେତେକା ପ୍ରହାରକେ ରଥ ଗଜ ଅଶ୍ୱ ପଡନ୍ତ ମହୀଲୋଟି । ୧୦୨ ।
ସମରେ ଯୋଦ୍ଧାଏ ସେ ପାଇଲେ ସମ୍ମୁଖ
ପଳାବନ୍ତ ଅପସର କେହ୍ନ ନ ଦେଖନ୍ତ ମୁଖ । ୧୦୩ ।

---

୧୦୧ { ବେଢିଣ ଯୋଦ୍ଧାଏ ପ୍ରହାର କରନ୍ତ ଯେ କୋନ୍ତ
ଶହସ୍ରେ ନ ଫୁଟନ୍ତ ଗଦା ସହିତେ ହୁଅନ୍ତ ଭଗନସ୍ତ । (ଅନେକ ପୋଥି)

୧୦୩।୨ ପଳାବନ୍ତ ଅପସର କେହ୍ନ ନ ରହନ୍ତ ତାହାଂକର ମୁଖ । (କ,ଝ)

ସଇନ୍ୟ ବିଅର୍ଥ ଦେଖିଣ ବୀର ଧୃଶାସନ
ପାଞ୍ଚ ରଥୀ ଭୁଲେ ଆସି ମିଳିଲା ଦୁର୍ଯ୍ୟକ୍ଷର ସନ୍ନିଧାନ । ୧୦୪ ।
ପାଦ ଗତି ଦୁର୍ଯ୍ୟକ୍ଷର, ଉଠେ କୁମାର ଧୃଶା
ଆରେ ବାବୁ କେବଣ ଅଭାବେ ହୋଇଲୁ ଯେତେକ ନିରାଶା । ୧୦୫ ।
ଗୋଳକୁଣ୍ଡା ପାଣ୍ଡବେ ଅଟନ୍ତି ଜାର ଜାତକା
ବଣେଶେ ହୀନ ଭିକ୍ଷାବାସୀ ସେ ବ୍ରହ୍ମହତ୍ୟା ପାତକା । ୧୦୬ ।
କଳ୍ପତରୁ ତେଜ ରେ ଭଜିଲୁ ଯେ ରଣ୍ଡ
ପାଣ୍ଡବଂକ ଦେଖନ୍ତେ ଆଜ କାଟିବି ତୋର ମୁଣ୍ଡ । ୧୦୭ ।
ଗାନ୍ଧାରୀ ନନ୍ଦନ ବଚନ କହଇ ବିକଟି
ସ୍ୱାମୀ ଧୃଶାସନ ତୁମ୍ଭେ ସଭିହେଂ ଆଜ ଯମ ଭେଟି । ୧୦୮ ।
ସ୍ୱାମୀ ମଣବାର ଲୋକେ ସେ କହନ୍ତି ଦୁଷ୍ଟ ବାଣୀ
ପ୍ରାଣ ଯାନ୍ତେ ଯେହ୍ନେ ରୁବଇ ଦୁର୍ବଳ ପ୍ରାଣୀ । ୧୦୯ ।
ସ୍ୱାମୀ ପାଣ୍ଡବ ପଞ୍ଚାଳ ସେ ଜଗନ୍ନାଥେ ଥିଲେ
ମୋତେ ଜିଣନ୍ତା କେ ହୁଅଇ ତୁମ୍ଭର ଯେ ବୋଲେ । ୧୧୦ ।
ସ୍ୱାମୀ ତୁମ୍ଭେ ଲକ୍ଷେ ରାଜା ମୁହିଂ ଏକା ଜଣେ
ସେ ପାର ମୋର ଭୁଲେ କର କିନା ରଣେ । ୧୧୧ ।
ସ୍ୱାମୀ ଧୃଶାସନ ତୋର ପ୍ରତଗ୍ୟାଂ ବିରଧି
ଦେଖଇ କିନା ପ୍ରତଗ୍ୟାଂ ଶର କର୍ମେ ନ ବାନ୍ଧୁ । ୧୧୨ ।
ଶୁଣିଣ ଧୃଶାସନ ଗର୍ଜିଇ ବଡ ରାଗେ
ଜାଲାବଳୀ ନାରାଜ ବନ୍ଧିଲ ଅତି ବେଗେ । ୧୧୩ ।
ଧୃଶାସନ ନାରାଜ ପଡନ୍ତେ ଦୁର୍ଯ୍ୟକ୍ଷ କାମ ରୂପୀ
ଗଦାବର ବୁଲାଇ ନେଇ ଧୃଶାସନ ରଥେ ଖେପି । ୧୧୪ ।
ଭାଙ୍ଗିଣ ରଥବର ହୋଇଲା ଶତେ ଚୂନା
ଭୂମିରେ ପଡଲା କୁମାର ଧୃଶାସନ ଜେନା । ୧୧୫ ।
ଗଦାବର ଘାତେ ଧୃଶାସନ ପଡିଲାକ ମୁର୍ଚ୍ଛା
ତତକ୍ଷଣେ ଦୁର୍ଯ୍ୟକ୍ଷ କରଇ ତାକୁ ପୃଚ୍ଛା । ୧୧୬ ।

---

୧୧୪।୧ ଧୃଶାସନ ନାରାଜ ପଡନ୍ତେ ଦୁର୍ଯ୍ୟକ୍ଷ ବିଶ୍ୱରୂପୀ । (କ, ଚ)

ଉଠ ଉଠ ସ୍ୱାମୀ ବୋଲି ଦୁର୍ଦ୍ଧର୍ଷ କୋଳ କରି
ଦୁର୍ଜୟକୁ ବୋଇଲା ରେ ଯୋଦ୍ଧାକୁ ଘେନିଯାଅ ଅପସରି । ୧୧୭ ।
ସାଷ୍ଟମ ହୋଇଣ ଯେ ଉଠିଲା ଧୂଶାସନ
ଦୁର୍ଦ୍ଧର୍ଷ ବୋଇଲା ସ୍ୱାମୀ ସମର ଯାକେ ତୁମ୍ଭର ଯେସନେକ ସାବଧାନ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଯେ ପ୍ରତଗ୍ୟାଂ ବହୁତ କରିଥିଲେ
ଅପରପେ କାଳକୁ କେହି ରଖି ନୁଆରିଲେ । ୧୧୯ ।
ଦୁର୍ଦ୍ଧର୍ଷ ବୋଇଲା ସ୍ୱାମୀ ଭୂମନ୍ତ ମାଗୁଅଛି ଯେତେ
ଆବର ବେଳେ ସମରେ ନ ପଶିବୁଟି କଦାଚିତେ । ୧୨୦ ।
ସ୍ୱାମୀ ଦ୍ରୋପଦୀଂକ ହିଂଘାସ ଯେ କଲୁ ତୁ ସଭା ତଳେ
ଭୀମସେନ ଠାକୁରେ ତାହା ଲିହିଛନ୍ତି ବକ୍ଷସ୍ଥଳେ । ୧୨୧ ।

ତେର ବରଷ ସତାଣୋଇ ଦିନ ଗଲା
କଇଛାବନ୍ତୀ ସଖୀ ସେ କେଶ ନ ବାନ୍ଧିଲା । ୧୨୨ ।
ଯେ ତୋହୋର ଦକ୍ଷିଣ ଭୁଜ ଓପାଡିବେ ସମରେ
ସେ ରୁଧିର ନିଗିଡିବେ ପାଞ୍ଚାଳୀ ଶିରରେ । ୧୨୩ ।
ତେବେ ସେ କେଶ ବାନ୍ଧିବେ ସଖୀ ଯେ ଅପର୍ଣ୍ଣା ।
ପ୍ରତଗ୍ୟାଂ ଅଘରଠି ପାଣ୍ଡବ ଭୀମସେନା । ୧୨୪ ।
ଭୀମସେନ ଠାକୁରେ କରୁଅଛନ୍ତି ଅଲମ୍ବୁଷ ତୁଲେ ଯୁଦ୍ଧ
ଯେହ୍ନକ୍ଷଣି ଧାଇଂମେ ସେ ମୋତେ ନ ଦେଖି ରଣ ମଧ୍ୟ । ୧୨୫ ।
ଦିନା କେତେ ଗୃହଥାଅ କନା ହୋ ଧୃଶାସନ
ନ ରହିନ ସମରେ ପଳା ଯା ବହିନ । ୧୨୬ ।

---

୧୨୬।୧ ଦିନ ଗୃହିପାଞ୍ଚ ଜାଇଣ ଥାଅ ଧୃଶାସନ । (ନ, ଥ, ଊ,)

୧୨୬।୨ "ନ ରହିନ ସମରେ ପଳାଯା ବହିନ" ପାଦାନ୍ତ ପରେ ନ, ଥ, ଊ,
ପୋଥିମାନଙ୍କରେ ଅଧିକା ପାଠ —
ଯଦ୍ୟପି ତୋତେ ମୁହିଂ କରାଇମି ସମାଧାନ
ଦ୍ରୋପତୀ କେଶ ଧରି ତୁ କରିଛୁ ବିବସନ ।
ଯୁଦ୍ଧେଷ୍ଟି ଦେବଂକର ତୁ ଯେ ଅଟୁ ରାଜ ଦ୍ରୋରେହା
ଦ୍ରୋପତୀ ଭୀମସେନ ତୋତେ ଛାଡିଲେନି ସେନେହା ।

ସାଷ୍ଟାମ ହୋଇ ଧୂଶାସନ ବସିଲ୍ଲ ଯାଇଂ ରଥେ
ବାହୁଡ଼ଇ କଉରବେ ବମନ ହୋଇ ସମରେ ବଅର୍ଥେ । ୧୨୭ ।
ଧୂଶାସନ ବମନ ଦେଖି ଦୁର୍ମୁଖ ଦୁର୍ବକର୍ଣ୍ଣ
ବେନ ଲକ୍ଷ ଯୋଦ୍ଧା ଯେନ ଧାଇଂଲେ ବହନ । ୧୨୮ ।
ମାର ମାର ବୋଲଣ ଯେ ପାଣ୍ଡବ ଘୋର ବୋବ
ପାଦଭରେ ହେଲ ଯେ ଯେନଇଂ ମହୀ ଦେବୀ । ୧୨୯ ।
ଧୂଶାସନକୁ ଆବୋରଲେ ବେନ ବାରେ ଆସି
ଦୁର୍ଦ୍ଦଷକୁ ନାଗଙ୍କ ବାନ୍ଧଲେ ଆନେଷି । ୧୩୦ ।
ଶୁଣ ହୋ ମନୁରଯ୍ୟେ ପର୍ବେରଇ ଚଇତନ
ଅଲମ୍ବୁଷା ତୁଲେ ସମର କରଇ ଭୀମସେନ । ୧୩୧ ।
ସମରେ ଭୀମସେନ ପ୍ରତଗ୍ୟାଂ ଗରୁ ଘୋଷ
ଯେକା ବ୍ୟାଘ୍ର ଯେହ୍ନେ ଗ୍ରୁଗଳ ପଲ କରେ ଧ୍ୱଂସ । ୧୩୨ ।
କଉରବେ ବଲ ଥାଠେ ଭୀମ ପ୍ରହାର କରନ୍ତେ
ଅଲମ୍ବୁଷା ବେଗାକଲା ଆସି ଡନ ଅଦ୍ଭୁତ ଯେନ ରଥେ । ୧୩୩ ।
ଯେକା ରଥକେ ଯୋଚଅଚ୍ଛି ଅଷ୍ଟ ଅଷ୍ଟ ବ୍ୟାଘ୍ର
ଦେଖିଣ ସାନନ୍ଦ ସେ ପାଣ୍ଡବ ବୃକୋଦର । ୧୩୪ ।
ରଣ ରଙ୍ଗେ ବୃକୋଦର ଦୁସହ ଅଭୟା
କଣପ୍ର ଗିଣ ସାରକ୍ଷେ ବକାଶିଲ ତାର କାୟା । ୧୩୫ ।
ଚନ୍ଦ୍ରକରଣ ଜାଣି ବେନ କରେ ଯାର ଗଦା
ଯମ ଦେବତାକୁ ଭଯ କଣନ୍ତ ସାମରଥ ସଦା । ୧୩୬ ।

---

୧୩୩।୧ "କଉରବେ ବଲ ଥାଠେ ଭୀମ ପ୍ରହାର କରନ୍ତେ" ପାଠପରେ 'ଘ' ପୋଥିରେ ଅଧିକା ପାଠ
କେହୁ ରହୁ ନୁଆରଲେ ଭୀମସେନ ଅଗ୍ରତେ ।
ବନ୍ଧ ଭାଙ୍ଗନ୍ତେ ଯେହ୍ନେ ଜଲ ଖେପି ଯାଇ
କଉରବେ ବଲ ପଲାନ୍ତ ତେମନ୍ତ ପ୍ରାୟେ ହୋଇ ।
କଉରବେ ବଲ ବଣ୍ଟେଇ ଭଗନ୍ତେ
ଅଲମ୍ବୁଷା ମିଳଲ୍ ତନ ଅଦ୍ଭୁତ ରଥେ ।

ବକପଲ ଦେଖିଣ ଯେହ୍ନେ ଧାମଇ ଶାମଳ ପକ୍ଷୀ
ଧାମଇଂ ବୃକୋଦର ଦୁଷ୍ଟନ୍ତେକ ବଳ ଦେଖି । ୧୩୭ ।
ଭୀମସେନଙ୍କଇଂ ଦେଖି ଅସୁର ବଳଥାଟ
କ୍ଷତେପୁର କରି ବେଢିଲେ ମହାଯୋଦ୍ଧା । ୧୩୮ ।
ଲୁହାର ଗଦା ଶତେ ଶତେ ଭାର ଘେନିଣ ଯେ ହାଥେ
ଗିରିବର ସାଦୃଶେ ସେ ଦଶନ୍ତ ଦୁଷ୍ଟନ୍ତେ । ୧୩୯ ।
ଯେତେକା ପାଣ୍ଡବଙ୍କଇଂ ତିନି ଅନ୍ଧବ୍ରତ ଯୋଧୀ
କେହୁ ଶତେ କେହୁ ସହସ୍ରେ ନ ରାଜ ଅକ୍ଷଣେ ବନ୍ଧ । ୧୪୦ ।
କକଡା ମାସରେ ଯେସନେ କରଇ ଜଳ ବୃଷ୍ଟି
ଆକାଶେ ଅନ୍ଧାର ହୋଇଲେ ଦିନକର ତେଜ ଘୋଟି । ୧୪୧ ।
ଅସୁରଂକର ପ୍ରହାର ଦେଖିଣ ବୀର ଭୀମ
ବେଳୁଂବେଳ ଅଧର କମ୍ପାଇ ଗରୁତମ । ୧୪୨ ।
ଗଦା ମୁଦ୍‌ଗର ଭୁରୁଜ କୋନ୍ତ ଯାଠି
ଆରେ ଆରେ ବୋଲି ସ୍ୱେକମୁଖ ହୋଇ ଉଠି । ୧୪୩ ।
ଯେତେକା ଭୀମସେନଙ୍କଇଂ ବେଢିଲେ ଅନ୍ଧବ୍ରତେ କୋନ୍ତକାର
ବୃକୋଦର ଉପରେ ଆସି କଲେକ ପ୍ରହାର । ୧୪୪ ।
ଦେଖିଣ ମାରୁତି ସେ ବାମ ଅଙ୍ଗ ପାତି
ପଡଣ ଚୂର ଗଲା ଗଦା ମୁଦ୍‌ଗର ଶକତି । ୧୪୫ ।
ଭୁରୁଜ କୋନ୍ତ ନାରାଜ ଛେଲ ମୁଦ୍‌ଗର
ସମସ୍ତ ପଡଣ ଚୂରଗଲା ଭୀମସେନ ଉପର । ୧୪୬ ।
ଗର୍ଜିଣ ଯୋଦ୍ଧାଏ ମାରନ୍ତ କୋନ୍ତ ଯାଠି
ପଡ଼ ଉପୁଡଇ ତାହାର ଶରୀରେ ତଳେହେଂ ନ ଫୁଟି । ୧୪୭ ।
ଲେଉଟିଣ ଧାମଇଂ ସେ ପାଣ୍ଡବ ସୁନ୍ଦର
ଗଦା ପ୍ରହାର କଲା ଅସୁରଂକ ଉପର । ୧୪୮ ।
ଯେତେକ ପ୍ରହାରକେ କେହି ନୁଆରନ୍ତ ମେଣ୍ଟି
ରଥୀ ଯୋଦ୍ଧା ସାରଥି ସର୍ବେ ଗୁଣ୍ଡା ହୋଇ ଉଠି । ୧୪୯ ।
ରକତେ ବଲେପନ ଭୀମସେନର ଅଙ୍ଗ
ହିରଣ୍ୟ ବଦାରଣ କାଳେ ଯେସନେ ନରସିଂହ । ୧୫୦ ।

ଅସୁରେ ନାଶିଲେ ଭୀମସେନର ଭୀଷ୍ମରୂପ ଦେଖି
ପଳାଵନ୍ତ ବମୁଖେ ସେ ସମର ଉପେକ୍ଷି । ୧୫୧ ।
ରଥ ଗଜ ଅଶ୍ୱ ତେଜ କେଶ ବାମ ଅସମ୍ଭାଳେ
ଭାଜିଲେ ସଇନେ ସେ ହୋଇଣ ବକଳେ । ୧୫୨ ।
ଭାଙ୍ଗିଲେ ସଇନ କେହ୍ନ ନ ଗୃହ୍ନଂଲେ ଲେଉଟି
କାଲେବର ଗଦା ଘେନ ବୀର ଆକ୍ରୋଷିଣ ପିଟି । ୧୫୩ ।
ସଇନର ବାଅର୍ଥ ଦେଖିଣ ଅଳମ୍ବୁଷ
ପାଞ୍ଚଶତ ଯୋଦ୍ଧା ଘେନ ଧାଇଂଲା ରାକ୍ଷସ । ୧୫୪ ।
ଦନ୍ତବକ୍ର ସୁବର୍ଣ୍ଣ ଅଳାୟୁଧ ତିନି ପୁଅ
ଯେତେକେ ସେତେକେ ଜିଣି ପାରନ୍ତ ଇନ୍ଦ୍ର ଚନ୍ଦ୍ର ଦେବତାନ୍ତ । ୧୫୫ ।
କୁଠାର ଆୟୁଧ ଯେ ଧରିଛନ୍ତ କରେ
ଧାଡିକାରେ ପିଟିଲେ ନେଇ ଭୀମସେନର ଉପରେ । ୧୫୬ ।
ଦେଖିଣ ମାରୁତ୍ତି ଅସୁର ବାଘାତ
ଆକ୍ରୋଷି ଧଇଲାକ ଅଳାୟୁଧ ରଥ । ୧୫୭ ।
ଅନ୍ତରୀକ୍ଷ ମାର୍ଗେ ବୁଲାଇ ତାର ରଥ ଦଣ୍ଡ
ଅଳମ୍ବୁଷ ଉପରେ ପ୍ରହାର କଲା ରଥ ହୋଇଲା ବେନି ଖଣ୍ଡ । ୧୫୮ ।

---

୧୫୮।୧ "ଅନ୍ତରୀକ୍ଷ ମାର୍ଗେ ବୁଲାଇ ତାର ରଥ ଦଣ୍ଡ" ପରେ ଅଧିକାପାଠ—
ଘ ଓ ଛ ରେ

ଅଳମ୍ବୁଷ ଉପରେ ନେଇ ପିଟିଲା ପ୍ରଚଣ୍ଡ ଦୁର୍ଦ୍ଦଣ୍ଡ ।
ଭାଜିଣ ରଥ ଯେ ହୋଇଲା ସର୍ବ ଧୂଳି
କ୍ରୀଡା କରଇ ତହିଂ ବୃକୋଦର ମହାବଳୀ ।
ରଥ ଭଗ୍ନ ଯହୁଂ ହୋଇଲା ଦଇତର
ଅଳମ୍ବୁଷ ଅଳାୟୁଧ ପଡିଲେ ଭୂମିର ।
ବେନି ଛଡ଼ୀ ଯହୁଂ ହୋଇଲେ ପାଦଗାତ
ଭୀମସେନ ଉପରେ ନେଇ ପିଟିଲେ ଶକତ ।

୧୫୮ { ଅଳମ୍ବୁଷ ଉପରେ ପିଟିଲା ସେ ପବନର ସୁତ
ଶତଖଣ୍ଡ ହୋଇ ଭାଙ୍ଗିଲା ସେ ଅଳମ୍ବୁଷର ରଥ । (ଙ, ଥ, ନ)

ଅଳମ୍ବୁଷ ଅଳାୟୁଧ ଦୁହେଂ ପାଦଗତି
ଭୀମସେନ ଉପରେ ନେଇ ପିଟିଲେ ଲୁହାର ଶକତି । ୧୫୯ ।
ବାମ ଅଙ୍ଗ ପାତିଲା ସେ ବୀର ଭୀମସେନ
ଭାଙ୍ଗି ଣ ଶକତି ଯେ ହୋଇଲାକ ସର୍ବ ଚୂର୍ଣ୍ଣ । ୧୬୦ ।
ବିଶହସ୍ତ ହୋଇଲେ ସେ ପିତା ପୁତ୍ର ବେନି
ଗଳଗାଜି ଗଦା ପ୍ରହାର କଲାକ ପାବେନି । ୧୬୧ ।
ଆହେ। ଚଇତନ ଦନ୍ତବକ୍ର ବୋଲି କରି ଅଳମ୍ବୁଷର ଜ୍ୟେଷ୍ଠ ପୁତ୍ର
ଗଦା ହଣାତେ ସେ ଉଡିଲା ଗଗନ ପଥ । ୧୬୨ ।
ପୁଣି ପ୍ରହାର କଲା ଭୀମସେନ ଗଦା ତୋଳି
ଅଳୋୟୁଧର ଶରୀରେ ପଡ଼ି ରକତେ କର୍ଦ୍ଦମ ରୋମାବଳି । ୧୬୩ ।
ପଳାବଇ ଅଳମ୍ବୁଷ ଦୁଇ ପୁତ୍ରନ୍ତ ଘେନି
ଗୋଡ଼ାଇ ଭୀମସେନ ମାରିଲା ଅନେକ ସଇନି । ୧୬୪ ।
ଦଣ୍ଡ ଭଗ୍ନ କରିଣ ବାହୁଡ଼ଇ ବୃକୋଦର
ଲେଉଟି ମିଳିଲା ଯାଇଂ ଦୁର୍ଦ୍ଧର୍ଷ ସଙ୍ଗତର । ୧୬୫ ।
ଦୁର୍ଦ୍ଧର୍ଷ ଭୀମସେନ ବେନି ସୈନ୍ୟ ସଙ୍ଗ
କେତୁ ମଙ୍ଗଳ ପ୍ରାୟେ ଦିଶନ୍ତି ରଣ ରଙ୍ଗ । ୧୬୬ ।
ଶଲ୍ୟ ସୋମଦତ୍ତ କର୍ଣ୍ଣ ଅଶ୍ୱତ୍ଥାମା କୃପ
କୋଣକେ ଆଉଜିଲେ ଦୁହିଂଙ୍କର ଦେଖି ଘୋର ରୂପ । ୧୬୭ ।
ଅସନମାନ ଯୋଧାପ୍ରେ ମିଳିତ ସୁହୃଦେ ନାହିଂ
ଶରଣ ବୋଇଲେ ଭୀମ ଦୁର୍ଲ୍ଲଣେ ମାରଇ । ୧୬୮ ।
ଅଧର୍ମ ପଣ ଦେଖି ଯୋଧାପ୍ରେ ଆଡ଼େ ହୋଇଗଲେ
ରୁମ୍ଭରେ ରହିବାକୁ କେହି ଭରସା ନ କଲେ । ୧୬୯ ।
ଭୀମସେନ ଦୁର୍ଦ୍ଧର୍ଷ ଦୁହେଂ ଆସନ୍ତି ବାହୁଡ଼ି
ଯେ ମୁଖେ ପଡ଼ନ୍ତି ଜଣେ କେ ନ ଯାନ୍ତି ଉବୁରି । ୧୭୦ ।

---

୧୬୩।୨ ଅଳାୟୁଧର ଶିର ଭାଙ୍ଗି ରୁଧିର ବେଗେ ଗଲା (ବାହାରିଲା) । (କ, ଥ, ଡ)
୧୭୦।୨ ରୁମ୍ଭରେ କେହି କେହି ଭଜନ ନୋହିଲେ । (ଖ, ଘ, ଛ, ଝ)

ରଣରଙ୍ଗ ଧନ୍ଦୋଳ ସଙ୍ଗରେ ବଳବନ୍ତେ
ନନ୍ଦଘୋଷ ରଥ ବଞ୍ଚିଲ ଦୁର୍ଦ୍ଧାଂକର ଚଳଉଛି ଆସନ୍ତେ । ୧୭୧ ।
ଭୂରିସର୍ବାଂକ ସମ୍ମୁଖରେ ଉଭା ହୋଇ ଅଛନ୍ତି ଯୁଦ୍ଧେଷ୍ଟି
ଭୀମସେନ ଦୁର୍ଦ୍ଦର୍ଷ ଦୁହେଁ ଯାଇ ତାଂକୁ ଭେଟି । ୧୭୨ ।
ଗାନ୍ଧାରୀ ନନ୍ଦନ ଯୁଦ୍ଧେଷ୍ଟିଂକ କଲା ପୂଜା
ଭୂରିସର୍ବାଂକ ଭୁଲେ ସମର ଆବୋରିଲା ଦୁର୍ଦ୍ଦର୍ଷା । ୧୭୩ ।
ଯେସନେକେ ରାହୁ ଚନ୍ଦ୍ରଦେବତାନ୍ତ ଆନେଷି
ଶାନ୍ତନୁନୁର ନନ୍ଦନ ଦୁର୍ଦ୍ଦର୍ଷକୁ ଦେଖି ବହୁତ ପ୍ରଶଂସି । ୧୭୪ ।
ସାଧୁ ସାଧୁ ଦୁର୍ଦ୍ଦର୍ଷରେ ତୋହୋର ପିତା ମାତା
ଧୃତରାଷ୍ଟ୍ର କୁଳକୁ ତୁହି ସେ ଜାଣି ଧନ୍ୟତା । ୧୭୫ ।
ଅନେକ ପ୍ରଶଂସା କଲେ ଭୀଷ୍ମେ ଦୁର୍ଦ୍ଦର୍ଷକୁ ଦେଖି
ବାନ୍ଧିଲେ ନାରାଜ ଯେ କଉରୋବନ୍ତ ଉପେକ୍ଷି । ୧୭୬ ।
ଦୁର୍ଦ୍ଦର୍ଷ ମେଣ୍ଣିଲା ଭୂରିସର୍ବାଂକ ନାରାଜ ପଡନ୍ତେ
ପୁଣିହିଂ ବାନ୍ଧିଲେ ଲୋହ ନାରାଜ ଯେ ଶତେ । ୧୭୭ ।
ଗାନ୍ଧାରୀ ନନ୍ଦନ ଯେ ବୁଲଇ ଗଦା ବେନ
ନାରାଜ ବଞ୍ଚାଇଲା ସେ ବରଜ ଗଣ୍ଡ ନନ୍ଦନ । ୧୭୮ ।
ଅନେକ ସମର କଲେ ଭୂରିସର୍ବା ଗାଂଗଦେ
ଦୁର୍ଦ୍ଦର୍ଷକୁ ଜିଣି ନୁଆରିଲେ ବହୁତ ସମରେ ଯୋଦ୍ଧେ । ୧୭୯ ।

---

୧୭୬।୨ ବାନ୍ଧିଲେ ନାରାଜ ଯେ ଗଜରୋବ କ୍ରୋଧ ଉପେକ୍ଷି । (ଧ, ଙ)

୧୭୮।୨ "ନାରାଜ ବଞ୍ଚାଇଲା ବରଜ ଗଣ୍ଡ ଘେନ" ପାଠ ପରେ, 'ନ, ଥ, ଡ'
ପୋଥିମାନଙ୍କରେ ଅଧିକା ପାଠ ।

ପୁଣି ଷାଠିଏ ବାଣ ଯେ ମାଇଲେ ଭୀଷ୍ମ ବୀର
ଘାଏଣ ମୋହଗତ ସେ ଦୁର୍ଦ୍ଦର୍ଷ କୁମର ।
ବେଗେ ବେଗେ ନାରାଜ ଗଳା ବହିଲାକ ଶ୍ରୋଣୀ
ମୂର୍ଚ୍ଛା ଯାଇ ଦୁର୍ଦ୍ଦର୍ଷ ଯେ ପଡିଲା ଧରଣୀ ।

୧୭୯ ଅନେକ ଯୁଦ୍ଧ କଲେ ପିତା ଓପ୍ରୋଧ ତାକୁ ରୁଣ୍ଡ
ଦୁର୍ଦ୍ଦର୍ଷକୁ ଜିଣି ନୁଆରିଲେ ଆଉ ବଢ଼ି । 'ଘ'

ବନ୍ଧଣ ବମ୍ମଖ ଯଦ୍ଧଂ ହୋଇଲେ କୁରୁରାଜା ସୁତ
ସହସ୍ରଶିରା ଶହସ୍ରେକ ବାନ୍ଧଲେ ମହା ବଳବନ୍ତ । ୧୮୦ ।
ଯେସନେକ ବାମ୍ବରେ ଗୋପ୍ୟ ହୁଅନ୍ତି ସର୍ପେ
ବେଗେ ବେଗେ ଚଳଲେ ଶୋଷିଲେ କୁମାରର ଦର୍ପେ । ୧୮୧ ।
ରଣେ ଅସାଷ୍ଟମ ଯେ ଗାନ୍ଧାରୀର ବଳା
କୁରୁନାଥର ନନ୍ଦନ ଦେଖି ତେଜ ଅନର୍ଗଳା । ୧୮୨ ।
ରଥରୁ ଡେଇଂ ପଡଲେ ଭୂଚ୍ଚ ଯେ ଷବାସେ୍ୟ
ଆକ୍ରୋଷେ ଧଇଲେ ଯାଇଂ ଗାନ୍ଧାରୀ ତନୟେ । ୧୮୩ ।
ଦୁର୍ଦ୍ଧଷକୁ ତୋଳ ନେଇ ବସାଇଲେ ରଥେ
ବସ୍ତ୍ର ଦ୍ରୋହ ଲଗିବ ମେ ମାଟ୍ରବଇଂ କେମନ୍ତେ । ୧୮୪ ।
ରଥରେ ପକାବନ୍ତେ ଦେଖିଲେ ଯୁଦ୍ଧେଷ୍ଟି
ଆରେ ଆରେ ଦୁର୍ଦ୍ଧଷ ମୋର ପ୍ରାଣର ଭାଇ ଗୋଟି । ୧୮୫ ।
ଯୁଦ୍ଧେଷ୍ଟି ଡାକ ଦେଲେ ଆରେ ଧାଉଂକନା ଭୀମ
ଦୁର୍ଦ୍ଧଷ ବନ୍ଦୀ ଗଲା ଆମ୍ଭର କସ ଧର୍ମ । ୧୮୬ ।
ସେହ୍ନ ଯେ ସୋଦର ହାଦେ ଜୀବନ ଦାନ ଦେଲା ମୁକୁ
ଆରେ ମୋହୋର ଦେଖନ୍ତେ ଧରି ନେଉଅଛୁ ଦୁର୍ଦ୍ଧଷକୁ । ୧୮୭ ।
ପାଣ୍ଡବଂକ ଥାଟେ ଶୁଭିଲା ଢୋଲ ଧ୍ୱନ -
ଭୂରସବାନ୍ତ ମାର ବୋଲ ଧାଇଂଲେ ସଇନ । ୧୮୮ ।
ସ୍ୱାମୀର ଆଜ୍ଞାଂଏ ଯେ ନବେଶିତ ଶିର
ରଣ ଧନ୍ଦୋଳ ପାଣ୍ଡବ ସେ ଧାଇଂଲ ବୃକୋଦର । ୧୮୯ ।
ଭୀମସେନର ଭୁଲେ ଯେ କୁମାର ଶ୍ରୀଖଣ୍ଡୀ
କୁବେର ସାକ୍ଷେ ସେ ଶ୍ରୀଖଣ୍ଡୀର ରଥ ମଣ୍ଡ । ୧୯୦ ।
ପାଣ୍ଡବ ବଳ ଯଦ୍ଧଂ ଦେଖିଲେ ରଣ ଘୋଟି
ଦୁର୍ଦ୍ଧଷକୁ ଭୂରସବାସ୍ୟେ ନେଇ ଯାଉଛନ୍ତି ଲେଉଟି । ୧୯୧ ।
ରଣେ ସୋହୋଡ ସୁନ୍ଦର ବୃକୋଦର ଥାଠ ମହାନ ଜେନା
ଭୂରସବାଂକର ପଛକଣ୍ଟ ବାଜସ୍ୟେ ଭାର ଭୀମସେନା । ୧୯୨ ।

---

୧୮୨।୨ କୁରୁନାଥର ନନ୍ଦନ ଦେଖି ତେଜ ମହାଜଳା । (ଙ, ଚ, ଛ)

ରେ ରେ କାର ଶବଦ କରି ବୀର ପାଣ୍ଡବ ପଞ୍ଚାଣ
ଭୂରିସର୍ବାଂକର ରଥେ ପିଟିଲା ଗିରିବର ଚୂଡ଼ାଣ । ୧୯୩ ।

ଅନନ୍ତରେ ଗିରିବର ପଦ୍ମଂ ପିଟିଲା ପରଚଣ୍ଡା
ଭୂରିସର୍ବାଂକର ରଥ ଭାଙ୍ଗି ହୋଇଲା ମସୀଗୁଣ୍ଡା । ୧୯୪ ।

ରଥ ଭାଙ୍ଗି ଗଦା ପଡିଲା ଭୂରିସର୍ବାଂକ ଉପରେ
ଅସାଷ୍ଟମ ହୋଇଣ ସେ ପଡଲେ ଭୂମିରେ । ୧୯୫ ।
ପୁଣି ସଚେତ ହୋଇ ଭୂରିସର୍ବାସ୍ୱେ ଆରୋହିଲେ ମତ୍ତନାଗ
ଥାଠ ଭିତରେ ଯାଇଂ ପଶିଲେ ଅତି ବେଗ । ୧୯୬ ।
ତତ୍କ୍ଷଂଣ ଦୁର୍ଦ୍ଧର୍ଷକୁ ରଥରେ ବସାଇ ଶ୍ରୀଖଣ୍ଡୀ
ଶ୍ରୀଭୁଜେ କୁମାର ଚନ୍ଦ୍ର କାନ୍ତି ଯେ ଭୂଷଣ୍ଡୀ । ୧୯୭ ।
ଭୀମ ଦୁର୍ଦ୍ଧର୍ଷ ଯେ ଶ୍ରୀଖଣ୍ଡୀ ତିନ ଯୋଧୀ
ଅର୍ଜୁନ ସନ୍ନିଧେ ଆସି ଶ୍ରୀକୃଷ୍ଣଂକ ପାଦ ବନ୍ଦ । ୧୯୮ ।

---

୧୯୩।୧ "ରେ ରେ କାର ଶବଦ କରି ବୀର ପାଣ୍ଡବ ପଞ୍ଚାଣ" ପାଠ ପରେ
ଥ, ଓ, ନ ରେ ଅଧିକା ପାଠ ।
ଗିରିବର ଗୋଟାସ୍ୱେ ଉପାଡିଣ ଭୀମସେନ
କାଳଚକ୍ର ପ୍ରାସ୍ୱେ ଲୋଚନ ଅଧରେ ଦନ୍ତ ଗୃପି ।
ଭୂରିସର୍ବାଂକ ଉପରେ ଭୀମ ପିଟିଲା ନେଇ କୋପୀ ।

୧୯୭ ଦୁର୍ଦ୍ଧର୍ଷକୁ ରଥେ ନେଇ ବସାଇଲା ଶ୍ରୀଖଣ୍ଡୀ
ଦ୍ୱିନରଥୀ ଏକ ହୋଇ ଦଅନ୍ତି ଘୋର ରଣ୍ଡି ।

୧୯୮।୨ ଯୁଧିଷ୍ଠିର ପଦ୍ମପାଦେ ଦୁର୍ଦ୍ଧର୍ଷ ଯାଇ ବନ୍ଦ । (ଓ, ଥ, ନ, ଧ)

୧୯୮।୨ ଅର୍ଜୁନ ଚରଣେ ଦୁର୍ଦ୍ଧର୍ଷ ଆସି ବନ୍ଦ । (ଜ, ଛ)

୧୯୮।୨ ଭୀମସେନ ଶ୍ରୀଖଣ୍ଡୀ ଦୁର୍ଦ୍ଧର୍ଷ ତିନ ଯୋଧୀ:—ଏହି ପାଦାନ୍ତ ପରେ 'ଘ' ରେ
ଅଧିକା ପାଠ ।
ପ୍ରଣପତ୍ୟ ହୋଇ ସେ ଯୁଧିଷ୍ଠିରଂକ ପାଦ ବନ୍ଦ ।
ଦେଖିଣ ହରଷ ହୋଇଲେ ଧର୍ମ ସୁତେ
ଦୁର୍ଦ୍ଧର୍ଷକୁ କୋଳାଗ୍ରତ କଲେକ ତୁରତେ ।

(ଅବଶିଷ୍ଟ ପର ପୃଷ୍ଠାରେ)

ଆହୋ ଚଇତନ ଭୀଷ୍ମଂକର ଭୁଜେ ଅର୍ଜୁନ କରଇ ଯୁଦ୍ଧ
ଆକାଶ ଘୋଟିଲା ଯେ ଦୁହିଂକର ଶରବନ୍ଧ । ୧୯୯ ।
ଶହସ୍ର ଧାର ବୃଷ୍ଟି ଗହଳ ଧନ୍ଦୋଳ ଜାଣି
ଦିଗ ଅମ୍ବର ନ ଦିଶଇ ଘୋଟିଲାକ ରମ୍ପୂଣୀ । ୨୦୦ ।
ଶହସ୍ର ଶହସ୍ରକେ ପଡ଼ି ହୋଉଛନ୍ତି ପଡ଼ିତାଳ
ଉଠଇ ବହନ ଜାଣି ବଡ଼ବା ଅନଳ । ୨୦୧ ।
ଲାଘବ ଶରେଣ ଅନେକ ବାଣ ବନ୍ଧ
ନାଗଜେ ନାଗଜେ ପଡ଼ିତାଳେ ଦୁଅନ୍ତି ଛନ୍ଦାଛନ୍ଦ ( ସନ୍ଧାସନ୍ଧ ) ।୨୦୨।
ଓଛ ନାଗଜେ ଯଦ୍ଭଂ ନୁଆଇଲେ ଜଣି
ଶତେଧାର ଶହସ୍ରେକ ବନ୍ଧଲେ ଭୀଷ୍ମେ ବେଗେ ଟାଣି । ୨୦୩ ।
ବିଶ୍ଵାମଇଷ ମନ୍ତ୍ରେଣ ନାଗଜ ଆଦ୍ଯାବଳୀ
କୃତାନ୍ତକ ଅନଳ ପ୍ରାଯ୍ଯେ ଶର ହାଦେ ଜଳ । ୨୦୪ ।
ଆନ୍ଥେଷି ଗାଙ୍ଗବେ ନାଗଜ ବନ୍ଧଲେକ ପାର୍ଥିବେ
ଦେବ ଶହସ୍ର ବନ୍ଧଲେଟି ଭୀଷ୍ମେ ସମ୍ଭାଳ ବୋଇଲେ ବାସୁଦେବେ । ୨୦୫ ।
ନାଗପୂର୍ଣଂକ ବଚନେ ପାର୍ଥ ଙ୍ଗମ୍ଭୁର ଶର ଘେନ
ଭୀଷ୍ମଂକର ନାଗଜନ୍ତ ଯେ ଛେଦିଲେ ଫାଲଗୁନ । ୨୦୬ ।
ପୁଣ ଗାଙ୍ଗବେ ଯେ କୁହୁକାଶର ପେଷି
ଘୋଟିଲାକ କୁହୁଡ଼ି ଯେ ଆକାଶ ନ ଦିଶି । ୨୦୭ ।
ଅର୍ଜୁନରଙ୍କୁ ଅଗ୍ରତେ ଯେ ଗୋବିନ୍ଦେ ବୋଇଲେ
ଦେଖ ହୋ ଗାଙ୍ଗବେ ଯେ ଆଜ କପଟ ଯୁଦ୍ଧ କଲେ । ୨୦୮

---

ପୂର୍ବ ପୃଷ୍ଠାର ପାଠାନ୍ତର:—
ବାବୁ ମୋହୋର ଯେ ପ୍ରାଣର ବଲ୍ଲଭ ଗୋଟି ଭାଇ
ଗୁଡ଼ିଲୁ କଢ଼ିବୋବେ ମୋହୋର ପାଦେ ଧ୍ୟାଯି ।
ତୋହୋର ବନ୍ଧ ଶୁଣି ମୋହୋର ମନେ ତ୍ରାସ
ଫିଟିଲ ବିପଦ ମୁଂ ପାଇଲ ସାହାସ ।
ଶୁଣ ହୋ ଚଇତନ ବୋଲନ୍ତି ମନୁଷ୍ୟେ
ଭୀଷ୍ମ ଅର୍ଜୁନଂକର ସମର ଘୋର ହୋଯ୍ଯେ ।

ନାରାୟଣଙ୍କ ବଚନେ ହୃଷିତ ସବ୍ୟସାଚୀ
ସୂର୍ଯ୍ୟାସ୍ତ୍ରେକ ନାରାଜ ଅର୍ଜୁନ ଆମନ୍ତ୍ରି । ୨୦୯ ।
ଆଦିତ୍ୟଙ୍କର ତେଜ ଯହୁଂ ଆକାଶେଣ ଘୋଟି
କୁହୁଡର ଦ୍ରୋହନା ଯେ ଗଲକ ହାଦେ ଫାଟି । ୨୧୦ ।
ପୁଣିହିଂ ଗାଙ୍ଗେବେ ଯେ ପନ୍ନଗା ଶର ପେଷି
ଗର୍ଜିଣ ପନଙ୍ଗ ଯେ ଫେରୁ ଟେକ ଆସି । ୨୧୧ ।
ସର୍ପନ୍ତ ଦେଖିଣ ଯେ ଅର୍ଜୁନ ମହାବଳୀ
ଖଗବର ନାରାଜ ବିନ୍ଧିଲା ବୀର ପାର୍ଥ ତୋଳି । ୨୧୨ ।
ସମରେ ତେଜ ଯହୁଂ ବିକାଶିଲା ବଇନେୟ
ଦେଖିଣ ପନ୍ନଗେ ଯେ ହୋଇଲେ ମୃତ୍ୟୁଗତ । ୨୧୩ ।
ବାଣ ଜ୍ୱାଳାବଳୀ ଜାଣି ବରଧାର କାଳ
ତିସିରା ପହର ଆସି ହୋଇଲାକ ବେଳ । ୨୧୪ ।
ଦିନକର ସମର ସମ୍ପୂର୍ଣ୍ଣର କାଳେ
ପଶ୍ଚିମେ ତେଜ ବିକାଶିଲେ ଆଦିତ୍ୟ ଦିଗପାଳେ । ୨୧୫ ।
ଦିନକର ସମର ସରି ଅନ୍ତରକ ଦିନ ଚଉବଂଶ ଦଣ୍ଡ
ରଣରଙ୍ଗେ ତେଜ କୁଗୁଣ ଯେ ଆକାଶେ ମାରତଣ୍ଡ । ୨୧୬ ।
ପାଣ୍ଡବନ୍ତ ପିଠି ଖର ଦିନର ଅଧ ପର୍ଯ୍ୟନ୍ତେ
ଲାଗିଲା ମୁଖ ଖର ତେଜ ପଶ୍ଚିମକୁ ଲେଉଟନ୍ତେ । ୨୧୭ ।
ଅଦ୍ଧକ୍ଷଣେ ବାଣ ହୋ ବର୍ଷନ୍ତେଣ ବେନି
ଝାଳେଣ ଭ୍ରୁ ପଣ୍ଡ୍ର ଯେ ହୋଇଲା ଫାଲଗୁନ । ୨୧୮ ।
ଆଦିତ୍ୟଙ୍କର ତେଜ, ଶରସ୍ତ୍ର ଜ୍ୱାଳାବଳୀ
ଅର୍ଜୁନର କପାଳୁଂ ଶ୍ରମ ଝାଳ ଗଳା । ୨୧୯ ।
ଗୃର ଅଶ୍ୱଙ୍କୁ ଯେ ଗୃଚଶତେ ବାଣ
ଅର୍ଜୁନ ଉପରକୁ ବିନ୍ଧିଲେ ଭୀଷ୍ମ ମହାରଣୀ । ୨୨୦ ।
ନନ୍ଦିଘୋଷ ରଥ ଧ୍ୱଜେ ବଜସ୍ତେ ହନୁମନ୍ତ
ତାହାଙ୍କ ସହସ୍ରେ ବାଣ ବିନ୍ଧିଲେ ଗଙ୍ଗାସୁତ । ୨୨୧ ।

---

୨୧୩।୨ ଦେଖିଣ ପନ୍ନଗମାନେ ପଳାଇଲେ ଛନ୍ନଛନ୍ଦ । (ଗ, ଙ, ଡ)

ରଥ ଗୃଦ୍ଧ୍ରଖମ୍ଭକୁ ଗୃଢ଼ ସହସ୍ର ଶର
ବେଢ଼ି ସହସ୍ର ବାନ୍ଧିଲେ ଯେ ଅର୍ଜ୍ଜୁନ ଉପର । ୨୨୨ ।
ଲେଉଟିଣ ପାର୍ଥକୁ ପ୍ରଭୁବାକ୍ୟ କହନ୍ତ ବନମାଳୀ
ଅସମ୍ଭାଳ ହେଲା ବାବୁ ପାରିବୃଟି କି ସମ୍ଭାଳି । ୨୨୩ ।
ସବୁଂକୁହିଂ ଉତ୍ପ୍ରୋଧ ଶ୍ରୁଣିଲା ଶାପୁନନ୍ଦନ
ବେଗେଣ ପାରୁ ଯେବେ ନିବାର କର ହୋ ଫାଲଗୁନ । ୨୨୪ ।
ଝାଳେଣ ଗଳିତ ଯେ ପଡିଲା ବେନି ଆଖି
ଅବଲୋକନେ ଗୃହିଂ ନମ ନୁଆରଇ ଦେଖି । ୨୨୫ ।
ଅର୍ଜ୍ଜୁନ ବୋଇଲା ନାଥ କମ୍ପାଇ କର ଖ୍ରିତି
ଯେହିକ୍ଷଣି ଖ୍ରିଷ୍ଟୁଂକର ନାରାଜ କାଟିବ ବିଂକୋଟି । ୨୨୬ ।
ଅପାର ତରଣି ଯେବେ ହୋଇବ ଯେୂକ ଘଣି
କାଂଚନ ଅନଳେ ତାହା ପାରଇଟି ଧ୍ୱଂସି । ୨୨୭ ।
ଅହିବ୍ରତେକ ନାରାଜ ଅର୍ଜ୍ଜୁନ ବାନ୍ଧିଲା
କାଧଣୀ ଅଙ୍ଗୁଷ୍ଠିରେ ଲଲାଟ ପୋଛିଦେଲା । ୨୨୮ ।
ଯେୂତେକ ଛିଦ୍ର ପାଇ ଖ୍ରିଷ୍ଟେ ଶର ସନ୍ଧି
ଧାତକାରେ ପାଡଲେ ସେ ଦଶ ସହସ୍ର ଯୋଧୀ । ୨୨୯ ।
ସାଂଗ୍ରାମ ରହୁ ବୋଲି କଲେକ ଶଙ୍ଖଧ୍ୱନି
ଜୟ କର ବାହୁଡଲେ କଉରେବ ସଇନି । ୨୩୦ ।
ଅର୍ଜ୍ଜୁନ ବନୋପ୍ରୀ କରେ ପୁଚ୍ଛଇ ଶ୍ରୀକୃଷ୍ଣେ
ଜୟ ଶଙ୍ଖ ଶବଦ କରେ ବାହୁଡଲେ କୁରୁ ସଇନ୍ୟେ । ୨୩୧ ।
ଗୋବିନ୍ଦେ ବୋଇଲେ ବାମ ଡାହାଣେ ଗୃହିଂ ପାର୍ଥ
ଖ୍ରିଷ୍ଟେ ପାଡଲେ ତୋହୋର ଦଶ ସହସ୍ର ରଥ । ୨୩୨ ।
ରଥରୁ ବାହାର ହୋଇ ଗୃହଇଂ କଶର୍ଯ୍ୟ
ରଥ ଗଜ ଅଶ୍ୱ ଯୋଦ୍ଧାଯେ ବେନି ଖଣ୍ଡ ହୋଇ ପଡଛନ୍ତ ମହୀଲୋଟି ।
ନାରାୟଣ ମୁଖ ଗୃହିଂ ଅର୍ଜ୍ଜୁନ କଲା ପୁଚ୍ଛା
ନଚେୂଂ ପାଣ୍ଡବ ବଳ ଦେବ ମୁହିଂନ୍ତ ଆଜ ରକ୍ଷା । ୨୩୪ ।
ଲଲାଟୂଂ ଘର୍ମ ଯହିଂ ପଶିଲା ନୟନେ
ଅହିବ୍ରତେକ ଶର ପେଷିଲେ ଲଲାଟ ପୋଛୁଂ ବହନେ । ୨୩୫ ।

ଯେମନ୍ତେକ ଛିଦ୍ର ମୋହୋର ଭୀଷ୍ମଦେବ ପାଇଲା
ଦଶ ସହସ୍ର ଯୋଦ୍ଧା ପାଡ଼ି ବେଗେ ଗଲା । ୨୩୬ ।
ଯେମନ୍ତେକ ଦ୍ୱନ୍ଦ ହରି ଆରମ୍ଭିଲୁ ଅନମିତେ
ଆମ୍ଭନ୍ତ ରକ୍ଷା ହରି କରିବୁ କେମନ୍ତେ । ୨୩୭ ।
କଉରବ ସଇନ ଯେ ଅନେକ ଆନନ୍ଦେ
ହସ୍ତିନାରେ ଯାଇଂ ପଶନ୍ତି ଅନେକ ସାନନ୍ଦେ । ୨୩୮ ।
ଯଶ କଳସ ପାଡ଼ାଙ୍ଗ ବାରେ ଉଡ଼ାଇଲେ ରଥେ
ପ୍ରତଗ୍ୟାଂ ସାର୍ଥୁକ କଲେ ଶାପୂନ୍ତନୁ ସୁତେ । ୨୩୯ ।
ବିଷାଦ ପାଣ୍ଡବ ବଳ ସଇନ ସମସ୍ତେ
ପାଦାନ୍ତ ରଥୀ ଯୋଦ୍ଧା ରାଜାର ସହିତେ । ୨୪୦ ।
ବିକଳ ଫାଲଗୁନ ଯୋଦ୍ଧାଂକର କଷ୍ଟ ଦେଖି
ଅରୁଣ ଉତ୍କ୍ଷୋଳ ଜାଣି ବହଇ ବେନି ଆଖି । ୨୪୧ ।
ଅର୍ଜୁନ ବୋଇଲା ହରି ମରଣ ନୋହିଲା ଯେହ୍ନାଂକର ଆଗେ
ମୋହୋର ପାଇଂ ପଡ଼ିଲେ ଯେହ୍ନା ମୁଂ ଦେଖିବି କେଉଂ ବାଗେ ।
ମଦ୍ରର ଦେଶର ରାଜା ଭୀମ ଚକ୍ରବ୍ରିଷ୍ଟି
ସେ ରାଜାର ଭୁଲେ ପଡ଼ିଲେ ଦଶ ସସ୍ର ରଥୀ । ୨୪୩ ।
ଯୋଜନେକ ଆଯୁତନେ ପଡ଼ିଲେ ପାଦାନ୍ତ
ରୋବଇ ଫାଲଗୁନ ଦେଖିଣ ତାହାଂକର ଶାସ୍ତି । ୨୪୪ ।
ଅନେକ ବଇକୁଲ୍ୟ ଯେ ହୋଇଲେ ଧନୁର୍ଜୟେ
ଆବର ଜୀବନ ମୋର କସ ଯେ ଉପାୟେ । ୨୪୫ ।
ଜୀବନ୍ତୁ ମରଣ ଯେ ଅଟଇ ବଡ଼ ସୁଖ
ଜଇନ୍ତା କଟକେ ଯାଇଂ ରହିଂମା କାହା ମୁଖ । ୨୪୬ ।
ଜଗତେ ଶୁଭିଲା ପାଣ୍ଡବେ ଜଗୁଜିତା
ରାଜସୂୀ ଯାଗେ ଦେଖିଲେ ସମ୍ପଦ ବଳବନ୍ତା । ୨୪୭ ।
ସେହି ସମ୍ପଦ ପ୍ରାପ୍ୟେ ବୁଝି ଅଇଲେ ଆଶ କରି
ଯୁଦ୍ଧେ ପଡ଼ିଲେ ଆଜ ଅଦୋଷେ ହୋଇଲେ ଅପହାସ୍ତି । ୨୪୮ ।

---

୨୪୬।୧ ଜୀବନ୍ତୁ—ବଞ୍ଚିବା ଅପେକ୍ଷା ।

ଆମ୍ଭର ନିମନ୍ତେ ଅଇଲେ ସମର କରିବେ
ବନ୍ଧୁତା ଲକ୍ଷଣ ଥିବ ଶତ୍ରୁନ୍ତ ମାରିବେ । ୨୪୯ ।
ଅନେକ ବଇକୁଲ୍ୟ ହୋଇ ଶୋବଇ ବୀର ପାଥ
ଅର୍ଜୁନକୁ ସମ୍ବୋଧନ୍ତି ପ୍ରଭୁ ଜଗନ୍ନାଥ । ୨୫୦ ।
ଆହୋ ରାଗ ସନ୍ଧି ନୁଆଚରଣ ଆରମ୍ଭିଲୁ ଯୁଦ୍ଧ
ଯେତେବେଳକୁ ତୁ କାହିଂ କରୁ କ୍ରୋଧ । ୨୫୧ ।
ସମ୍ପଦ ବିପଦ ଯେ ଆପଣାର କଲା କର୍ମ
ଜିଣି କ ହାର କ ଯେ କ୍ଷତ୍ରୀଂକର ଧର୍ମ । ୨୫୨ ।
ଓପ୍ରୋଧି ଯୋଦ୍ଧାମାନେ ପଡିଲେ ପୁଣ ଆଜ
ସାଂଗ୍ରାମ ପ୍ରମାଦ ଭୂମି ଆପଣେ ହୋଇ ପ୍ରାଣତ୍ୟାଜ । ୨୫୩ ।
ଜାତ ହେଲେ ଦେବତା ହୋଇଲେ ଅବଶ୍ୟ ହୋଇ ମୃତ୍ୟୁ
ଅବଶ୍ୟରେ ଯମ ନାଶ ନ କରଇ ଜନଜନ୍ତୁ । ୨୫୪ ।
ମହା ଯାଗଥାନ ଯେ ଅନେକ ପୁଣ୍ୟ ପାଇ
ଯେ ମହାଭାରଥ ଯୁଦ୍ଧେ ପଡିଲେ ବଇକୁଣ୍ଠେ ଠାବ ହୋଇ । ୨୫୫ ।
ଆକାଶକୁ ଡକ୍ଳେକର ହୋର ଯେତେ ସଇନ ପଡିଲେ
ଶ୍ରୀକୃଷ୍ଣଂକ ବଚନେ ପାର୍ଥ ଶୂନ୍ୟକୁ ଚାହିଂଲେ । ୨୫୬ ।
ଦେଖିଲେ ସମରେ ପଡିଲେ ଯେତେ ଯୋଦ୍ଧାମାନେ
ସମସ୍ତେ ଆରୋହିଅଛନ୍ତି ପୁଷ୍ପକ ବିମାନେ । ୨୫୭ ।
ଅନେକ ରତ୍ନ ଯେ ଶଖରେଣ ହୋଇଛନ୍ତି ମଣ୍ଡି
ଆଗେ ବୀରତୂର କଂସାଳ ମର୍ଦ୍ଦଳ ବାଜଇ ଦାଉଂଣ୍ଡି । ୨୫୮ ।
ଅନେକ ପାଟଛନ୍ଦ ହୋଉଛନ୍ତି ପୁଷ୍ପ ବୃଷ୍ଟି
ଓହୋବଲ ଯେତେକ ପଡିଲେ ଦେଖିଲା କିରୀଟୀ । ୨୫୯ ।
ଅର୍ଜୁନ ପ୍ରଣପତ୍ୟ ଶ୍ରୀବାସୁଦେବଂକ ଚରଣ ତଳେ
ବିଷାଦ କ୍ରୋଧ ପାର୍ଥ ଛାଡିଲା ତେତେବେଳେ । ୨୬୦ ।

---

୨୫୩ { ବିଅର୍ଥେ ଯୋଦ୍ଧାଯେ ପଡିଲେ ରଣେ ଆଜ
ଆପଣେ ସମରେ ଯେ ହୋଇ ପ୍ରାଣତ୍ୟାଜ । ( ଓ, ଥ, ନ)

୨୫୧।୨ କ୍ରୋଧ—ଶୋକ ।    ୨୫୬।୧ ଡକ୍ଳେକର—ତଳପେ କର ।

ତୁ ଦେବ ଶଙ୍ଖଚକ୍ର ଧାରଣ ମଧୁହାଶ୍ର
ଶପୂଳ ଜନ ଚନ୍ତାମଣି ଦୁଖୀ ଜନ ନସ୍ତାଶ୍ର । ୨୬୧ ।
ଯେ୍ବ ତୋହୋର ଶ୍ରୀମୁଖ ଗୋଟି ଦେଖିଣ ଅଦ୍ୟାପି
ପାବନ୍ତ ପରମ ଗତ୍ତ ତରନ୍ତ ସର୍ବ ପାପୀ । ୨୬୨ ।
ଗୃଣ୍ଡାଳ ତମ ଯେ ଥିଲେ ବାଦ୍ୟକାର
ସବୁନ୍ତ ଦେଖିଲ ମୁହିଂ ଅକ୍ଷୟେ ସ୍ୱର୍ଗପୁର । ୨୬୩ ।
ପାର୍ଥିକ ଜୀବନ ମୋର ମୁଂ ଦେଖିଲ ଶ୍ରୀପତ୍ତ
ଜୀଇବାଉଂ ମରଣ ଯେ ସାଧୁ ପରମ ଗତ୍ତ । ୨୬୪ ।
ଅର୍ଜୁନ ଅନେକ ଯେ କ୍ରୋଧ କରୁଥିଲ
ଜଗୁଜନ ମୋହନ ନାଥ ତା ମନ୍ଦୁ ଭ୍ରାନ୍ତ ଛଡାଇଲ । ୨୬୫ ।
ଜୟ ତୁ ହୃଷୀକେଶ ଜଗତ ଜନ ଚନ୍ତା
ଜୟ ତୁ ଯୋଗେଶ୍ୱର ନାଥ ପରମ ଗତ୍ତ ଦ୍ୟନ୍ତା । ୨୬୬ ।
ନଶ୍ୱର ପୀତ କୁଂକୁମ ବର୍ଣ୍ଣେ ତନ ମୂର୍ତ୍ତି
ମହା ନରକ ଉଦ୍ଧାରଣ ପ୍ରସନ୍ନେ ପରମ ଗତ୍ତ । ୨୬୭ ।
ସର୍ବଜନ ଚନ୍ତାମଣି ଚନ୍ତଇ ମମ ହୃଦେ
ଯମଦଣ୍ଡ ଖଣ୍ଡଣ ନାଥ ତୋହୋର ପ୍ରସାଦେ । ୨୬୮ ।
ସ୍ୱାମୀ ଅସଙ୍ଖ୍ୟ ମହାଭାରଥ ଯେ ମୁନଜନ ବାକ୍ୟେ
ଦେବେ ଅଗୋଚର ଯାହା ସଞ୍ଚତ କାହାର ଶକ୍ୟେ । ୨୬୯ ।
ଶ୍ରୀକୃଷ୍ଣ ପ୍ରସନ୍ନେ ମୋତେ ବର ଦଲେ ଅଭୟେ ପିଙ୍ଗଳାକ୍ଷୀ
ଗିତକାର ପ୍ରସନ୍ନେ ମୁଂ ଲେଖନ କରୁଅଛୁ । ୨୭୦ ।
ନୋହୋଇ ପଣ୍ଡିତ ମୁଂ ନ ପଢିଲ ବାଲକାଳେ
ହୃଦଗତେ ବିଶ୍ରାମିଲେ ମୋର ଶ୍ରୀଚଣ୍ଡୀ ସାରଳେ । ୨୭୧ ।
ନ ପଢି ପଣ୍ଡିତ ମୁହିଂ ବିଦ୍ୟା ଶାସ୍ତ୍ର ପ୍ରାପତ ଅଦଭୂତେ
ଶୂଦ୍ରମୁନ ସାରଳ ଦାସ ଶ୍ରୀଚଣ୍ଡୀ ହୃଦେ ଚନ୍ତେ । ୨୭୨—୨୨୩୧ ।



୨୬୧।୨ ସପୂଳ ଜନ ଚନ୍ତାମଣି ପ୍ରତ୍ୟକ୍ଷେ ଅବତରି । ( ଥ, ନ, ଡ)
୨୬୪।୨ ଜୀବର ସୁକୃତ ମୋର ସାଧୁ ପରମ ଗତି । (ଡ, ଥ, ନ)
୨୭୧।୧ ନୋହଇ ପଣ୍ଡିତ ମୁଂ ନ ପଢ଼ିଲ ଧୀର ମେଳେ । ( ଝ, ଟ, ଢ)

## ଭୀଷ୍ମଙ୍କ ନିକଟରେ ପୁରୋହିତଙ୍କର ଅନ୍ନଦାନ କଥା ବର୍ଣ୍ଣନ

ବଇବସୁତ ମନୁ ଆଗେ ବଦସୂନ୍ତ ଅଗସ୍ତି
ଅର୍ଜ୍ଜୁନକୁ ସମାର୍ଜନା କରି ଅସନ୍ତ ଶ୍ରୀପତି । ୧ ।
ବିଜୟେ ଧର୍ମ ନନ୍ଦନ ଇନ୍ଦ୍ରପ୍ରସ୍ଥରେ
ବିରସେ ପଶିଲେ ଯାଇଂ ଯେ ଯାହା ମନ୍ଦିରେ । ୨ ।
ସ୍ନାହାନ ନିତ୍ୟକର୍ମ ସାରଣ ଦେବ ପୂଜା
ପିତୃ ଆହ୍ୱାନକ ସାରି ମୁଣୋହିରେ ବିଜେ ଦେବରାଜା । ୩ ।
ଶୁଣ ହୋ ବଇବସୁତ ମନୁ କଣ୍ଠରେବ ସଇନ
ସାଧୁ ସାଧୁ ଭୀଷ୍ମେ ବୋଲି ଶୁଭିଲ ମୁଖ ଧୂନି । ୪ ।
ଅନେକ ଅର୍ଘ୍ୟ ବନ୍ଦାବନ୍ତି ଭୀଷ୍ମଂକର ମାଥେ
ଲକ୍ଷେ ରତ୍ନ ଧେନ ସ୍ନାହାନ କରାଇଲେ କୁରୁନାଥେ । ୫ ।
ଯେମନ୍ତେ ସମର କରନ୍ତେ ଦଶଦିନ ନିତି
ପାଣ୍ଡବ ସଇନ କାହିଂ ଆବରି ଥିବେ ବ୍ରତି । ୬ ।
ସ୍ନାହାନ ନିତ୍ୟ କର୍ମ ସାରଣ ନିକାଳ
ମୁଣୋହିରେ ବିଜେ କଲେ ରାଜା ସୂର୍ଯ୍ୟ ବେଳ । ୭ ।
ଦାନେଣ ଦାତବ୍ୟ ସେ ଶାନ୍ତେନୁନ୍ଦନୁର ତନଇ
ହତ୍ୟା ଦୋଷ ବିମୋଚନ ନିମନ୍ତେ ଧର୍ମ ପ୍ରୋହିତ ରାଇଣ ଭଲଇ । ୮ ।
ଭୀଷ୍ମେ ବୋଇଲେ ପ୍ରୋହିତେ ଆମ୍ଭେ ଅନେକ କଲୁ ହତ୍ୟା
ଯେଥକୁ ମନେ ମୋର ଲଗିଲା ଗରୁ ଚିନ୍ତା । ୯ ।
ଧର୍ମ ପୁରୋହିତେ ବୋଇଲେ ଭୀଷ୍ମ ଅନ୍ନଦାନ ଦିଲେ
ହତ୍ୟାଦି ବିମୋଚନ ହୋଇବ ଶ୍ରୋ ଜନ ସୁସ୍ଥ ହେଲେ । ୧୦ ।
ଭୀଷ୍ମେ ବୋଇଲେ ଯେମନ୍ତ ଅଶ୍ଳିଷ୍ଟିକ ପୂର୍ବେ
ତବ ମୁଖଂ ଶୁଣିଲେ ସଂପ୍ରତେ ଯିବ ଭଲେ ଯେବେ । ୧୧ ।

---

୧୧।୨ "ତବ ମୁଖଂ ଶୁଣିଲେ ସପ୍ରତେ ଯିବ ଭଲେ ଯେବେ" । ପାଠ ପରେ
'ଘ' ରେ ଅଧିକ ପାଠ ।
କେଉଂ ଦାନ ଦିଲେ କେବଣ ପୁଣ୍ୟ ପାଇ
ଯେ କଥା ଧର୍ମ ପ୍ରୋହିତେ କହ ରୁ ବୁଝାଇ ।

ପୂର୍ବେଣ କେବଣ ରାଜା ଦେଇଅଛନ୍ତି ଅନ୍ନ ଦାନ
ପାପ କ୍ଷୟେ କରି କି ଦମିଛନ୍ତି ପୁଣ୍ୟ ଥାନ । ୧୨ ।
ଧର୍ମ ପ୍ରୋହ୍ନତେ ବୋଇଲେ ଶୁଣ ପୂର୍ବର ଯେ କଥା
ସିଦ୍ଧଋଦେକ ବୋଲି ସତ୍ୟ ଯୁଗର ବାରତା । ୧୩ ।
ପୁରରବା ବଂଶେ ଶ୍ୱେତକଳ୍ପ ବୋଲି ରାଯ୍ୟେ
ଦାନେଣ ଶୂରବନ୍ତ ସେ ବରଲକ୍ଷଣ ସ୍ୱଯ୍ୟେଂ । ୧୪ ।
ଅନେକ ଯାଗ ଯଜ୍ଞ୍ୟଂ କଲା ମହୀପତ୍ୟେ
ଗଜ ଅଶ୍ୱ କଣକ ଦାନ ଦଲାକ ଅପ୍ରମିତେ । ୧୫ ।
ଜଳଦାନ ଭୂମିଦାନ ଦଲା ଓତ୍ଥୋମୁଖୀ (ଉଭୟ ମୁଖୀ)
ତୁଳା ପୁରୁଷ ଗଜଘଣ୍ଟ ଶକଟ ଦାନ ବପୁଲ ଲକ୍ଷ୍ମୀ । ୧୬ ।
ସେ ବଧି ଲକ୍ଷେକ ଦାନ ଦଲାକ ସାଗରେ
ସମସ୍ତ ଦାନ ଦଲା ଶ୍ୱେତକଳ୍ପ ମହୀଧରେ । ୧୭ ।
ସୁଚକ୍ରେ ଦାନ ଦଲା ସପତ ଦ୍ୱୀପା ମହୀ
ବ୍ରାହ୍ମଣେ ଭୋଜନ ସେ ନ ଦଲା କଦାଚିହିଂ । ୧୮ ।
ସତ୍ୟଯୁଗ ସାତ ଲକ୍ଷ ନଉ ସହସ୍ର ବରଷ ବ୍ରତ
କାଳେଣ ପ୍ରାଣ ତ୍ୟାଜ ହୋଇଲା ଶ୍ୱେତକଳ୍ପ ନୃପତ । ୧୯ ।
ବଗୃର ବୋଇଲେ ରାଜାକୁ ଯମ ଧର୍ମ ପୁରାଣେ
ନାସେଣ ପାଶକୁ କେହ୍ନ ନ ଗଲେ ଯମଗଣେ । ୨୦ ।

---

ପୂର୍ବ ପ୍ରସ୍ତାର ପାଠାନ୍ତର:—
ଖୀଷ୍ମଂକର ବଚନେ କହନ୍ତ ପ୍ରୋହ୍ନତେ
ସାବଧାନେ ଶୁଣ ତୁ ହୋ କହଇ ମୁହିଂ ତୋତେ । (ଘ)

୧୮ { ଭଣ୍ଡାର ଯାକ ଦାନ ଦଲା ଶ୍ୱେତକଳପ ରାଜନ
ବ୍ରାହ୍ମଣେ ଭୋଜନ ସେ ନ ଦଲା ଅନ୍ନଦାନ । ( ଙ, ଅ, ଔ, ଚ, ଣ)

୨୦।୨ ତ୍ରାସେଣ ପାଶକୁ କେହ୍ନ ନ ଗଲେ ଯମଗଣେ । ପାଠ ପରେ 'ଛ' ପୋଥିରେ ଅଧିକା ପାଠ ।

ଦାନ ଅନରୂପେ କଲେକ ସନମାନ
ଦଦ୍ୟ ଆସନେ ବସାଇଲେ ପ୍ରାସାଦେ ଅଷ୍ଟରତ୍ନ ।
ଶରୀରେ ଆଭରଣ କଲେ ଅନେକ ରତ୍ନ କୋଷ
ପଲ୍ୟଂକେ ସୁପାଟ ଚନ୍ଦ୍ରାତପ ଝୀନବାସ ।

ଆସ୍ଥାନେ ବସାଇଲେ ନେଇ ଯମ ଧର୍ମ ଲୋକେ
ଅନେକ ରତ୍ନ ଭୂଷଣ କଲେ ବୃନ୍ଦାଅର୍କେ । ୨୧ ।
କ୍ଷୁଧାୟେ ଦଗଧ ଯେ ହୋଇଲା ନୃପମଣି
ସ୍ୱର୍ଗେଣ ନରଇନ୍ଦ୍ର ଯେ ଲୋଡଇ ଅନ୍ନ ପାଣି । ୨୨ ।
ଅନେକ ବଳେ କଲେ ବଧାତା କୁଶପାଣି
ତାହାଂକୁ ବକଲେ ଯେ କହଇ ନୃପମଣି । ୨୩ ।
ହେ ପିତାମହ ମୋର କ୍ଷୁଧାୟେ ଶରୀର ଆକୁଳ
ଯେଥେଂ କମ୍ପାଇଂ ମୋତେ ନ ମିଳଇ ଅନ୍ନଜଳ । ୨୪ ।
ଯେ ରତ୍ନ ଆଭରଣ ହୋଇଲା ମୋତେ ବଷ
ଯେଥକଇଂ କାରଣ ମୋତେ କର ଜଗତର ଈଶ । ୨୫ ।
ପିତାମହ ବୋଇଲେ ତୁ ଯେ ନ ଦଲୁ ଅନ୍ନ ଦାନ
ଦଲେ ସେ ପାଇ ଯେ କଥା ଶାସ୍ତ୍ର ବଧାନ । ୨୬ ।
ଆଗ୍ୟାଂ ହୋଇଲା ଯେବେ ଲାଗିଲା ବଡ କ୍ଷୁଧା
ଅନ୍ନଦାନ ଦେବାକୁ ଯେ ମନେ ନ କଲୁ ଶ୍ରଧା । ୨୭ ।
ପିଣ୍ଡ ଯେ ଦହିଲେ ତୋର ଶମଶାନ ଭୂମି
ସେ ଧୂଳ ପାଉଂଶେ ତୋହୋର ପ୍ରତିମା କଲେ ଆଣି । ୨୮ ।
ସେ ମୃତ୍ତୁପିଣ୍ଡ ପିତୁଳର ଯେତେକ ମାଟି ଯେ ମାଂସ
ତାହା ଭକ୍ଷଣ ଥିଲେ ତୋର ପିଣ୍ଡ ପ୍ରାଣ ହୋଇବ ତୋଷ । ୨୯ ।
ଆହୋ ପିତାମହର ବଚନେ ସେ ଶ୍ୱେତକଲ୍ପ ମହାରାୟେ
ସେ ପିତୁଳ ମାଟି ମାଂସ୍ୟେ ଭକ୍ଷି ନିପୁଷ୍ଟ କରଇ ତାର କାୟେ ।୩୦।
ଯେ ବଧିମନେ ଶତେ ବରଷ ପର୍ଯନ୍ତେ
ତାହା ଭକ୍ଷଣ ସେ ଯେ କରୁଥାଇ ଅନୁବ୍ରତେ । ୩୧ ।

ପୂର୍ବ ପୃଷ୍ଠାର ପାଠାନ୍ତର:—
ଯାହା ଦାନ ଦେଇଥିଲା ଶ୍ୱେତକଲ୍ପ ରାୟେ
ଶତେଗୁଣ ସ୍ୱର୍ଗ ଭୋଗ ସେ ଠାବରେ ପାୟେ ।
କାହିଂ ରତ୍ନ କୁଚ୍ଛ ଅନେକ ସମ୍ପଦ
ଯେବଇ ଲେଶଇ ନ ମିଳଇ ଅନ୍ନ ଖାଇବ ।
୨୬।୧ ଯମଧର୍ମ ବୋଇଲେ ତୁ ଯେ ଦେଇ ନାହିଂ ଅନ୍ନଦାନ । ଓ, ଝ ନ
୨୭।୨ ନ ଦଲୁ ଅନ୍ନଦାନ ଭକ୍ତିରେ କଲୁ ଶ୍ରଦ୍ଧା । [ ଓ, ଥ, ନ]

ଆହୋ ଶ୍ୱେତ୍‌ ଧନୁ ଶୁକ୍ଳ ପକ୍ଷ ପଉର୍ଣ୍ଣମୀର ଦିନ
ଭୃଗୁବାର ପୁଷ୍ୟା ନକ୍ଷତ୍ର ବିଦ୍ୟମାନ । ୩୨ ।
ବାଳବ ନାମେ କରଣ ବ୍ରହ୍ମ ନାମେ ଯୋଗ
ପିତାମହ ବିଜେ କଲେ ଯାଇଂଣ ମଧ୍ୟ ସ୍ୱର୍ଗ । ୩୩ ।

ପିତାମହକଇଂ ଦେଖି ଶ୍ୱେତକଲ୍ପ ପାଡ଼ିଲେ ବୋବ
ହେ ପିତାମହ କେମନ୍ତେ ମୁଂ କାରଣ ପାଇବି । ୩୪ ।
ପିତାମହ ବୋଇଲେ ସତ୍ୟଯୁଗେ ଅଗସ୍ତି ବୋଲି ଆମ୍ଭର ହାଦେ ଶିଷି
ସେ ତୋତେ ଭେଟିଲେ ମୁକତି ଗତି ପାଅସି । ୩୫ ।

ତ୍ରେତୟା ଯୁଗ ଗଲା ଦ୍ୱାପରହିଂ ଛୁଟିଲା
କଳିଯୁଗ ଯାଇଂ ସତ୍ୟ ଯୁଗ ପ୍ରବେଶ ହୋଇଲା । ୩୬ ।
ସତ୍ୟଯୁଗ ଗୃହଲକ୍ଷ ଅଠାଶି ସହସ୍ର ବର୍ଷେ
ମକର ମାସ ଶୁକଲ ପକ୍ଷ ପଞ୍ଚମୀ ଦିବସେ । ୩୭ ।

ଆଦିତ୍ୟ ବାର ଉତ୍ତର ଭଦ୍ର ନକ୍ଷତ୍ର ବସେ
ଶିବ ନାମେ କରଣ ସାଧ୍ୟ ନାମେ ଯୋଗ ଯେ ଟଣିତା । ୩୮ ।
ସେଦିନ ଅଗସ୍ତି ବିଜେ ଆକାଶ ଗଙ୍ଗା ସ୍ନାହାନେ
ହରିବ୍ରହ୍ମ ଦେଶେ ବାହ୍ମଜ୍ୟ ଶମଶାନେ । ୩୯ ।

ଦଣ୍ଡ କମଣ୍ଡଳୁ ମୁନି କକ୍ଷା କଉପୁନେ୍ୟ
ଚଳନ୍ତି ମହାମୁନି ନିତ୍ୟକର୍ମ ବିଧାନେ
ମୃତ୍ତୁ ଶମଶାନେ ମିଳିଲେ ମହାମୁନେ୍ୟ । ୪୦ ।
ଦେଖିଲେ ଶମଶାନେ ଶ୍ୱେତକଲ୍ପ ରାଜାର ଅବସ୍ଥା
ମୃତ୍ତିକା ପିଣ୍ଡୁଳ ଯେ ଆହାରେଣ ଶକତା । ୪୧ ।
ଅଗସ୍ତି ବୋଇଲେ ମହାମୁ ମୃତ୍ତିକା ପିଣ୍ଡୁଳ କମ୍ପେ ଭକ୍ଷ୍
ଅମୃତ ତେଜ୍ୟା କରି ସେହିବା କନିମି କହୁ । ୪୨ ।

କିସ କାରଣେ ତୋହାର ହେ ପାପ ପ୍ରକୃତି
ତୋହୋର ନାମ କିସ ବୋଲନ୍ତି ମହାପତି । ୪୩ ।
ଅଗସ୍ତିଂକ ବଚନେ ସେ ବୋଲଇ ବଚନ
ମୁହିଂ ସେ ଶ୍ୱେତକଲ୍ପ ଶୁଣ ହେ ମହାମୁନ୍ୟ । ୪୪ ।

ଅନେକ ଯାଗଯଜ୍ଞ କଲି ମୁହିଂ ଦାନ
ବ୍ରାହ୍ମଣେ ଅନ୍ନଦାନ ନ ଦେଲି ଭୋଜନ । ୪୫ ।
ସମସ୍ତେ କେ ପ୍ରାଣତ୍ୟାଗ ହୋଇଲି ଯେତେବେଳେ
ଅନ୍ନକଷ୍ଟ ପାଇଲି ମୁଂ ଗଗନ ମଣ୍ଡଳେ । ୪୬ ।
ଅଗସ୍ତି ବୋଇଲେ ଅନେକ ରତ୍ନ ଆଭରଣ ତୋର କାଯ୍ୟେ
ରୂପ ଗୁଣେ ଦିଶୁଅଛୁଂ କୁବେର ସୁତ ପ୍ରାଯ୍ୟେ । ୪୭ ।
ପିତାମହ ବୋଇଲେ ତୁ ନ ଦେଲୁ ଅନ୍ନଦାନ
ଯେ ତୋର ମୃତୁପିଣ୍ଡ ପ୍ରତିମା କରୁଅ। ଭକ୍ଷଣ । ୪୮ ।
ମୁହିଂ ବୋଇଲି ଯେ ଥକଇଂ ପ୍ରତିକାର କରସି ଯେ ମୋତେ
ଯେ ଦୁରାପଦ କଷ୍ଟରୁ ପାର ହୋଇବି କେମନ୍ତେ । ୪୯ ।
ପିତାମହ ବୋଇଲେ ତୁ ଅଗସ୍ତି ଯେବେ ଭେଟୁ
ତାହାଂକରେ ମୁକତ ତୁ ହୋଇବୁ ଯେ କଷ୍ଟୁଂ । ୫୦ ।
ଯେହା ଶୁଣି ଯେ ପଥେ ମୁଂ ବସିଛି ନିବେଶି
ଅଗସ୍ତିଂକ ଭେଟିଲେ ମୋହୋର କଷ୍ଟ ହୋଯ୍ୟେ ଧ୍ୱଂସି । ୫୧ ।
ଆହେ ପଣ୍ଡାଯ୍ୟେ ଯେହିରୂପେ ପାଞ୍ଚ ଯୁଗ ଗଲା ବହି
ଅଗସ୍ତି ମହାତ୍ମାଂକୁ ନ ଦେଖିଲି ମୁହିଂ । ୫୨ ।
ଭୋ ପଣ୍ଡାଯ୍ୟେ ତୁମ୍ଭେ ଅଗସ୍ତିଂକ ଭେଟିଲେ କହିବ
ସେ ମହାତ୍ମାଂକ ପ୍ରସନ୍ନେ ମୋର କଷ୍ଟ ପାଣ୍ଡେଯିବ । ୫୩ ।
ଶ୍ୱେତକଲ୍ପ ରାଜାର ଯେସନେକ ବାକ୍ୟ ଶୁଣି
ନିତ୍ୟକର୍ମେ ଗଲେ ମୁନି ତାହା ହୃଦେ ଗୁଣି । ୫୪ ।
ମେଖଳା ଗଙ୍ଗାରେ ମୁନି ସ୍ନାହାନ ସାରିଲେ
ଯେ ବିଧି ନିତ୍ୟକର୍ମ ଜଳରେ ସେ କଲେ । ୫୫ ।
ବାହୁଡ଼ନ୍ତି ମହାତ୍ମା ନିଜ ଯେ ଆଶ୍ରମେ
ଶ୍ୱେତକଲ୍ପ ରାଜାକଇଂ ଭେଟିଲେ ଶମଶାନେ । ୫୬ ।
ଶୁଣ ହୋ ମହାରାଜା ବଦସ୍ତନ୍ତି ଅଗସ୍ତି
ଆମ୍ଭେ ଯେ ବାଲଖିଲ୍ୟ ପିତାମହର ଅପତ୍ୟ । ୫୭ ।

---

୪୬।୨ ଅନ୍ନ ଅଣଜଟେ କ୍ଷୁଧା (ଦୁଃଖ) ମୁଂ ଗଗନ ମଣ୍ଡଳେ । (ଙ,ଝ,ଛ)

ବ୍ରାହ୍ମଣ ଭୋଜନକଇଂ ପାଣି ଗ୍ରହସି ଆମ୍ଭର ହାତେ
ସେହୁ ପାପ କଷ୍ଟୁଂ ପାର ହୋଇଲେ ହୁଅ ପଚ୍ଛେ ମୋତେ । ୫୮ ।
ତାହାଣ ଶ୍ୱେତେକ ଶଙ୍ଖେ ଜଳ ତିଳ ଭରି ଆଣି
ଅଗସ୍ତିଂକ ହାତେ ଜଳ ଟେକିଲା ହେଲା ନୃପମଣି । ୫୯ ।
ଅଥବା ଦେଇ ଯେ ନୁଆଁଇବ ତୋତେ
ନିବୃତ୍ତି ଭଜ ମହାତ୍ମା କାରଣ କରିବାକୁ ମୋତେ । ୬୦ ।
ସତ୍ୟ ସତ୍ୟ ବାକ୍ୟ କହିଣ ଶ୍ୱେତକଳ୍ପ ନୃପତି
ଅଗସ୍ତିଂକ ହାତେ ଦେଇ ହୋଇଲା ନିବୃତ୍ତି । ୬୧ ।
ଯାଅ ଯା ମୃତ୍ତୁ ପିଣ୍ଡ ନ ଭକ୍ଷ ହୋ ଶ୍ୱେତ
ବାହୁଡ଼ ସତକର୍ମ ତୋତେ ହୋଉ ପରାପତ । ୬୨ ।
ଇଦଂ ବାକ୍ୟେ ଅଗସ୍ତିଂକର ସେହୁ ଯେତେକ କଥା
ତହୁଂ ପାର ହୋଇଣ ସେ ରଜା ହୋଇଲା ଅନ୍ନଦାତା । ୬୩ ।
କୃଷୀ ଦାସ୍ୟି କଅଇ ଯେବଣ ଧାନ କଆର
ତହିଂ ଗୋଟିଏ ଗୋଟିଏ ପଡ଼ଅଛି ଧାନ ବଗୋଲେଣ ଝୁଡ଼ି । ୬୪ ।
ଗୋଟିଏ ଗୋଟିଏ କରି ତାହା ଖୁଣ୍ଟିଲା ନରନାହା
ତିଳଶି ହନେ ଅଗସ୍ତିଂକ ଭୋଜନ ହେଲା ତାହା । ୬୫ ।
ଶୁଣ ହୋ ଗାଙ୍ଗେୟ ବୋଇଲେ ଧର୍ମ ପ୍ରୋହିତେ
ଅନ୍ନ ଦାନ ନ ହେଲେ କହିଣ ପଡ଼ଇଟି ସେତେ । ୬୬ ।
ଅଥବା ବହୁତ ଯେବେ ଦେଇ ନୁଆଁଇବ ଅନ୍ନ ଦାନ
ଦୁଃଖ ପଡ଼ ସେହୁ କାବେଳେ ଦେବୁ ଯେ ଭୋଜନ । ୬୭ ।
ଭୀଷ୍ମେ ସାନନ୍ଦ ହୋଇଲେ ପୁରାଣ ବାକ୍ୟ ଶୁଣି
ଲକ୍ଷେକ ବ୍ରାହ୍ମଣନ୍ତ ନେଇ ଭୋଜନ କରଇ ନଡ଼େ ଆଣି । ୬୮ ।
ସେହି ସରସ୍ୱତୀ ତଟରେ ଭୁଆଇଲେ ଅନ୍ନ ଛତ୍ର
ଯେତେ ଇଚ୍ଛା ସେହୁ ଭୋଜନ ପାବନ୍ତି ସମସ୍ତ । ୬୯ ।
ଅନ୍ନ ଛତ୍ର ବସ୍ତ୍ର ଛତ୍ର ଆବର ପାଣି ଛତ୍ର
ଯୁଦ୍ଧେ ଶ୍ରମ ପାଇ ଭୋଜନ ପାବନ୍ତି ଭୁଞ୍ଜନ୍ତି ସମସ୍ତ । ୭୦ ।

---

୬୬।୨ ଅନ୍ନ ଦାନ ହେଲେ କଠୋର ହୋଅଇ ସେହିତେ । (ଝ, ଘ, ଟ, ଢ)
୬୭।୨ ଦରିଦ୍ର ଲୋକ ସେହୁ କାବେଳେ ଦେବୁ ଯେ ଭୋଜନ । ( ଓ, ଥ, ନ)
୭୦।୨ ଘୃତ ବ୍ୟଞ୍ଜନ ସହିତେ ଭୁଞ୍ଜନ୍ତି ସମସ୍ତ । (ଓ, ଥ, ନ)

ଲକ୍ଷ ଲକ୍ଷ କୋଟି କୋଟି ଶଙ୍ଖ ପଦ୍ମ ସଙ୍ଗନ
ଯେ ଯେତେବେଳେ ଲେଉଟନ୍ତି ଦିବା ଯେ ରଜନୀ । ୭୧ ।
ଦାନ ଧର୍ମ କରନ୍ତେ ପ୍ରସର ହୋଇଲାକ ଗତି
ମକର ମାସ ଶୁକଳ ପକ୍ଷ ତୃତୀୟାର ତିଥି । ୭୨ ।
ଶନିବାର ନକ୍ଷତ୍ର ଶତଭିଷା କୁମ୍ଭ
ଯୁଦ୍ଧ କରିବାକୁ ସେ ଯେ କରନ୍ତି ଆରମ୍ଭ । ୭୩ ।
କିସ୍ତୁଘ୍ନ ନାମେ କରଣ ବ୍ୟାଘାତ ନାମେ ଯୋଗ
ମକର ସଂକ୍ରାନ୍ତିକ ଉଣେଇଶ ଦିନ ଭୋଗ । ୭୪ ।
ତୃତୀୟା ଦିବସକୁ ମହାଭାରଥ ଯୁଦ୍ଧ ଲେଖା
ପାଣ୍ଡବ ବଳନ୍ତ ଭୀଷ୍ମ ନ କରନ୍ତି ଶଂକା । ୭୫ ।
ସାରଥିର ବଜ୍ରଘୋଷ ସାର ମର୍ଦ୍ଦିଲ ଦାଉଣ୍ଡି
ଅନେକ ରତ୍ନେ ଭୀଷ୍ମଙ୍କର ରଥ ମଣ୍ଡି । ୭୬ ।
ଉଡନ୍ତି ଘାଟଛତ୍ର ଆଲମ୍ବ ଉଦଣ୍ଡ
ଝଳକନ୍ତି ପଞ୍ଚ ଲକ୍ଷ୍ମୀ ଯେସନେ ମାରତଣ୍ଡ । ୭୭ ।
ଅନନ୍ତ ଅନର୍ଘ୍ୟ ମଣି ମୁକୁଟ ଯେସନେ ଚନ୍ଦ୍ର ଚୂଡ଼ ବିକାଶି
ବିରାଜନ୍ତି ହୃଦୟରେ ମଣି ଖଚିତ ବିଦାରଣ କଷି । ୭୮ ।
ତାଡ ତୋଡର ବାହୁଟି ମୁକୁଟ କର୍ଣ୍ଣାଞ୍ଚଳ ଜଗଦଳା
ବିଦ ମୁଦ୍ରି କଂକଣ ସରଳ ଗଳାପେ ରତ୍ନମାଳା । ୭୯ ।
ଦିବ୍ୟ ବେଶ ଅବତାର ହୋଇଣ ଶାନ୍ତନୁ ନନ୍ଦନ
ରଥେ ବିଜେ କଲେ ଯେ ଶ୍ରୀକରେ କୋଦଣ୍ଡ ଘେନ । ୮୦ ।
ଶ୍ରୀଭୁଜେ ଅର୍ଘ୍ୟ ଘେନ ମାନଚନ୍ଦ୍ର ବସ୍ତ୍ର
ଭୀଷ୍ମଙ୍କର ଶିରେ ନେଇ ବନ୍ଧାଇଲାକ ତଉଡ । ୮୧ ।
ଦଧିବାମନ ଅନକୂଳ ଯେ ସମସ୍ତ ସନ୍ଦେହ
ପ୍ୟେ ମୋହୋର ଅଭିମାନ ଫେଡସି ପିତାମହ । ୮୨ ।
ସ୍ୱାମୀ କଉରେବ କଳକୁ ତୁମ୍ଭ ସେ କାରେଣୀ
ତୁମ୍ଭ ସେ ମୋହୋର ବଂଶ ଉଦ୍ଧାର କର ପୁଣି । ୮୩ ।

---

୮୩।୨ ତୁ ସେ ବଂଶ ମୋହୋର କରିବୁ ଉଦ୍ଧାରଣ । (ଙ, ଛ)

ତୁହି ସେ ମହାକାଳଙ୍କ ମୂର୍ତ୍ତି ସେ ଶିବ ଭଗତା
ଅନାଥ ଜନଙ୍କୁ ତୁହି ସେ କରୁ ଉଦ୍ଧାରନ୍ତା । ୮୪ ।
ଭୀଷ୍ମଙ୍କ ଶରଣ ମୁଁ ନ ଜାଣଇଁ ଆନ
ସୋମବଂଶ ଉଦ୍ଧାରଣ ରକ୍ଷଣ ତାରଣ । ୮୫ ।
ଅନେକ ସ୍ତୁତି କଲା ସେ କନ୍ଦିଲା କୁରୁପତି
କାର୍ତ୍ତିକେଶ୍ୱର ପ୍ରାୟେ ଦିଶଇ ଭୀଷ୍ମଙ୍କର ମୂର୍ତ୍ତି । ୮୬ ।
ପାଞ୍ଚ ସହସ୍ର ରଥ ବଂଶ ସହସ୍ର ହାଥୀ
ଗୁଳଶ ଲକ୍ଷ ଯୋଧା ଭୁଲେ ଭୀଷ୍ମ ମହାରଥୀ । ୮୭ ।
ଗଗନ ଉଚ୍ଛୁଳଇ ବାଜନ୍ତର ବାଣୀ
ସମସ୍ତେ ସଜ ହୋଇଲେ ସକଳ ନୃପମଣି । ୮୮ ।
ରଥ ଗଜ ସୈନ୍ୟ ସେ ସମରେ ଚଳିଣି
ସମଦଣ୍ଡ ଦେଇ ଭୀଷ୍ମ ଆଗରେ ଆଟିଆଣି । ୮୯ ।
ଦ୍ରୋଣ କର୍ଣ୍ଣ ଶଲ୍ୟ ଜୟଦ୍ରଥ ଅଶ୍ୱତ୍ଥମା
ଭୂରିଶ୍ରବା ସୋମଦତ୍ତ ବାହ୍ଲିକ କୃପବ୍ରହ୍ମା । ୯୦ ।
ଦୁର୍ଯୋଧନ ରାଜା ସେ ସୁବର୍ଣ୍ଣମୟେ ରଥେ
ଶାର୍ଦ୍ଦୂଳର ଚର୍ମେ ମଣ୍ଡିତ ସୁସଜ୍ଜେ । ୯୧ ।
ନେତର ପାତାଙ୍କ ସେ ଉଡଇ ଫରହର
ଛତ୍ର ଚାମର ସେ ବିମଳ ଆକାର । ୯୨ ।
ଶତେକ ସୋଦର ବାମ ଡାହାଣେ ଶୋଭିବନ
ଯୁଦ୍ଧକୁ ଗମନ ହେ ହସ୍ତିନା ରାଜନ । ୯୩ ।
ମଙ୍ଗଳ ଆରମ୍ଭ କଲେ ପ୍ରୋହିତ ବନ୍ଧୁଜନ
ଭାଟେ ଉଚ୍ଚେବାର ସ୍ତୁତି କରନ୍ତି ମାର୍ଗଣ । ୯୪ ।
ନଗର ଯୁବତୀମାନେ ଦିଅନ୍ତି ହୁଳାହୁଳି
ମାନଗୋବିନ୍ଦ ରାଜା ମଧ୍ୟ ଆସେ ଚଳି । ୯୫ ।

---

୮୫ { ଭୀଷ୍ମ ଦେବ ସମରେ ତୁମ୍ଭନ୍ତ ମୁଁ ନ ମାଗଇ ଆନ
ସୋମବଂଶର ଚନ୍ଦ୍ର ତୁ ଶରଣ ରକ୍ଷଣ ତୋର ବହୁ । (ଙ, ଥ, ଓ, ନ)

୮୭। ଅଶୀ ଲକ୍ଷ ଯୋଦ୍ଧା ଭୁଲେ ଭୀଷ୍ମ ମହାରଥୀ । (ଓ, ଥ, ନ)

ଅନେକ ଖାରଭୂର ବାଜଇ ବିକଟାଳ
ପ୍ରବେଶ କୁରୁ ସଇନ କୁରୁକ୍ଷେତ୍ର ମଣ୍ଡଳ । ୯୬ ।
ପାଣ୍ଡବ ବଳ ସମସ୍ତେ ଭୀଷ୍ମନ୍ତ ପ୍ରଶଂସି
କହନ୍ତି ଆଜ ହୋ ଭୀଷ୍ମ ଧଂସିବ ସୈନ୍ୟ ବଳରାଶି । ୯୭ ।
ପାଣ୍ଡବ ବଳ ତହୁଁ ବିସ୍ମୟେ ଭାଳନ୍ତେ
ଶ୍ୱେତ ନାମେ ରଥୀ ଯେ ବିରାଟର ସୁତେ । ୯୮ ।
ସଞ୍ଜିକର ରଥ କନକ ଗୁଦ୍ୟୁଣୀ
ଉପିଲା ମରକତ ଜାଣି ବଇଶଇ ଦନମଣି । ୯୯ ।
ହୀରା ମାଳା ମୋତି ମାଣିକ୍ୟ ପୁଞ୍ଜି ପୁଞ୍ଜି
ରଥର ଗୃହ ପାଖେ ସୁନାମାନ ଖଞ୍ଜି । ୧୦୦ ।
ରଥ ଧ୍ୱଜ ଉପରେ ସୁବର୍ଣ୍ଣ କଳଶ
କେଶରୀ ଲାଙ୍ଗୁଳ ଚିହ୍ନ ଧ୍ୱଜାରେ ପ୍ରକାଶ । ୧୦୧ ।

---

୯୭ "କହନ୍ତି ଆଜ ହୋ ଭୀଷ୍ମ ଧଂସିବ ସୈନ୍ୟ ବଳରାଶି" ପରେ 'ଛ' ପୋଥିରେ ଭିନ୍ନ ପାଠ:—

ସେଥୁ ଅନନ୍ତରେ ଶୁଣ ହୋ ମନୁରାୟେ
ପାଣ୍ଡବ ବଳ ଥାଟରେ ଯେ ଲାଗିଲା ମହାଭୟେ ।
କହନ୍ତି ଭୀଷ୍ମେ ଆଜ ନାଶିବେ ସମସ୍ତ
ପାଣ୍ଡବ ସଇନମାନେ ଭାଳନ୍ତି ଭୟ ଚିତ୍ତ ।
ସେଥୁଁ ଅନନ୍ତରେ ଦେବକୀ ନନ୍ଦନ
ନନ୍ଦିଘୋଷ ରଥ ସାଜନ୍ତି ନାରାୟଣ ।
ଯେ ଯାହାର ନିତ୍ୟକର୍ମ ସମସ୍ତ ରାୟେ ସାରି
ବାଜଇ ସଦାଉଜେ ନିଶାଣ ବାଦ୍ୟ ଭେରୀ ।
ଯେ ଯାହା ଅନୁରୂପେ ମଣ୍ଡିଲେ ରଥ ଗଜ
ଯୁଦ୍ଧକଇଂ ସମସ୍ତେ ହୋଇଲେକ ସଜ ।
ଯୁଧିଷ୍ଠିର ମହାରାଜାନ୍ତ କରନ୍ତି ଦର୍ଶନ
ଶଙ୍ଖ ଶ୍ୱେତ ଉତ୍ତର ବିରାଟ ନନ୍ଦନ ।
ଯୁଧିଷ୍ଠିରଙ୍କ ଛାମୁରେ ସେ ହୋଇଲେ ପରଣାମି
ଉଠ ଉଠ ବୋଇଲେ ଯୁଧିଷ୍ଠିର ଦେବ ସ୍ୱାମୀ ।
ଶ୍ୱେତ କୁମର କହଇ ଯୋଡ଼ଣ ଦେଇ କର
ହେ ଦେବ ଆଜ ମୋତେ ସେନାପତି କର ।

ଫରହରର ପାତାଙ୍ଗ ଉଡଇ ଗଗନ
ବିଜୁଳି ତେଜ ଜାଣି ଦିଶଇ ଶୋଭିବନ । ୧୦୨ ।
ସେ ରଥରେ ବିଜୟେ କୁମାର ବୀର ଶ୍ୱେତ
ଶଙ୍ଖ ଶ୍ୱେତ ଉତ୍ତର ବିରାଟର ତିନି ସୁତ । ୧୦୩ ।
ତିନି ଭାଇ ତିନି ରଥ ହୋଇଦେ ସାଜି
ଶ୍ୱେତଖାର ତୁରଙ୍ଗମ ଯେ ଯୋଚିଲା ଅଛି ଶୁଭ ବାଜୀ । ୧୦୪ ।
ମହା ମହା ଅଶ୍ୱେ ଯେ ଅଛନ୍ତି ପ୍ରଚଣ୍ଡ
କ୍ଷଣକେ ଲେଉଟାଇ ସେ ପାରନ୍ତି ବ୍ରହ୍ମାଣ୍ଡ । ୧୦୫ ।
ଧସାଇଂ ରଥ ଯେ ଠେକିଲେ ତିନି ରଥୀ
ଯୁଧିଷ୍ଠିରଂକ ପାଦତଳେ ପ୍ରଳମ୍ବ କରନ୍ତି । ୧୦୬ ।
ଶ୍ୱେତ ପ୍ରଣମିତ ଯେ ଯୁଧିଷ୍ଠିରଂକର ପଦ୍ମପାଦେ
ମୋତେ ସେନାପତି କର ମୁଂ ଜିଣିମଇଂ ହାଦେ । ୧୦୭ ।
କଞ୍ଚିତ କଉବେର ତରଣ ହାଦେ ପ୍ରାପ୍ତେ
ମୁହିଂ ସେ ଦାବାନଳ ତାଂକୁ ପ୍ରଚଣ୍ଡ ତେଜ ହୋଇଯେ । ୧୦୮ ।
କ୍ଷଣେକେ ଖୀଷ୍ମଂକୁ ମୁଂ କରି ପାରଇ ତୃଣରାଶି
ପୂର୍ବର ବିଦ୍ୟା ମୁହିଂ ଯେ ଅଛଇ ଅଭ୍ୟାସି । ୧୦୯ ।
ନବକୋଟି ବିଦ୍ୟା ଯେ ମୋହୋର ଗର୍ଭଗତେ
ନିମିଷେକେ ଖୀଷ୍ମଂକୁ ମୁଂ ଜଣଇଂ ତୁରିତେ । ୧୧୦ ।
ବିଶ୍ୱାମିତ୍ର ବିଦ୍ୟା ମୁହିଂ ପାଇଅଛି ଭଲେ
ନିମିଷେକେ ଖୀଷ୍ମଂକୁ ଜିଣିମଇଂ ମୋତେ ସେନାପତି କଲେ । ୧୧୧ ।
ଯୁଧିଷ୍ଠିର ସନମତ କଲେ ତାହାର ପ୍ରତଗ୍ୟାଂ ହାଦେ ଶୁଣି
ଅର୍ଜୁନ ଗ୍ରାମରେ ଉଭାକଲେ ଶ୍ୱେତ କୁମାରକୁ ଆଣି । ୧୧୨ ।
ବଦସନ୍ତି ଯୁଧିଷ୍ଠିର ବାବୁ ଶୁଣ ସର୍ବସାରୀ
ବଡ଼ାଇ ପ୍ରତଗ୍ୟାଂ ଯେ ଶ୍ୱେତ କରୁଅଛି । ୧୧୩ ।
ଅର୍ଜୁନ ବୋଇଲାକ ଶୁଣିମା ଦେବ ଧର୍ମେ
ଯେହୁଁହାର ଜ୍ୟେଷ୍ଠ ଭ୍ରାଥ ନେଲା ମୋତେ ଗୋଧନ ହରଣେ । ୧୧୪ ।
ସମଦଣ୍ଡ ଦେଖିଣ ସେ ହୋଇଲା କାତର
କୋଇଲା ମୋତେ କମ୍ପେ ଆଣିଲୁ ତୁ ଯେ ସମ୍ମୁଖ ଭିତର । ୧୧୫ ।

ମୁଂ ପୁଣି କହିଲି ଯୋଦ୍ଧାମାନଂକର କଥା
ମୋତେ ଗ୍ଭଜ ପଚାରିଲ୍ଲ ହୋଇଣ ଅନେକ ଅବସ୍ଥା । ୧୧୬ ।
ଗୋପ୍ୟାନ ବନବାସ କଥା କହିଲି ତା ପାଶ
ଅଠର ଷେଉଣୀକ ମୁଂ ଯେତକା ଦେଲି ଝାସ । ୧୧୭ ।
ଯେତ୍ହାଂକ ମହିମା ମୁହିଂ ଜାଣିଅଛି ଭଲେ
ଗ୍ଭଜ୍ୟର ଆଶ ଗ୍ଭଡ ଯେତ୍ହାଂକର ଆଶ କଲେ । ୧୧୮ ।
ସ୍ୱାମୀ ଅତ୍ତଅନ୍ତ ପ୍ରଖର ଯେ ପ୍ରସିଦ୍ଧ ପକ୍ଷୀବର ଶୁଆ
ଜାହାଙ୍କର ବୋଲେ ନାଗେ ଭକ୍ଷି ପାରଇ କ ତାହା । ୧୧୯ ।
ସ୍ୱାମୀ ଅତ୍ୟନ୍ତ ସୋତହୋଡ ଯେ ଦିଶନ୍ତ ନଟକାଗ୍ଭ ଲୋକେ
ତାହାନ୍ତ ଆଶକଲେ ହେଲା ବୁଡାନ୍ତଟି ଥୋକେ । ୧୨୦ ।
ସ୍ୱାମୀ ଯଉବନେ ହୁଅନ୍ତ ଯେବଣ ବାଳୀ ବଧବା
ତାହାନ୍ତ ଆଶ କଲେ ପ୍ରାଣେ ହୋଇ ପ୍ରାଭବ । ୧୨୧ ।
ସ୍ୱାମୀ ଧନବନ୍ତ ହୋଇଣ ଅତି କୃପଣ ହୋଇଲେ
କୀର୍ତ୍ତି ଧର୍ମ ନାଶ ନହୋଇ ତାହାରେ ଆଶ୍ରେ କଲେ । ୧୨୨ ।
ସ୍ୱାମୀ ଅତ୍ତଅନ୍ତ ଆରମ୍ଭେ ଯେବେ ସମର ଆରମ୍ଭ କରଇ ଛେଳି
ବ୍ୟାଘ୍ରକଇଂ ଦେଖିଲେ ଫକୋଟଇ ରୋମାବଳି । ୧୨୩ ।
ସ୍ୱାମୀ ତେଜ ଗାଢେ ପ୍ରେତ ବସ୍ତାର କରଇ ତୁଣ୍ଡ
ତାହାର ବଳେ କ ଗିଳ ହୋଇବ ଭୂଅଖଣ୍ଡ । ୧୨୪ ।
ସ୍ୱାମୀ ଯାହାର ଯୁଦ୍ଧକୁ ଡରଇ ଶଚୀନାହା
ଯେତ୍ହାଂକର ବଳରେ ଯେ ହୋଇବଟି ଜାହା । ୧୨୫ ।

---

୧୧୯ { ସ୍ୱାମୀ ଅତ୍ୟନ୍ତ ଉତ୍ସର୍ଗ ଯେ ପର୍ବତର ଶିଳା
{ ପାଶକୁ ଗଲେ ଦିଶନ୍ତ କେବଳ ବୃକ୍ଷ ମାଳା । ( ଓ, ଥ, ନ, )

୧୨୦ { ଅତି ସୋହୋଡ ସୁନ୍ଦର ଦିଶନ୍ତ ଯେଉଂ ଲୋକେ
{ ସେ ଲୋକକୁ ଆଶ କରନ୍ତି ଜିନେ ଅବିବେକେ । ( ଥ, ଓ, ନ )

୧୨୧ { ସ୍ୱାମୀ କାମାର୍ଥୀ ହୁଅନ୍ତି ଯେବଣ ବିଧବା ସ୍ତ୍ରି ସ୍ତ୍ରୀ
{ ତାହାନ୍ତ ଆଶ୍ରେ କଲେ ତୁଟଇ ତପ ଧର୍ମ ଶିଘ୍ରୀ । ( ଓ, ଥ, ନ, )

୧୨୩।୨ ମାରବାର ବେଳେ ନ ଟଳଇ ରୋମାବଳି । (କ,ଙ,ଝ,ଓ,ଢ଼,ଥ,ପ,ନ)

୧୨୪ { ସ୍ୱାମୀ ତେଜ ଗାଢ଼େ ବିସ୍ତାର ପ୍ରେତ ଭୂତ ତୁଣ୍ଡ
{ ଗିଳି ପାରନ୍ତି ସେ ଯେ ସପତ ବ୍ରହ୍ମାଣ୍ଡ । ( ଥ, ଓ, ନ, ଙ, ଟ )

ସ୍ୱାମୀ କାଳେ ସତ ନୋହଇଛି ସେମାନଂକର କଥା
ସ୍ୱପନ ଫଳକୁ ଆଶ କରନ୍ତ ମୂର୍ଖ ଜନେ ଯଥା । ୧୨୬ ।
ଯୁଧିଷ୍ଠିର ଦେବେ ଶୁଣି ହୋଇଲେକ ତୃଷ୍ଣୀ
ନାରାୟଣଂକ ମୁଖକୁ ଗୃହଂଣ ପ୍ରଣମ୍ୟ କରନ୍ତି । ୧୨୭ ।
ଅଜାଯୂଥ ଦେନ କରେ କି ବ୍ୟାଘ୍ରର ସମ୍ମୁଖରେ ସାଂଗ୍ରାମ
ତୁମ୍ଭେ ଅନୁଗ୍ରହ କରିବା ପୁରୁଷଂକ ଉତ୍ତମ । ୧୨୮ ।
ସହସ୍ରେ ଭୀଷ୍ମ ଦୁଇ ସହସ୍ର ହୋଉ ଦ୍ରୋଣ
ଚାରି ସହସ୍ର ଅଶ୍ୱତ୍ଥମା ପାଞ୍ଚ ସହସ ହୋଉ କର୍ଣ୍ଣ । ୧୨୯ ।
ଶଲ୍ୟ ଭୂରିଶ୍ରବା ହୋଉ ଦଶ ସହସ୍ର ରଥ
ଜଗନ୍ନାଥଂକ ଚରଣେ କରିମ ପାର ପାଥ । ୧୩୦ ।
କହୁଂ କହୁଂ ପ୍ରତଗ୍ୟାଂ ଯେ କରଇ ଧ୍ୱନିରେଇ ମଲ୍ଲ କରନ୍ତି
ଜଗନ୍ନାଥଂକ ପାଦପଦ୍ମେ ସ୍ମରି ଯାଇଂ ଲେଛି । ୧୩୧ ।
ତୁ ମୋତେ ସାହାପକ୍ଷ ହୋଇଥାଅ ଜଗନ୍ନାଥ
ସାକ୍ଷ ମାତ୍ର ହୋଇଣ ବାହସି ମୋର ରଥ । ୧୩୨ ।
ଯାବତ ରଥେ ମୋର ସାରଥି ବାସୁଦେବ
ସେ ତିନି ତ୍ରଇଲୋକ୍ୟେ କେହୁ ଅଛଇ ମୋତେ ସେ ଜିଣିମ । ୧୩୩ ।
ବ୍ରହ୍ମା ଇନ୍ଦ୍ର ରୁଦ୍ର ଚନ୍ଦ୍ର କୁବେର ହୋଉ ଯଦ
ବ୍ରହ୍ମାଣ୍ଡ ଯାକ ହୋଇଲେ କେ ଜିଣିମ ମନଭେଦୀ । ୧୩୪ ।
ତୁ ଦେବ ଜଗତ ମୋହନ ସମୂଳ ଜନ ଚିନ୍ତା
ତୁ ଦେବ ମାନ ଉଦ୍ଧାରଣ ଚରାପୁରୁଷ ବିଅନ୍ତା । ୧୩୫ ।
ସ୍ୱାମୀ ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଯେ ପ୍ରତ୍ୟକ୍ଷ ବାରିନିଧି
ମାନବ ଜନ୍ମେଣ କେହୁ ଶର ପାରଇ ସନ୍ଧ । (ବନ୍ଧ) । ୧୩୬ ।
ସ୍ୱାମୀ ପ୍ରସ୍ତାଗେ ଖାସିଲ ମୁଂ ଶତେ ସହସ୍ରେକ ଜନ୍ମ
ତୋତେ ଚେତଶୁ ସପକ୍ଷ ଯାଇଲି ପୁରୁଷଂକ ଉତ୍ତମ । ୧୩୭ ।
ଅକାରଣ ଜନକୁ ହେତୁ କାରଣ କରଇ ତୁହି
ତୋ ଚରଣେ ଦେବ ନାଥ ମୋର ଆନ୍ତେ ନାହିଂ କେହି । ୧୩୮ ।

---

୧୩୪।୨ ମନଭେଦୀ—ଅର୍ଜୁନ ଅର୍ଥରେ ପ୍ରୟୋଗ ।

ଶ୍ରୀକୃଷ୍ଣ ଚରଣେ ଶରଣ ମୋର ନଚ୍ଛେ
ଶୂଦ୍ର ମୁନ ସାରଳା ଦାସ ରଚଲନ ଶ୍ରୀ ମହାଭାରତେ ।୧୩୯—୨୩୨୦।



## ଭୀଷ୍ମଙ୍କର ତୃତୀୟ ଦନ ଯୁଦ୍ଧ ଓ ଚତୁର୍ଥ ଦନେ ଶ୍ୱେତ ସେନାପତ ପଦେ ନଯୁକ୍ତ

ଶୁଣ ତୁ ମନ ହୋ କହଇ ଚଇତନ
ପ୍ରଭାତ୍ୟାଂ କର ଅର୍ଜୁନ ଯେ ବଜେ କଲ ନନ୍ଦଘୋଷ ଯାନ । ୧ ।
ଶ୍ରୀଭୁଜେ ଶଙ୍ଖ ଚକ୍ର ଶାରଙ୍ଗଧର ପାଣି
ରଥରେ ସାରଥି ହରି ଅଭେଦ ଆତ୍ମା ଜାଣି । ୨ ।
ଶଙ୍ଖ ଶ୍ୱେତ ଗୋକ୍ଷୀର ଯେ ଆବର ଅଶ୍ୱ କାମପାଳ
ହଂସପନ୍ତ ପ୍ରାୟେକ ବହଉନ୍ତ ସନ୍ୟ ମହାଜଳ । ୩ ।
ଓହୋବଲ ସଇନ୍ୟ ସାହେର ପ୍ରାୟେ ଅଟନ୍ତ
ତାହାଂକ ଗୃର ଅଶ୍ୱେ ହଂସ ପ୍ରାୟେ ନଉନ୍ତ । ୪ ।
ଯୁଧିଷ୍ଠିର ମହାରାଜା କଣସୁମୟେ ରଥ
ତାହାଂରେ ଉଡାଇଣ ଆଲମ୍ୱ ପାଟ ଛତ୍ର । ୫ ।
ଦୁର୍ଦ୍ଧର୍ଷ ଭୀମସେନ ନକୁଳ ସହଦେବ
ସାତ୍ୟକୀ ଅଭିମନ୍ୟୁ ବରାଟ ଦ୍ରୁପଦ । ୬ ।
ଘଟଉତ୍କଚ ଧୃଷ୍ଟଦ୍ୟୁମନ ଶ୍ରୀଖଣ୍ଡୀ
ଶଙ୍ଖ ଶ୍ୱେତ ଉତ୍ତର କଣସୁ ରଥ ମଣ୍ଡି । ୭ ।
ନୃପତ ବାମ ଡାହାଣେ ଚଳନ୍ତ ମହାରଥୀ
ଆଗ ପଛେ ପଟୋଆର ଅନେକ ଘୋଡା ହାଥୀ । ୮ ।
ସମ୍ମୁଖେ ଚଳନ୍ତ ଯେ ନୃପତ ଧର୍ମରାୟେ
ବାରତୂର ନାଦେ କୁରୁମ ଉଛୁଳୟେ । ୯ ।
ଇନ୍ଦ୍ର ପ୍ରଶସ୍ତକୁ ରଣ ଭୂମି ବାରଣ ଯୋଜନ
ତନ ଦଣ୍ଡ ମଧ୍ୟେ ଯାଇଂ ଭେଟିଲେ କୁରୁ ସଇନ । ୧୦ ।

---

୧୩୯।୧ ଶ୍ରୀକୃଷ୍ଣ ଚରଣେ ଶରଣ ମୋର ଅନୁବ୍ରତେ । ( ଥ, ଓ, ନ, )
୨।୨ ରଥରେ ସାରଥି ହରି ଅଭେଦ କାୟା ଜାଣି । ( ଚ, ଧ )

ଦେଖିଲେ କୁରୁଥାଟେ ଯେ ଖ୍ରତ୍ତେ ଆଗିଆଣି
ସମୃଦ୍ଧ ଆବୋଲଅଚ୍ଛି ସେତୁବନ୍ଧ ଜାଣି । ୧୧ ।
ଜଗୁ ମୋହୋନ ନାଥ ଖ୍ରଷ୍ମଂକ ଆଗରେ ଯାଇଂ ଭେଟି
ଦେଖିଣ ଗାଙ୍ଗେବ ରଥୁ ଓହ୍ଲାଇ ଚରଣେ ଯାଇଂ ଲୋଟି । ୧୨ ।
ଶତେ ସହସ୍ର ଦଣ୍ଡବତ ଖ୍ରଷ୍ମେ ହୋଇଲେ ପରଣାମି
ତବ ମୁଖ ଗୃହ୍ନଂ ରଣ ଯାଗ ଦେବା ସ୍ୱାମୀ । ୧୩ ।
ଗୋବନ୍ଦେ ବୋଇଲେ ତୋର ପୂର୍ଣ୍ଣ ହୋଉ ମନୋବାଞ୍ଛା
ଯାହା ମାଗୁ ତାହା ଭୋଗ୍ୟ କର ତୋର ଇଚ୍ଛା । ୧୪ ।
ଖ୍ରଷ୍ମେ ବୋଇଲେ ଦେବ ଓହୋବଳ ଥାଠ
ଅର୍ଜୁନ ମହାରଥୀ ତୁମ୍ଭେ ସାରଥି ପୁଣ୍ୟବନ୍ତ । ୧୫ ।
ବାଞ୍ଛା ସିଦ୍ଧିକୁ ଯେବେ ହୋଇଲୁ ପ୍ରସନ୍ନ
ଯେବେ ରଣ ଯାଗେ ତୋର ମୁଖ ଗୃହ୍ନଂ ଗୃହ୍ନଂ
ମୋଡେ ଛେଦୁ ଯେ ଅର୍ଜୁନ । ୧୬ ।
ଗୋବନ୍ଦେ ବୋଇଲେ ଭୀଷ୍ମେ ଯେହ୍ନା ସେ କଲ ଇଚ୍ଛା
ଅର୍ଜୁନ ବଇରୀ ହୋଇ ତୋର ପୂରୁ ମନବାଞ୍ଛା । ୧୭ ।
କହ୍ନଂ କହ୍ନଂ ବେଷ୍ଟିତ ଯେ ବୀର ଫାଲଗୁନ
କୋପେଣ ବନ୍ଧିଲେ ଭୀଷ୍ମେ ସହସ୍ର ବାଣ ଘେନ । ୧୮ ।
ଭୀଷ୍ମେ ପୁଣ ନାରାଜ ବନ୍ଧିଲେ ସହସ୍ର ଗୃର
ଗୃର ଅଶ୍ୱ ସାରଥି ଶ୍ରୀକୃଷ୍ଣ ଆଦ୍ଧ କର । ୧୯ ।
ପୁଣ ଅଷ୍ଟବ୍ରତେକ ଘେନଣ ନାରାଜ
ଆକ୍ଷେପିଣ ବନ୍ଧିଲେ କପିକେତନ ଯେ ଧ୍ୱଜ । ୨୦ ।
ହାଥର ବ୍ୟଗ୍ରତା ହାଦେ ଦେଖିତ ନୁଆର
କକଡା ବୃଷ୍ଟି ଜାଣି ବାଣ ବରଷଇ ଜାଳାବଳ । ୨୧ ।
ନାରାଜଂକ ତେଜେ ଯେ ଆଦିତ୍ୟ ତେଜ ଫାଟି
ଶାନ୍ତନୁର ନନ୍ଦନ କରଇ ଶର ବୃଷ୍ଟି । ୨୨ ।

---

୧୫।୨  ଅର୍ଜୁନ ମହାରଥୀ ତୁମ୍ଭେ ସାରଥି ପୁଣ୍ୟ ବାନ୍ତ । ( ଘ, ଛ )
୨୧।୨  କକଡା ମାସରେ ଯେହ୍ନେ ବରଷଇ ବାର । ( ଛ, ଠ )
୨୨।୨  ଶାନ୍ତନୁର ନନ୍ଦନ ଶୂନ୍ୟ ଭୁବନ ଆଦ କର ଗୋଟି । ( ଙ, ଘ, ଢ଼)

ଗୋବିନ୍ଦେ ବୋଇଲେ ହୋ ସମ୍ଭାଳ ବୀର ପାର୍ଥ
ଭୀଷ୍ମଙ୍କର ନାରାଚ ଘୋଟିଲା ଯେହ୍ନେ ତୋହୋର ରଥ । ୨୩ ।
ନାରାୟଣଙ୍କ ବଚନେ ଗାଣ୍ଡୀବ ଧନୁ ପାଣି
ପାଞ୍ଚ ଅର୍ଦ୍ଧଚନ୍ଦ୍ରେକ ନାରାଚ ବନ୍ଧିଲା ବୀର ଟାଣି । ୨୪ ।
ପୁଣି ଭୀଷ୍ମେ ଅନେକ ନାରାଚ ବେଗେ ବନ୍ଧ
ଯେହ୍ନେକା ପ୍ରହାରକେ ଅର୍ଜୁନ ତାହା ଛେଦ । ୨୫ ।
ଗଙ୍ଗାର ନନ୍ଦନ ଦେଖିଣ ଅନେକ ପ୍ରଶଂସି
ଧନ୍ୟ ଧନ୍ୟ ପାର୍ଥିବ ରେ ପାଣ୍ଡବ ଗୁଣରାଶି । ୨୬ ।
ଶରେ ଶର ପଡ଼ନ୍ତାଳ ନାହିଁ ନା ବିଶ୍ରାମ
ଦଶ ଭୁବ ଘୋଟିଲା ଭୀଷ୍ମଙ୍କ ସାଂଗ୍ରାମ । ୨୭ ।
ଶଙ୍ଖ ଶ୍ୱେତ ଉତ୍ତର ଶିଖଣ୍ଡୀ ଧୃଷ୍ଟ ଯେ ଦ୍ୟୁମନୁ
ଅର୍ଜୁନର ନନ୍ଦନ କୁମାର ଅଭିମନ୍ୟୁ । ୨୮ ।
ଦିବ୍ୟ ଅବତାର ହୋଇଣ କୁମାର ଛଅ ରଥୀ
ଶ୍ୱେତ କୁମାର ଆଗେ ଆବୋରିଲା ଦ୍ରୋଣ ମହାରଥୀ । ୨୯ ।
ନାରାଚ ପୂରେଇଣ କୁମାର ଶିଖଣ୍ଡୀ
ଅଶ୍ୱତ୍ଥାମାଙ୍କର ଭୁଲେ ରଣ ରଙ୍ଗେ ମଣ୍ଡି । ୩୦ ।
ଧୃଷ୍ଟଦ୍ୟୁମନ ସେ ଯେ ଛବିସ୍ତ ଉତ୍ତମା
ରଥ ଚଳନ୍ତେଣ ଆସି ଓଗାଳିଲେ କୃପବ୍ରହ୍ମା । ୩୧ ।
ଶଙ୍ଖନାମେ ରଥୀ ଯେ ବିରାଟର ସୁତ
ଶଲ୍ୟଙ୍କର ଭୁଲେ ସମର ଅପ୍ରମିତ । ୩୨ ।
କର୍ଣ୍ଣର ଗୁମ୍ଫରେ ଉତ୍ତର କୁମାର ମିଳ
ସୋମଦତ୍ତ ରାଜାକୁ ଯେ ଅଭିମନ୍ୟୁ ଓଗାଳ । ୩୩ ।
ଭୂରିଶ୍ରବାସ୍ୱେ ସମର ଦ୍ରୁପଦର ଭୁଲେ
ବିରାଟ ଗୁମ୍ଫରେ କୃପ ଆଗୁସୌଂ ମିଳିଲେ । ୩୪ ।
ପାଞ୍ଚ ସହସ୍ର ରଥୀ ଭୁଲେଣ ଜୟଦ୍ରଥ
ଆସିଣ ମିଳିଲା ସେ ଭୀମସେନର ଅଗ୍ରତ । ୩୫ ।

୨୫।୨ ଯେହ୍ନେକା ପ୍ରହାରକେ ପାର୍ଥ ତାହାକୁ ନିରୋଧି । ( ଙ, ଓ )
୨୭।୨ ଚଉଦଗ ଘୋଟିଲେ ଭୀଷ୍ମଙ୍କ ସାଂଗ୍ରାମ । ( ଛ, ଠ )
୩୪।୨ ବିରାଟ ଅନ୍ତେ ଯାଇଂ ବାହ୍ଲିକେ ମିଳିଲେ । ( ଥ, ଓ, ନ )

ଜୟଦ୍ରଥକଇଂ ଦେଖି ଭୀମସେନ ହସି
ଯେତେ ହନେ ଜୟଦ୍ରଥ ଗ୍ରମ୍ଭରେ ପଡିଲୁ ରେ ଆସି । ୩୬ ।
ଦ୍ରୌପଦୀକ ହରିଲୁ ଯେ କାଲେବର ବନେ
ସେ ହନୁଂ ଭେଟାଭେଟି ନାହିଂ ଭେଟିଲୁ ଯେତେ ହନେ । ୩୭ ।
ସାତ ବେଣି କଣ୍ଠ କାଟିଲୁଂ ତୋହୋର ବାଳ ଲେଖ
ଦେଖିବା ରେ ଜୟଦ୍ରଥ ହୋ କେମନ୍ତ ହୋଇଅଛୁ । ୩୮ ।
ଗଳ ପଳାଇଲୁ ମୋହୋର ବେନି ଜାନୁ ତଳେ
ପାସୋରିଲ କଥାରେ ସୁମରିଲୁ ଯେତେବେଳେ । ୩୯ ।
ଦଶନହେ ବଦାଶ ବକୋତ୍ତବ ତୋର ଗଳା
ଆଜହିଂ ବଧବାରେ ହୋଇଲ ଦୃଶିଲା । ୪୦ ।
ଜୟଦ୍ରଥ ବୋଇଲ ରେ ଭୀମା କଲୁ ମୋତେ ସାତବେଣ୍ଠି
ସେହି ଅଭିମାନେ ସାତ ବରଷ ଖଟିଲି ଧୂର୍ଜଟି । ୪୧ ।
ପ୍ରସନ୍ନେ ବର ମୋତେ ହଲେ ପଶୁପତି
ଯୁଧିଷ୍ଠିର ଭୀମ ନକୁଳ ସହଦେବ ଆଜ ଜିଣିମି ସବୁନ୍ତି । ୪୨ ।
ସନ୍ଦେହେ ମୋତେ ବର ହଲେକ ଦେବ ତ୍ରିଲୋଚନ
ଯେତେକ ମାନବ ସମରେ ମୁଂ ନ ଜିଣିମଇଂ ଅର୍ଜୁନ । ୪୩ ।
ହସିଣ ବଚନ ଯେ ବୋଲଇ ବୃକୋଦର
ଯେବେ ନଚଯ଼ୁ ପ୍ରାଣ ତୋର ହେବ ନାଶକର । ୪୪ ।
ଈଶ୍ୱର ସେବା ଯେବେ କଲୁ ଜୟଦ୍ରଥ
ଅର୍ଜୁନେ ଜିଣିମାକୁ କମ୍ପେ ନୋହିଲୁ ସାମରଥ । ୪୫ ।
ଜୟଦ୍ରଥ ବୋଇଲ ମୁଂ ଜିଣିମାକୁ ବୋଇଲି ଅର୍ଜୁନକୁ
ଈଶ୍ୱରେ ବୋଇଲେ ସମରେ ମୁଂ ସରି ନୋହଇ ଯେ ତାକୁ । ୪୬ ।
ଈଶ୍ୱରେ ଯହିଂ ତାକୁ ନୋହିଲେ ସାମରଥା
ମୁହିଂ ମାନବ ମାନ ଜିଣିମାକୁ କାହିଂ ହୋଇବ ଶକତା । ୪୭ ।
ଭୀମସେନ ବୋଇଲ ରେ ଯେମନ୍ତ ଯେବେ ଜାଣୁ
ଦୁର୍ଯୋଧନର ଆଗେ କମ୍ପେ ତୁ ନ ବଖାଣୁ । ୪୮ ।

---

୩୭।୧ ଦ୍ରୌପଦୀକ ହରିଲୁ ଯେ ତାଳ ବନେ । ( ଥ, ଓ, ନ )
୩୯।୧ ଗଳାଇ ଦେଲି ରେ ତେତେ ବେନି ଜାନୁ ତଳେ । (ଘ, ଢ, ଝ, ଅ)

ଈଶ୍ୱର ଦେବତା ଯାକୁ ସମରେ ନୋହେ ସମସର
ତାହାର ତୁଲେ ତୁମ୍ଭେ କେମନ୍ତେ ଦ୍ୱନ୍ଦ କର । ୪୯ ।
ଜୟଦ୍ରଥ ବୋଇଲା ମୋତେ ବର ଦିଲେ ହର
ତୋହୋର ମୃତ୍ୟୁ ଅଛି ଭୀମା ମୋହୋର ହାଥର । ୫୦ ।
ତୁମ୍ଭେମାନେ ମଲେ ରେ ଏକା ଥିବ ଅରଜୁନ
ଭୀଷ୍ମ ଦ୍ରୋଣେ ଆବୋରି ଯେଣିକେ ତାହାର ଜୀବନ । ୫୧ ।
ଭୀମସେନ ବୋଇଲା ଯେବେ ତୋତେ ବର ଦିଲେ ହର
ତୋହୋର ମୃତ୍ୟୁ ନିଶ୍ଚୟେ ମୋହୋର ହାଥର । ୫୨ ।
ଜୟଦ୍ରଥ ବୋଇଲା ଭୀମା କହଇ ମୁଂ ତୋତେ
ମୋହୋର ମରଣ କାହିଂ ନୋଉ ତୋର ହାଥେ । ୫୩ ।
ଲକ୍ଷେ ବଳ ଧନୁରେ ଯେ ନାରାଜ ପୂରୋଇ
ଏକା ପ୍ରହାରକେ ଯେବେ ମୋର ଶିର ହାଦେ ପାରିବୁ ଛିନାଇଂ ।୫୪
ସେ ମୁଣ୍ଡ ଛିଡ ଯେବେ ଭୂମିରେ ପଡଇ
ବାହୁଡ ଛିଡିଲା ମୁଣ୍ଡ ମୋର ଲଗିବ କନ୍ଧେ ଯାଇଂ । ୫୫ ।
କନ୍ଧରୁ ଛିଡ ମୁଣ୍ଡ ମୋର ଯେବେ ଭୂମିରେ ନ ପଡିବ
ଅନ୍ତରୀକ୍ଷ ମାର୍ଗେଣ ଉଡାଇ ଘେନି ଯିବ । ୫୬ ।
ମୋହୋର ପିତା ତପ କରୁଅଛି ଉତ୍ତରାଂକୁର ତୀର୍ଥେ
ସେ ମୁଣ୍ଡ ପଡିବ ଯାଇଂ ତାହାଂକର ହାଥେ । ୫୭ ।.
ଅଢ ପଦ୍ଲ ବାନ୍ଧି ବସି କରୁଅଛି ତପ ମୋର ତାତ
ମୁଣ୍ଡ ପଡନ୍ତେ ବୋଲିବ ହୋଉ ଭସ୍ମଂଗତ । ୫୮ ।
ପିତାର ଭସ୍ମ ବୋଇଲେ ଜଳିବ ମୋର ଶିର
ଏମନ୍ତେ ବାଗେ ମୋର ମୃତ୍ୟୁ ଶୁଣ ରେ ବୃକୋଦର । ୫୯ ।
ଭୀମସେନ ବୋଇଲା·ରେ ପ୍ରତକ୍ଷ୍ୟୋଂ ମୋହୋର ଦେଖ
ମୋହୋର ପ୍ରହାରେ ତୁ ହୋଇବୁ ନିରେଖ । ୬୦ ।
ଏମନ୍ତେ ବୋଲି ଗଦାବର ବୁଲାଇ ପିଟିଲା ରଥରେ
ଜୟଦ୍ରଥ ରଥୁଂ ଉଡଇଂ ପଡିଲା ଭୂମିରେ । ୬୧ ।

---

୫୦।୨ ତୁମ୍ଭ ସୁତା ଭାଇଂକର ମୃତ୍ୟୁ ମୋହୋର ହାଥର । ( ଘ, ନ )

ଗଦା ପ୍ରହାର ସହସ୍ରେ କଲାକ ଭୀମସେନ
ରଥ ଅଶ୍ୱ ସାରଥି ସବୁ ହୋଇଲାକ ଚୂର୍ଣ୍ଣ । ୬୨ ।
ଭୀମସେନ ଡାକଇ ରେ ଜୟଦ୍ରଥ ରହ ରହ
ହରବର ଯାଉଅଛୁ କାହିଁକି ଯୁଦ୍ଧ ମୋର ସହ । ୬୩ ।
ପଳାଇଲା ଜୟଦ୍ରଥ ନ ଗୃହେଁ ଲେଉଟି
ରଥୀମାନଙ୍କୁ ଭୀମସେନ ଗୋଡ଼ାଇଣ ପିଟି । ୬୪ ।
ମନ୍ଦର ପର୍ବତ ଜାଣିଣ ଭୀମସେନର କାପ୍ୟେ
ଗଦା ଦେଖି ଦଶନ୍ତି ପର୍ବତର ପ୍ରାପ୍ୟେ । ୬୫ ।
ଯେତେକା ପ୍ରହାରକେ ଦଶ ବଂଶ ରଥୀ ଭାଞ୍ଜି
ରଣରଙ୍ଗ ଧନ୍ଦୋଳ ପାଣ୍ଡବ ସମରେ ଗଲଗାଜି । ୬୬ ।
ନ ରହନ୍ତି ଯୋଦ୍ଧାଏ ପଳାବନ୍ତି ଡରେ
ବାରବର ଯୋଦ୍ଧାଏ ଯାଇଂ ଗଦା ପିଟନ୍ତି ଉପରେ । ୬୭ ।
ଗଦା ପଡନ୍ତେଣ ଭୀମ ମାତଇ ବାମଅଙ୍ଗ
ପଡ଼ି ଗଦା ମୁଦ୍ଗରେ ହୋନ୍ତି ସର୍ବ ଭଙ୍ଗ । ୬୮ ।
ଲୋହସାର ନିର୍ମାଣ ଯାହାର ଅଙ୍ଗ ଗୋଟି
ବାନ୍ଧନ୍ତେ ଶହସ୍ର ତାହାର ଦେହରେ ନ ଫୁଟି । ୬୯ ।
ଦୁକର୍ଣ୍ଣର ଭୁଲେ ଯେ ଦୁର୍ଦ୍ଧର୍ଷର ସମର
କାଳଅଗ୍ନି ଜାଣିଣ ଦଶନ୍ତି ଦେଖି ବାର । ୭୦ ।
ମୁଦ୍ଗର ବୁଲାଇ କୋପେ ବୋଲଇ ବିକର୍ଣ୍ଣ
ଆଜ ରେ ଦୁର୍ଦ୍ଧର୍ଷ ତୋର ପୂରିଲା ଜୀବନ । ୭୧ ।
ଗିରିବର ଗୁଡ଼ ଆଣେ କଲୁ ବୃକ୍ଷମାଳ
ଆପଣାର କୁଳେ ତୁ ରେ ଲଗାଇଲୁ କାଳ । ୭୨ ।
ଆଜ ତୁ ମୋହୋର ହାଥେ ନିହାଇଲୁ ନିଧନ
ପାଞ୍ଚି ତୋର ଆଜ ପୂରିଲା ନାଶକର ଯମ । ୭୩ ।
ସମର ମୁଖେ ଯେବେ ପଡ଼ଲୁ ମୋର ଆଗ
ତୋତେ ମାରି କୁରୁପଣ୍ଡର ଚଢ଼ାଇବି ମାନ ଭାଗ । ୭୪ ।

---

୭୦।୧ ( ଦୁକର୍ଣ୍ଣ—ବିକର୍ଣ୍ଣ ସ୍ଥାନରେ ସାରଳା କହିଛନ୍ତି )

ଦୁକର୍ଣ୍ଣର ପ୍ରତାପଂ ଦେଖିଣ ବୀରବର ଦୁର୍ଦ୍ଧର୍ଷ
ବୋଇଲା ରେ ଭାଇ ମୋହୋର ଆଗେ ପଡ଼ ହୋଇଲୁ ନିରେଖ ।୭୫।
ଗଦା ବୁଲାଇ ବୋଇଲା ସମ୍ଭାଳ ସମ୍ଭାଳ ରେ ଭାଇ
ଆକ୍ଷେପ ପ୍ରହାର କଲା ଗଦାବର ବୁଲାଇ । ୭୬ ।
ବଜ୍ର ପ୍ରହାରେ ଯେସନେ କମ୍ପଇ ବ୍ରହ୍ମାଣ୍ଡ
ଦୁକର୍ଣ୍ଣର ରଥ ଭଙ୍ଗ ହୋଇଲା ମସୀଗୁଣ୍ଡ । ୭୭ ।
ସଞ୍ଜୟର ନନ୍ଦନ ଯେ ପାଦଗଡ଼ ହୋଇ ଉଠି
ଦୁର୍ଦ୍ଧର୍ଷ ଉପରେ ନେଇ ଗଦା ଆକ୍ଷେପିଣ ପିଟି । ୭୮ ।
ଦୁର୍ଦ୍ଧର୍ଷର ଗଦା ଦୁକର୍ଣ୍ଣର ଗଦା ବେନି
ଝଣ ଝଣାନ୍ତ ହୋଇ ଯେ ଝଟିଲା ବହ୍ନି । ୭୯ ।
ଦୁହିଂକର ଗଦା ବାଜି ହୋଇଲାକ ମସୀଗୁଣ୍ଡା
ଗର୍ଜଇ ସମରେ ସେ କଉରବ କୁଳ ଖଣ୍ଡା । ୮୦ ।
କରନ୍ତି ସଂଗ୍ରାମ ସେ ଲଗନ୍ତି ମାଲବନ୍ଧେ
ମୁଟେଥ ମୁଥ ପ୍ରହାରନ୍ତି କରନ୍ତି ମହାଯୁଦ୍ଧେ । ୮୧ ।
ରୋମେ ରୋମେ ଗଳଣ ବହଇ ଶୋଣିତ
ଦୁହେଂ ପ୍ୟେକତ୍ତୁ ଦେହ ଜାଣିଣ ଜଉତ । ୮୨ ।
ଯାମଳା ବୃକ୍ଷ ଯେହ୍ନେ ନ ଯାଇ ବାରଣ
ଦୁର୍ଦ୍ଧର୍ଷ ଅପ୍ରାଞ୍ଜଳ୍ୟେ ପାଇଲାକ ରଣ । ୮୩ ।
ଦୁର୍ଦ୍ଧର୍ଷକୁ ମାଡ଼ ବସିଲା ଦୁକର୍ଣ୍ଣ ମହାବଳୀ
ହୃଦଗତେ ମାଡ଼ ବସିଲା ମାଲବନ୍ଧ ଓଳି । ୮୪ ।
ଡାହାଣ କରେ ମୁଥ ଉଞ୍ଚାଇ ବାମ କରେ ମାଡ଼ ବସିଲା ତାର କଣ୍ଠି
ବଦାରଇ ବକ୍ଷସ୍ଥଳ ରେ ମଠରୁ ପ୍ୟୁହ୍ନକ୍ଷଣୀ ଭାଇ ଗୋଟି । ୮୫ ।
ଦୁର୍ଦ୍ଧର୍ଷ ଅବସ୍ଥା ଦେଖିଣ ଶ୍ରୀଖଣ୍ଡୀ
ଧାଇଁ ଯାଇଁ ଦୁକର୍ଣ୍ଣର ଉପରେ ପିଟିଲା ଭୂଷଣ୍ଡୀ । ୮୬ ।
ଶିରରେ ପଡ଼ିଲା ତା ବଜ୍ରାଘାତ ଜାଣି
ଘାସ୍ୟେଣ ପଡ଼ିଲା ଯେ ଦୁକର୍ଣ୍ଣ ବୀରମଣି । ୮୭ ।
ସମରେ ପଡ଼ିଲା ବୀର ଉତ୍ତାନଶାୟୀ ହୋଇ
ଦୁର୍ଦ୍ଧର୍ଷ ସହର ଉଭା ହେଲା ତହିଂ । ୮୮ ।

---

୮୫।୨ ବଦାରବ ବକ୍ଷ ରେ ପଡ଼ାଲୁ ଭାଇଗୋଟି । (କ,ଖ,ଛ,ଝ,ଠ)

ଧାଇଂଣ କୁମର ଯେ ଧଇଲା କୃପାଣ
ଦୁକର୍ଣ୍ଣ ଉପରେ ନେଇ ପିଟିଲା ତତକ୍ଷଣ । ୮୯ ।
ବେନି ଖଣ୍ଡ ହୋଇଣ ପଡ଼ଲା ଦୁକର୍ଣ୍ଣ
ଜୟେ ଶଙ୍ଖ କଲେକ ଧୃଷ୍ଟ ଯେ ଦୁର୍ମନ । ୯୦ ।
ଅଗସ୍ତି ବୋଇଲେ ଶୁଣ ହେ ବଇବସ୍ଵତ ମନୁ
ବିଅମ୍ବିକର ଭୁଲେ ଯୁଦ୍ଧ କଲା ଅଭିମନ୍ୟୁ । ୯୧ ।
ସମରେ ଅନିବାରଣ ପଣ୍ଡୁ ରାଜାର ନାତି
ଏକେସର ହୋଇଣ ସେହୁ ଲକ୍ଷେ ବଳ ମନ୍ଥି । ୯୨ ।
ତିନି ସହସ୍ର ରଥୀ ସେ ବଧ କଲା ହେଲେ
ଦୁଷ୍ଟ ଅର୍ଜୁନ ପ୍ରାୟେ ହଣଇ ମହାରୋଳେ । ୯୩ ।
ଯେସନେକେ ସିନ୍ଧୁ ମନ୍ଥଇ ରାୟେ ବଳୀ
ତେସନେ ସଞ୍ଜାତ ବିରାଟ କୁମର ଶ୍ଵେତ ମହାବଳୀ । ୯୪ ।
କାଶୀ ରାଜାର ଭୁଲେ ସମର ବହୁତ
ଅନିବାରଣ ବାଣ ହାଣଇ ଯେ ବୀର ଶ୍ଵେତ । ୯୫ ।
ସହସ୍ରେକ ରଥୀ ଯେ ନିବାରିଲା ସମରେ
ଗଜ ଯୋଦ୍ଧା ଦୁଇ ସହସ୍ର ପଡ଼ିଲେ ସେହିଠାରେ । ୯୬ ।
ଅଶ୍ଵ ଯୋଦ୍ଧା ମାଇଲା ତିନି ସହସ୍ର ରଣେ
ଅକଳତ ସମରେ ଶ୍ଵେତ ଥାଠ ମନ୍ଥିଲା ଏକା ଜଣେ । ୯୭ ।
ପୁଣ ସହସ୍ରେ ନାରଜ ସେ ହାଣିଲା ଗଜରାଜ
ବାହ୍ଲିକ ମୋଦ୍ଧାର ସେ ରଥ ଗଲା ଭାଜି । ୯୮ ।
ରାଜାର ବିଅର୍ଥରେ ସଇନ ପଳାଇଲେ ଭାଞ୍ଜି
ଅନର୍ଯାପ ବାଣ ଯେ ହାଣଇ ଗଜରାଜ । ୯୯ ।
ପାଞ୍ଚ ସହସ୍ର ରଥୀ ସହସ୍ରେକ ଗଜ ଯୋଧୀ
ଏକା ଶ୍ଵେତ କୁମାର ଅନେକ ବାଣ ବିନ୍ଧି । ୧୦୦ ।
ବେନି ଅକ୍ଷୌହିଣୀକ ପାଦାତି ପଡ଼ିଲେକ ଏକକ୍ଷଣେ
କନାଉଜ ଦେଶର ସଇନ କେହି ନ ଉବୁରିଲେ ଏକ ଜଣେ । ୧୦୧

---

୯୧। ବିଗର୍ତ୍ତିର ଭୁଲେ ଯୁଦ୍ଧ କଲା ସୁଭଦ୍ରାର ତନୁ । (ଖ, ଠ)

୯୫। ନଦାପ ବାଣ ଯେ ବିନ୍ଧିଲା ବୀର ଶ୍ଵେତ । (କ, ଖ, ଘ, ଚ, ଠ)

ସାଧୁ ରେ ବସନ୍ତି ଯେ୍ୱ ତୋହୋର ମହାଂମା
ସଂଗ୍ରାମେ ଶୁଭିଲ ଶ୍ୱେତ କୁମାର ଗାରିମା । ୧୦୨ ।
କାର୍ତ୍ତିକେଶ୍ୱର ପ୍ରାୟେକ ତେଜ ତାର ଦଶି
ସାଧୁ ଶ୍ୱେତ ବୋଲଣ ଯେ ଓଟହାବଳ ଋଷି । ୧୦୩ ।
ଭୀଷ୍ମ ଅର୍ଜୁନର ସମର ଗରୁ ଘୋର
ବାଣ ଜାଲାବଳରେ ଯେ ଗଗନ ଅନ୍ଧକାର । ୧୦୪ ।
ଭୀଷ୍ମଂକର ସମର ଯେ କହିତେ ଅଗୋଚର
ଛତ୍ରୀ ହୋଇ କେହ ଉଭରନ୍ତା ନାହାଂନା ସ୍ତମ୍ଭର । ୧୦୫ ।
କାମପାଳ ବୋଲଣ କାଉଂଶ ଦେଶର ରଜା
ଶାର୍ଦ୍ଦୂଳ ବାହାନେ ସେ ପ୍ରତାପ୍ୟାଂ ମହାତେଜା । ୧୦୬ ।
ଯେକ କରେ କୋନ୍ତ ଆନରେକ କରେ କରାଞ୍ଜଳ
ଅନଙ୍ଗ ଅବତାର ପ୍ରାୟେ ରୂପ ଗୋଟି ଝଳ । ୧୦୭ ।
ଭୀଷ୍ମ ଅର୍ଜୁନଂକର ସମର ମଧ୍ୟ ସ୍ଥାନ
ଭୀଷ୍ମଂକର ଅଗ୍ରତେ ଆସି ଟେଗାଳିଲା ସେ ବହନ । ୧୦୮ ।
ଆରେ ଆରେ ଆତ୍ତୋ ଆତ୍ତୋ ସମରେ ନ ରହ ମୋର ଦୃଷ୍ଟି
ଅର୍ଜୁନର ଉପରେ ମ୍ୟଂ କରଇ ଶର ବୃଷ୍ଟି । ୧୦୯ ।
ଶୁଣ ହୋ ଗାଙ୍ଗେବ ବୋଇଲାକ କାମପାଳ
ଦଣ୍ଡେ ମାତ୍ର ତୁମ୍ଭେ ମୋର ସମର ସମ୍ଭାଳ । ୧୧୦ ।
ପଗୃର୍ତ୍ତଂ ପଗୃର୍ତ୍ତଂ ଯେ ଭୀଷ୍ମେ ହୋଇଲେ କୋପ ଅଗ୍ନି
ତକ୍ଷମୁନା ନାଗଜେ ବାନ୍ଧିଲେ କରେ ଟେନ । ୧୧୧ ।

---

୧୧୧।୨ "ତକ୍ଷମୁନା ନାଗଜେ ବାନ୍ଧିଲେ କରେ ଘେନ" ପରେ 'ଘ' ପୋଥିରେ ଭିନ୍ନ ପାଠ ।

କାଲାନଳ ଅଗ୍ନି ବାଣ ଧନୁରେ ସୃବୋଇ ।
ରୋଷଭରେ ଭୀଷ୍ମେ ଯେ ବାନ୍ଧିଲେ ଉହାଇ ।
ରୁଦ୍ରର ତେଜ ପ୍ରାୟେ ଦଶଇ ଅଗ୍ନି ଶର ।
ପ୍ରଚଣ୍ଡ ଅଗ୍ନି ପ୍ରାୟେନ ଘୋଟିଲା ସଂସାର ।

୧୦୭।୧ କରାଞ୍ଜଳ—ଏକ ପ୍ରକାର ଖଡ୍‌ଗ ବା ଛୁରିକା ।

ଯେସନେକେ ବିକାଶିଲା କାଳାନଳ ବହ୍ନିନ
ରୁଦ୍ରର ତେଜ ପ୍ରାପ୍ତେ ବିଶିଲେ ଶାନ୍ତନୁନନ୍ଦନ । ୧୧୨ ।
କାମପାଳ ଆଗ୍ନେୟ ଥିଲକ ଶାର୍ଦ୍ଦୂଳ
ଭୀଷ୍ମଙ୍କର ନାରାଚ ପଡିଲା ସେ ବକ୍ଷସ୍ଥଳ । ୧୧୩ ।
ଶିର ଛୁଟିଗଣ ସେ ହୋଇଲା ବେନି ଖଣ୍ଡ
କନ୍ଧରୁ ଛୁଟି ତଳେ ନ ପଡିଲା ତାର ମୁଣ୍ଡ । ୧୧୪ ।
କନ୍ଧର ଉପରେ ସେ ରହିଅଛି ତାର ଶିର
ସେ ମୁଣ୍ଡ ବୁଲୁଅଛି ସେ କୁମ୍ଭାର ଚକ୍ରର ଆକାର । ୧୧୫ ।
ଅଧରେ ଦନ୍ତ ଚାପି ବିକରାଳ ବେନି ଡୋଳା
ନାଚଇ କବନ୍ଧ ସେ ସମର କୁତୂହୋଳା । ୧୧୬ ।
ଭୀଷ୍ମ ଅର୍ଜ୍ଜୁନ ଦେଖି ଆଶ୍ଚର୍ଯ୍ୟ ବେନି ଯୋଧୀ
କୁତୂହୋଳ ଦେଖି ସମରେ ନୁଆରନ୍ତି ଶର ବିନ୍ଧି । ୧୧୭ ।
ଅଗସ୍ତିଙ୍କ ପୁଚ୍ଛା କଲେ ବଇବସ୍ୱତ ମନୁ
ଶିର ଛୁଟି କମ୍ପେ ଭୂମିରେ ନ ପଡିଲା ତାର ତନୁ । ୧୧୮ ।
କେବଣ ମହାତ୍ମା ସେ ଅଟଇ ପୁଣ ପୂର୍ବେ
ରଣ ରଙ୍ଗେ କବନ୍ଧ ନାଚଇ କମ୍ପେ ଯେବେ । ୧୧୯ ।
ଶୁଣ ହୋ ମହାରାଜା ବଦନ୍ତି ଅଗସ୍ତି
ସତ୍ୟ ଯୁଗର ରାଜା ବିଶ୍ୱାବସୁ ନାମେ ଦକ୍ଷ ହାଦେ ନୃପତି । ୧୨୦ ।
ବିଶ୍ୱାବସୁର ପୁତ୍ର ସେ ମାରକଣ୍ଡ ଦକ୍ଷ ବୋଲ
ବିଜବିଜେ କରଇ ତାର କରେ ଦୋହଣ କରାଞ୍ଜଳ । ୧୨୧ ।
କାର୍ତ୍ତିକ କୃଷ୍ଣ ପକ୍ଷ ଅମାବଇ ଦିନେ
ପଣ୍ଡିତବାର ସ୍ୱାତି ନକ୍ଷତ୍ର ବିଦ୍ୟମାନେ । ୧୨୨ ।
ବିଶ୍ୱାବସୁ ଦକ୍ଷେ ବୋଇଲେ ପୁତ୍ରକଇଁ ହକାରି
ବାବୁ ବନସ୍ତରୁ ଗଣ୍ଡା ଗୋଟିଏ ରେ ଆଣ ବେଗେ ମାରି । ୧୨୩ ।

---

୧୧୨ { ଜଳ ଉଠିଲା ବାଣ କାଳାନଳ ଅଗ୍ନି
ପର୍ବତ ସମାନେ ଲଗିଲା ବହ୍ନିନ । ( ଥ, ଞ, ନ )

୧୧୪।୧ ଗଣ୍ଡସ୍ଥଳ ଛୁଟିଗଣ ସେ ହୋଇଲା ବେନି ଖଣ୍ଡ । ( କ, ଘ, ଙ, ଟ, ଢ଼ )

୧୨୧।୧ ବିଶ୍ୱାବସୁର ପୁତ୍ର ସେ ମାରତଣ୍ଡ ଦକ୍ଷ ବୋଲ । ( ଟ, ନ )

କାମ୍ୟ ଶ୍ରାଦ୍ଧ ଆଜ କରିବା ପିତୃ କାର୍ଯ୍ୟ
ପିତାର ଆଜ୍ଞାଂଏଁ ଯେ ଚଳଇ ଆତ୍ମଜ । ୧୨୪ ।
ଅଶ୍ୱେକ ଅନ୍ୱେଷି ତାର କରେଣ କୋଦଣ୍ଡ
ବନ ଡୋହଳ ନିମନ୍ତେ ସେ ଚଳଇ ମାରକଣ୍ଡ । ୧୨୫ ।
ଅନେକ ବନ ଗିରି କନ୍ଦର ଆଦ୍ୟ କରି
ବନସ୍ତେ ଗଣ୍ଡା ଜୀବ ଯେ ନ ପାଇଲା ଲୋଡ଼ି । ୧୨୬ ।
ନିରାଶୀ ଉପବାସେ ଭ୍ରମନ୍ତେ ମହାଶ୍ରମେ
କେଶୀଗଙ୍ଗା କୂଳେ ଯାଇଂ ଭେଟିଲାକ ଆଶ୍ରମେ । ୧୨୭ ।
ବାଳଖିଲା ବଂଶେ ଯେ କୃପାଜଳ ମହାଋଷି
ଯାବତ କାଳେ ଗଣ୍ଡା ଗୋଟିଏ ସେ ଋଷି ଥାନ୍ତି ପୋଷି । ୧୨୮ ।
ଋଷି ଯାଇଛନ୍ତି ଜଳ ସନ୍ଧ୍ୟାକୁ ଯୁଗତେ
ଗଣ୍ଡା ଗୋଟି ଚରଇ ବୀର ସୁନ୍ଦର ପର୍ବତେ । ୧୨୯ ।
ଦେଖିଣ ଧାଇଂଲା ମାରକଣ୍ଡ ବୀରମଣି ।
ଗୋଡ଼ାଇ କରି ଖଣ୍ଡାଏ ଗଣ୍ଡାକୁ ପକାଇଲା ହାଣି । ୧୩୦ ।
କୁମାର ପ୍ରହାରନ୍ତେ ଗଣ୍ଡା ହେଲା ବେନି ଖଣ୍ଡି
ଧନୁହସ୍ତେ ସେ ବୀର କରିଣ ମୁଣ୍ଡ ଗଣ୍ଡି । ୧୩୧ ।
ସନ୍ଧ୍ୟା ସ୍ନାନ ସାରିଣ ଯାଉଛନ୍ତି ଯେ କୃପାଜଳେ
ଗଣ୍ଡା ଭାର ଦେଖିଲେ ସେ ଋଷି ମାରକଣ୍ଡ ବକ୍ଷ ସ୍ଥଳେ । ୧୩୨ ।
କୃପାଜଳେ ବୋଇଲେ ଯେତ ଆମ୍ଭର ଗଣ୍ଡା ଗୋଟି
କିମ୍ପାଇଂ ରେ ପାମର ଆଣିଲୁ ଯେହାର ମୁଣ୍ଡ କାଟି । ୧୩୩ ।
ବିଦ୍ୟାଧର ହୋଇଣ ରେ ଯେତେକେ ମନ୍ଦ ଅଛୁ
ମହାଭାରଥ ଯୁଦ୍ଧରେ ଭୀଷ୍ମ ତୋର ଶିର କାଟୁ । ୧୩୪ ।
ଭୀଷ୍ମ ଅର୍ଜୁନ ଦୁହିଂକର ସମରର ମଧ୍ୟେ
ଖେଚର ଭୂଚର ହୋଇ ଭୁ ନାଚରେ କବନ୍ଧେ । ୧୩୫ ।
ଯେ ମୋହୋର ଶାପ ତୋତେ ହୋଉ ରେ ପ୍ରତକ୍ଷ
ଶୁଣି ଗଣ୍ଡା ଭାର ପକାଇଲା ବିଶ୍ୱାବସୁ ବକ୍ଷ । ୧୩୬ ।

---

୧୨୯।୨ ଗଣ୍ଡା ଗୋଟି ଚରଇ ବୀରସୁର ପର୍ବତେ । ( ଘ, ଙ, ଠ, ଢ଼ )
୧୨୫।୨ ଡୋହଳ—ଦୋହଳ ।

ବିନସ୍ତ ହୋଇଣ ତହିଂ ମାରକଣ୍ଡେ କହଇ
ଯେ ଶାପରୁ କି ପ୍ରକାରେ ମୁକତ ହୋଇବି ମୁହିଂ । ୧୩୭ ।
କୁମାରକଇଂ ବୋଇଲେ କୃପାଜଳ ମହର୍ଷି
ଯେ ଗଣ୍ଡା ନେଇ ତୋର ପିତାକୁ ରେ ଦେସି । ୧୩୮ ।
ପାଆନ୍ତୁ ପିତୃଲୋକେ ଅମାବଇ ଶ୍ରାଦ୍ଧେ
ତୁ ଯାଇଂ ମୁକତ ହେବୁ ମହାଭାରଥ ଯୁଦ୍ଧେ । ୧୩୯ ।
ଶତେ ବାର ମହାଭାରଥ ଯୁଦ୍ଧ ପଡ଼ିଯନ୍ତେ
ଭୀଷ୍ମହିଂ ଶିର ଛେଦନ କରିବାକ ତୋତେ । ୧୪୦ ।
ପାଇବୁ ସଦଗତି ଶତେ ଜନ୍ମ ଅନ୍ତରେ
ବଶ୍ୱାବସୁକୁ ଭେଟ ପାଅ ଅମର ସ୍ୱର୍ଗପୁରେ । ୧୪୧ ।
ସେ ମାରକଣ୍ଡ ଦକ୍ଷ ଗଣ୍ଡା ଭାର ଘେନି ଗଲା
ପିତାର ଆଗରେ ଯାଇଂଣ ସକଳ କହିଲା । ୧୪୨ ।
ଗଣ୍ଡା ବନସ୍ତରେ ଦେବ ନ ପାଇଲ ବୁଲ
କୃପାଜଳ ମହର୍ଷିଂକ ଗଣ୍ଡା ମୁଂ ମାଇଲ । ୧୪୩ ।
କୋପେଣ ଶାପ ମୋତେ ଦିଲେ ମହର୍ଷି
ମଧ୍ୟ ସ୍ୱର୍ଗେ ଯାଇଣ ମୁଂ ହୋଇବ ମାନୁଷୀ । ୧୪୪ ।
ବୋଇଲେ ଭାରଥ ଯୁଦ୍ଧେ ପଶ ଅନମିତେ
କୋବନ୍ଧେ ନାଚିବୁ ତୁ ଭୀଷ୍ମଂକ ଶର ଘାତେ । ୧୪୫ ।
ଯେହ୍ନେମତେ ଶିରଚ୍ଛେଦ ହୁଅ ଶତେ ଘାନ୍ତ
ତେବେ ସେ ଆସିବୁ ନା ଅମର ବାରସ୍ୱସ୍ତି । ୧୪୬ ।
କୃପାଜଳ ମହର୍ଷି ଶାପ ଦିଲେ ପୂର୍ବେ
ସେ ମାରକଣ୍ଡ ଦକ୍ଷ କାମପାଳ ରାଯେ ଯେବେ । ୧୪୭ ।
ଭୀଷ୍ମଂକର ନାରାଚ ଘାତେ ସେ ମୁକତକ ପାଇଲା
ଅମର ବୃନ୍ଦାଅର୍କେ ସେ ବଶ୍ୱାବସୁଂକୁ ଭେଟିଲା । ୧୪୮ ।
ହେ ବୁଧ ଜନମାନେ ହୃଦଗତେ ଯେହ୍ନା ଭାବ
ଯେହୁଟି ମହାଭାରଥ ଯୁଦ୍ଧ ସମର ସମ୍ଭବ ଦୁଲଭ । ୧୪୯ ।

---

୧୪୫।୨ କବନ୍ଧରୁ ଶିର ତୋର ଛୁଟ ରେ ଭୀଷ୍ମଂକ ଶର ଘାତେ । ( କ,ଛ,ଡ,ଅ)

କନ୍ଧରୁ ଶିର ଛିଣ୍ଡି କବନ୍ଧ ନାଚନ୍ତି ଯେତେବେଳେ
ତାହାଙ୍କ ତାଳରେ କଲେ ନୃପତି ସକଳେ । ୧୫୦ ।
ନାରଦ ବାଦନ୍ତେ ସେ ପାଣ୍ଡବ ଧନୁର୍ଜ୍ୟେ
କବନ୍ଧ ନାଚନ୍ତେ ତାହାଙ୍କ କଳକ ତାଳରେ । ୧୫୧ ।
ସମରେ ଛିଦ୍ର ପାଇ ଭୀଷ୍ମ ମହାରଥୀ
ଦଶ ସହସ୍ର ଯୋଦ୍ଧା ପାଡିଲେ ତତକ୍ଷଣାନ୍ତ । ୧୫୨ ।
ରଥୀ ହାଥୀ ପାଦାନ୍ତ ଅଶ୍ୱମାନ ପଡିଲେ ମହୀ ଲୋଟି
ସମର ଭୂଇଁରେ ରକତ ମାଂସେ କର୍ଦ୍ଦମ ହୋଇ ଉଠି । ୧୫୩ ।
ତ୍ରେତୟା ଯୁଗରେ ରାମ ରାବଣ ଯୁଦ୍ଧ ଯେ ହୋଇଲା
ଲଂକାର ଅଷ୍ଟ ଚଣ୍ଡୀ ଶୋଣିତ ପାନ କଲା । ୧୫୪ ।
ସେ ଆସି ମିଳିଲେ ଯେ କୁରୁକ୍ଷେତ୍ର ମଣ୍ଡଳେଣ
ଶୋଣିତ ମେଦ ମାଂସେ ଯେ କରନ୍ତି ଭକ୍ଷଣ ।
ରଥ ଗଜ ଅଶ୍ୱ ଯୋଦ୍ଧା ପଡନ୍ତି ଯେତେ ବେଳେଣ । ୧୫୫ ।
ଜୟେଶଙ୍ଖ ଧ୍ୱନି କଲେ ଭୀଷ୍ମ ମହାରଥୀ
ରଥ ବାହୁଡାଇ ନେଲେ ପଶ୍ଚିମ ମୂରତି । ୧୫୬ ।
ଅର୍ଜୁନ ବୋଇଲା ଦେବ ଶୁଣିମା ଜଗନ୍ନାଥେ
ଜୟଶଙ୍ଖ ବଜାଇ ଭୀଷ୍ମେ ସମର ଭଗ୍ନ କଲେକ କେମନ୍ତେ । ୧୫୭ ।
ଗୋବିନ୍ଦେ ବୋଇଲେ ହୋ ଶୁଣ ଫାଲଗୁନ
ଭୀଷ୍ମେ ପାଡିଲେ ତୋର ଅନେକ ସଇନ । ୧୫୮ ।
ରଥର ବାମ ଡାହାଣେ ଗୃହାଂସି ବୀର ପାଥ
ପାଦାନ୍ତ ଅସକ୍ଷେପ ଛଡିଲେ ଦଶ ସହସ୍ର ରଥ । ୧୫୯ ।

---

୧୫୧।୨ କବନ୍ଧ ନାଚନ୍ତେ ସେ କଲ ଭସେ ତାଳସେ । ( ଙ, ଚ, ଥ )
୧୫୧।୨ "କବନ୍ଧ ନାଚନ୍ତେ ତାହାଙ୍କ କଳକ ତାଳସେ ।" ପାଠ ପରେ ଅଧିକା ପାଠ
ସମରେ ଦେଖିଲେ ଯେ ଭୀଷ୍ମ ମହାଯୋଧୀ
କବନ୍ଧକୁ ଦେଖି ଅର୍ଜୁନ ଶର ଯେ ନ ବାନ୍ଧ ।
ଧନୁରେ ନଉ ସହସ୍ର ଭୀଷ୍ମେ ତକ୍ଷଣେ ବାନ୍ଧଲେ
ଦଶ ସହସ୍ର ଯୋଦ୍ଧା ଭୀଷ୍ମେ ତକ୍ଷଣେ ପାଡିଲେ । ( ଥ, ଝ, ନ )

ଗୃଢ଼ ସହସ୍ର ଗଜ ଯୋଦ୍ଧା ଅଶ୍ୱ ଯୋଦ୍ଧା ସହସ୍ର ତିନ
ପାଦାନ୍ତ ପଡ଼ିଲେ ପାଞ୍ଚ ଅହ୍ନିବ୍ରତ ସଇନ । ୧୬୦ ।

ଦେଖିଣ ବୁଦ୍ଧି କଣ୍ଟି ନ ଫୁରଇ ସବ୍ୟସାଚୀ
ତ୍ରଇଲୋକ୍ୟ ମଧେ ହରି ପାଇବ ମୁଂ ବନ୍ଧୁ ବାଚ । ୧୬୧ ।

ବନ୍ଧୁ ସୋଦର ମାନନ୍ତ ମରାଇଲି ସମସ୍ତ
ଆବର ଜୀବନେ ମୋର କିସ ପୁରୁଷାର୍ଥ । ୧୬୨ ।

ନିର୍ଲ୍ଲଜ ଆତ୍ମା ମୋର ଯାଇକନା ଫାଟି
ଲଲଟେ କରଦେଇ ରୋବଇ କିରୀଟୀ । ୧୬୩ ।

ତ ଯେ ଜଗୁଜୀବନ ବାନ୍ଧବ ଜଗନ୍ନାଥେ
ନିରେଖ ହୋଇଲ ନାଥ ତୋହୋର ଦ୍ୱେଖନ୍ତେ । ୧୬୪ ।

ହରି ରଣେ ଜୟେ କରି ଯେ ଗଲେ କଉରବେ
ପଶିଲେ ହସ୍ତିନାପୁରେ ବଜାଇ ସମ୍ଭବେ । ୧୬୫ ।

ଗୋବିନ୍ଦେ ବୋଇଲେ ତୁ ନ ରୋବ ଫାଲଗୁନ
ଦେଖ ହୋ ଧନୁର୍ଜୟେ ପାଣ୍ଡବ ସଇନ । ୧୬୬ ।

ତୁ ଯେ ଜଣେହେଂ ଜିଣି ନୁଆରିଲୁ ରଣେ
ଶ୍ୱେତ ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମନେ ଅଭିମନ୍ୟୁ ଜଣେ ଜଣେ । ୧୬୭ ।
ଅନେକ ଯୋଦ୍ଧାୟେ ରଥୀମାନନ୍ତ ପାଡ଼ିଲେ
ଦେଖ ହୋ ଧନୁର୍ଜୟେ ବୋଲି ଗୋବିନ୍ଦେ ଦେଖାଇଲେ । ୧୬୮ ।

---

୧୬୭ । "ତୁ ଯେ ଜଣେହେଂ ଜିଣି ନୁଆରିଲୁ ରଣେ ।" ପାଠସରେ ଙ, ଥ, ନ ରେ ଅଧିକା ପାଠ ।

ତୁ ଯେ ଜଣକୁ ଜଣେ ଜିଣି ନୁଆରିଲୁ ରଣେ
ଅସଂଖ୍ୟ ସଇନ ମାଇଲେ ଶ୍ୱେତ ଶ୍ରୀଖଣ୍ଡୀ ଧୃଷ୍ଟ ଯେ ଦ୍ୟୁମନେ ।
ଅଭିମନ୍ୟୁ ସଙ୍ଗତେ ଯେ ଉତ୍ତର କୁମାର
କରୁଥାଟେ ପଶି ଅନେକ କଲେକ ପ୍ରହାର ।
ଅନେକ ରଥ ଗଜ ଅଶ୍ୱ ଯୋଦ୍ଧା ପାଡ଼ିଲେ
ଦେଖ ହୋ ଧନୁର୍ଜୟେ ବୋଲି ଗୋବିନ୍ଦେ ଦେଖାଇଲେ ।

କଉସ୍ତୈବ ଥାଠରେ ପାଥ ପଷିଣ ଦେଖନ୍ତି
ତାଳେକ ଉସ୍ତର୍ଗେ ରୁଧିର ବହଇ ତିନ ଯୋଜନ ପ୍ରନ୍ତ । ୧୬୯ ।
ଦେଖିଣ ସାନନ୍ଦ ଯେ ବୀର ଫାଲଗୁନ
ଦେବଦତ୍ତ ଶଙ୍ଖ ଧ୍ୱନି କଲେ ଚକ୍ରପାଣି । ୧୭୦ ।
ଅତ୍ୟନ୍ତ ସାନନ୍ଦେ ଯୋଦ୍ଧାଏ ପ୍ରବେଶ ଭୁବନେ
ସ୍ନାହାନ ଭୋଜନ ସେ କଲେକ ଯୋଦ୍ଧାମାନେ । ୧୭୧ ।
ଅନେକ ଉତ୍ସବ ସେ ହସ୍ତିନା ପ୍ରଶସ୍ତେ
ଭୀଷ୍ମଙ୍କୁ ମୁରସର ବୋଲନ୍ତି କୁରୁନାଥେ । ୧୭୨ ।
ସଞ୍ଜୟର ଅଗ୍ରତେ ପୁଚ୍ଛଇ ଧୃତରାଷ୍ଟ୍ର
ଭୀଷ୍ମଙ୍କର ପ୍ରସାଦେ ମୋର ପାରଯିବ କଷ୍ଟ । ୧୭୩ ।
ଶାନ୍ତନୁର ନନ୍ଦନ ମୋତେ ସ୍ନେହେକ ସଦଯେ
ତାହାର ପ୍ରସାଦେ ମୁଂ ହୋଇବି ନିର୍ଭୟେ । ୧୭୪ ।
ଅନେକେ ପାଡଲେ ଯେବେ ଦଶ ସହସ୍ର ରଥୀ
ଦଶଦିନେ ଆଉ ପାଣ୍ଡବେ କି ଥିବେ ବ୍ରନ୍ତ । ୧୭୫ ।
ନାରାୟଣଙ୍କ ବଚନକୁ କଲେକ ପ୍ରତିଆଶେ
ପାଣ୍ଡବେ ନାଶ ଗଲେଟି କୃଷ୍ଣର ବିଶ୍ୱାସେ । ୧୭୬ ।
ଅନେକ ପ୍ରଶଂସା ଭୀଷ୍ମଙ୍କୁ କଲା କୁରୁରାୟେ
ଯେବେ ଆସିଲା ମୋହୋର ସମ୍ପଦର ସମୟେ । ୧୭୭ ।
ସଞ୍ଜୟେ ବୋଇଲା ଶୁଣିମା ଧୃତରାଷ୍ଟ୍ର
ମୋର ବଚନରେ ତ ତୋତେ ଅଛଇ ବଡ କଷ୍ଟ । ୧୭୮ ।
ଭୀଷ୍ମଙ୍କୁ ପ୍ରଶଂସା ତ କରୁଛ ବିଦ୍ୟମାନେ
ଦୁଇ ଅକ୍ଷୌହିଣୀ ଯୋଦ୍ଧା ପାଡଲେ ତିନଦିନେ । ୧୭୯ ।

---

୧୬୯।୨ "ତାଳେକ ଉସ୍ତର୍ଗେ ରୁଧିର ବହଇ ତିନ ଯୋଜନ ପ୍ରନ୍ତ"
ପାଠପରେ ଥ, ଙ୍ଗ, ନ ରେ ଭିନ୍ନ ପାଠ ।
ଦେଖିଣ ସାନନ୍ଦ ହନୁମନ୍ତର ସାଙ୍ଗ
ଯେ ଯାହା ଭୁବନେ ଯୋଦ୍ଧାଏ ପ୍ରବେଶ ହେଲେ ଯାଇଂ ।
୧୭୬।୧ ନାରାୟଣଙ୍କ ବଚନକୁ କଲେକ ସାହାସେ । ( ଛ, ଧ )

ଆହୋ ଧୃତରାଷ୍ଟ୍ର ଦୁର୍ଦ୍ଦକ୍ଷ ତୋହୋର ସୁତ ପଶିଲା ଶରଣ
ନବ ସହସ୍ର ଯୋଦ୍ଧା ସେ ମାଇଲା ଯେକା ଜଣ । ୧୮୦ ।
ଦ୍ରୁପଦର ନନ୍ଦନ ଶିଖଣ୍ଡୀ ମହାରଥୀ
ପାଞ୍ଚ ସହସ୍ର ଯୋଦ୍ଧା ସେ ମାଇଲା ଯେକା ଘାନ୍ତ । ୧୮୧ ।
ବିରାଟର ନନ୍ଦନ ଶ୍ୱେତ ନାମେ ବାଳ
ବାର ସସ୍ର ରଥୀ ପାଡିଲା ଯେକାବେଳ । ୧୮୨ ।
ସମରେ ପଶିଲେ ଧୃଷ୍ଟ ସେ ଦ୍ୟୁମନେ
ତେର ସହସ୍ର ଯୋଦ୍ଧା ସେ ପାଡିଲେ ଶର ମୁନେ । ୧୮୩ ।
ଅର୍ଜ୍ଜୁନର ନନ୍ଦନ କୁମାର ଅଭିମନ୍ୟୁ
ଆଠ ସହସ୍ର ରଥୀ ପାଡିଲା ବାହୁତ ହାଦେ ତନୁ । ୧୮୪ ।
ହିଡମ୍ବିକାର ନନ୍ଦନ ଘଟ ସେ ଉତ୍କଟ
ପାଞ୍ଚ ଅକ୍ଷୌହିଣୀକ ଯୋଦ୍ଧା ପାଡିଲା ମୃରାଟ । ୧୮୫ ।
ଅସଂକ୍ଷେପ ସଇନ ତୋର କଳଣା ନ ଯାଇ
କେ କେଣେ ପଡିଲେକ ଅନ୍ତ କଲା ନାହିଂ । ୧୮୬ ।
ସଞ୍ଜୟେ ବଚନ ଶୁଣି ରାଜା ଧୃତରାଷ୍ଟ୍ର
ହରଷ ଛାଡି ବସୁଧ୍ୟ ଚଢେ ପାଇଲା ବଡ କଷ୍ଟ । ୧୮୭ ।
ସଞ୍ଜୟେ ବୋଇଲା ଶୁଣ ଭୀମସେନର ମହିମା
କୋଡିଏ ସହସ୍ର ଯୋଦ୍ଧା ପାଡିଲା ଯେକା ଭୀମା । ୧୮୮ ।
ଯୁଦ୍ଧେଷ୍ଟି ଦେବେ ମାଇଲେ ତିନ ସସ୍ର ଯୋଧୀ
ପଞ୍ଚ ସହସ୍ର ନକୁଳ ସହଦେବ ସାଧି । ୧୮୯ ।
ସଞ୍ଜୟର ମୁଖରୁ ଯେସନେକ ବଚନ ଶୁଣି
ବେଭଇ ଅନ୍ଧରାଜା ହରାମ୍ୱରୀ ଜାଣି । ୧୯୦ ।
ସ୍ନାହାନ ଭୋଜନ ସେ ସାରଣ ଶାୟୂନନ
ଶର ସନ୍ଧାନେ ଆଧାନେ ଯେ ପାହିଲା ରଯୂଣୀ । ୧୯୧ ।
ଦଣ୍ଡ ସାଜ ବୋଳଣ ଶୁଦ୍ଧିଲା ଚହଲ
ରଥ ଗଜ ଅଶ୍ୱ ପାଦାନ୍ତ ସାଜନ୍ତ ସମଦଣ୍ଡ ବଳ । ୧୯୨ ।

---

୧୯୦।୨ ଝୋବଇ ଅନ୍ଧରାଜା ନମାକ୍ଷୀ ଜନ ଜାଣି । ( ଅ, ଉ, ନ )

ବାଜଇ ଭାରତୂର ଝମକ ନିଶାଣ ଯେ ଭେରୀ
ଭାର ମର୍ଦ୍ଦଳ ବଜ୍ରଘୋଷ କାହାଳୀ ମହୁରୀ । ୧୯୩ ।
ଉଭରନ୍ତି ପାଟହ୍ନେ ଉଡନ୍ତି ଆଲମ୍ବେ
ତର୍ଜନ୍ତି ଗର୍ଜନ୍ତି ଭାରେ ସମର ସମ୍ଭବେ । ୧୯୪ ।
ଅନେକ ଅଲଂକାର ଘେନି ସେ ମାନଚନ୍ଦ୍ରଶ୍ରୀ
ବଜସ୍ତେ ମାନଗୋବନ୍ଦ ଭୀଷ୍ମଂକର କଣ୍ଠ । ୧୯୫ ।
ଅନେକ ଅଲଂକାର ଭୂଷଣ ସର୍ବକାୟେ
ଦିଶନ୍ତି ଗାଙ୍ଗେୟ ତ୍ରିପୁରାନ୍ତକ ପ୍ରାୟେ । ୧୯୬ ।
ଭୀଷ୍ମଂକ ପ୍ରତାପ୍ୟଂ କାଳାନଳ ରୂପ ଦେଖି
ଭୟେଣ ବିରପାଟଳେ ବୁଜିଲେ ବେନି ଆଖି । ୧୯୭ ।
ଶ୍ରୀଭୁଜେ ଗାଙ୍ଗେୟ ଯେ ଟେକିଣ କୋଦଣ୍ଡ
ଗୁଣ ଘୋଷ ନାଦେ ଯେ କଂପିଲା ବ୍ରହ୍ମାଣ୍ଡ । ୧୯୮ ।
ଜୟେ ଶଙ୍ଖନାଦ ଯେ କରଣ ମହାରଥୀ
ମକର ମାସ ଶୁକଳପକ୍ଷ ଚତୁର୍ଥୀର ତିଥି । ୧୯୯ ।
ଉତ୍ତରଭଦ୍ରୋ ନକ୍ଷତ୍ର ଯେ ଶୁଭ ଲଗ୍ନ ବେଳା
ପରମାନନ୍ଦ ପୁରୁଷ ସମରେ ଶସ୍ତ୍ର କଲା । ୨୦୦ ।
ହେଥୁ ଅନନ୍ତରେ ଯେ ପାଣ୍ଡବଂକର କଥା
ଦେଖିଣ ବିଷାଦ ଯୁଦ୍ଧେଷ୍ଠି ସୈନ୍ୟଂକର ଅବସ୍ଥା ।୨୦୧ ।
ପାଣ୍ଡବଂକ ସୈନ୍ୟବଳ ଭାଳନ୍ତି ବିଷାଦେ
ଭୀଷ୍ମଂକର ସମରେ କେ ସମ୍ମୁଖେ ମିଳୁ ନାଦେ । ୨୦୨ ।
ବିରାଟର ନନ୍ଦନ ଯେ ଶ୍ୱେତ ମହାରଥୀ
ଯୁଦ୍ଧେଷ୍ଠିଂକ ପାଦତଳେ ବିନୟ କରନ୍ତି । ୨୦୩ ।
ସ୍ୱାମୀ ଆଜର ଯୁଦ୍ଧେ ସେନାପତି କର ମୁକୁ
ମାରିବ କଉରବେନ୍ଦ୍ର ଜିଣିମି ଗାଙ୍ଗେୟଂକୁ । ୨୦୪ ।

---

୨୦୪।୨ "ମାରିବ କଉରବନ୍ତ ଜିଣିମି ଗାଙ୍ଗେୟଂକୁ" ପାଦାଂଶ ପରେ
ଘ ଓ ଝ ରେ ଅଧିକା ପାଠ—
ଶୁଣିଣ ମଉନ ଯେ ହୋଇଲେ ଧର୍ମର ନନ୍ଦନ ।
କହଇ ଚଇତନ ଶୁଣ ହୋ ମନୁ ରାଜନ ।

ଧୃତରାଷ୍ଟ୍ର ପଚାରିଲେ ଶୁଣ ହେ ସଞ୍ଜୟେ
କାଲିର ସମର ହେବ କେବଣ ଉପାୟେ । ୨୦୫ ।
ତୁ ମୋହୋର ମନ୍ତ୍ରୀ ଭୂତ ଭବିଷ୍ୟତ ଗ୍ୟାଂତା
ଗତ ଆଗତ କଥା ଜାଣିବାକୁ ତୁହି ସେ ଶକତା । ୨୦୬ ।
ଜୟେ କି ଅଜୟେ ମୋତେ କାଲିର ସମରେ
ଶୁଣିଲେ ଶରଧା ମୋର ହୋଉଛି ହୃଦରେ । ୨୦୭ ।
ଇଦଂ ବାକ୍ୟ ଶୁଣି ବଦୟନ୍ତି ମନ୍ତ୍ରୀ ଯେ ସଞ୍ଜୟେ
ଶୁଣ ହୋ ସାବଧାନେ ଅମ୍ବିକା ତନୟେ । ୨୦୮ ।
ତୋହୋର ଆଗରେ ମୁଂ ସେହୁ ବଖାଣିବି
ଗତ ଯୁଦ୍ଧର ବାରତା ଥୋକାଏ କହିବି । ୨୦୯ ।
ବିରାଟର ନନ୍ଦନ ଯେ ଶ୍ୱେତ ନାମ ବୋଲି
ସେହୁ ସେନାପତି ହୋଇବ ଯେ ପାଣ୍ଡବଙ୍କ ବଳେ କାଲି । ୨୧୦ ।
ବହୁତ ଯୁଦ୍ଧ ସେ ହୋଇବ ଧୃତରାଷ୍ଟ୍ର
ଅନେକ ଅପ୍ରାଣୟେ ହୋଇବ ତୋର ଥାଟ । ୨୧୧ ।
ମହାରାଷ୍ଟ୍ର ଦେଶର ରାଜା ନାମ ବୀରବାହୁ
ତିନି ଅହିବୃତ ଯୋଦ୍ଧା ଘେନି ପଡିବ ରଣେ ସେହୁ । ୨୧୨ ।
ଅରବିନ୍ଦ ଦେଶର ରାଜା ପରମାନନ୍ଦ
ସାତ ସହସ୍ର ପାତ୍ରଦଣ୍ଡ ଘେନି ପଡିବ କାଲି ଯୁଦ୍ଧ । ୨୧୩ ।
ଦକ୍ଷିଣ କୋଶଳ ରାଜା ନାମ ରିପୁଭଙ୍ଗ
ନବ ଲକ୍ଷ ଯୋଦ୍ଧା ଘେନି ପଡିବ ରଣରଙ୍ଗ । ୨୧୪ ।
କଳିଙ୍ଗ ଦେଶର ରାଜା ନାମ ବଜ୍ରକେତୁ
ପଞ୍ଚଷଠୀ ସହସ୍ର ଯୋଦ୍ଧା ତୁଳେ ତାକୁ ହୋଇବ ମୃତ୍ୟୁ । ୨୧୫ ।
ବିତୋଲାକ୍ଷ ଦେଶର ରାଜା ବୀର ମଙ୍ଗଳନଭମି
ପାଞ୍ଚ ଲକ୍ଷ ଯୋଦ୍ଧା ତୁଳେ ପଡିବ ରଣ ଭୂମି । ୨୧୬।
କନାଉଜ ଦେଶର ରାଜା କରୁଣାକର
ତିନି ସହସ୍ର ପାତ୍ରଦଣ୍ଡ ତୁଳେ ହୋଇବ ଅପହାର । ୨୧୭ ।
କାଞ୍ଚଣ ଦେଶର ରାଜା ଅଟଇ ଚନ୍ଦ୍ରଧ୍ୱଜ
ନବ ସହସ୍ର ଯୋଦ୍ଧା ତୁଳେ ସମରେ ପଡିବ ମହାରାଜ । ୨୧୮ ।

ମଦ୍ରର ଦେଶର ରାଜା ଅଟଇ ବିରୂପାକ୍ଷ
ତାର ଭୁଲେ ଯୋଦ୍ଧା ପଡ଼ିବେ ନବଲକ୍ଷ । ୨୧୯ ।
ଯେତେକ ଯୋଦ୍ଧାଂକ ଭୁଲେ ଅନେକ ପାଦାନ୍ତ
ଅସଂଖ୍ୟେୟ ସଇନ ପଡ଼ିବେ ଅନେକ ପାଶଦଣ୍ଡ ନୃପତି । ୨୨୦ ।
ପଞ୍ଚଦଶ ଘଡ଼ି ପର୍ଯ୍ୟନ୍ତେ କାଳ ହୋଇବାକ ସମର ମହାଗାଢ଼
ପାଞ୍ଚ ଯୋଜନ ପରିଯନ୍ତେ ମାନଗୋବିନ୍ଦଇ ପଡ଼ିବ ପଯୋଡ଼ । ୨୨୧ ।
ତୁ ଯେ ପଚ୍ଛରିଲୁ ରାଜା ସଞ୍ଚପି କହିଲି
ଏସନେକ ସମର ଜାଣ ହୋଇବାକ କାଳି । ୨୨୨ ।
ଶୁଣ ମନୁ ରାଜନ ହୋ ସଞ୍ଜୟେର ମହିମା
ସତ୍ୟଯୁଗେ ସେହୁ ସେ ଶୂଦ୍ରେକ ନାମେ ବ୍ରହ୍ମା । ୨୨୩ ।
ଧୃତରାଷ୍ଟ୍ର ହୃଦୟକୁ ସଞ୍ଜୟ ଦିବ୍ୟ ଚକ୍ଷୁ
ଗତ ଆଗତ ଜାଣନ୍ତା ତୁ କର୍ମେ ନ ଗଚ୍ଛୁ । ୨୨୪ ।
ଯେସନେକ ସମର କଥା କହନ୍ତେ ସଞ୍ଜୟେ
ଗାଲବର ନନ୍ଦନ ସୁଗ୍ୟାମୀ ଅଟଇ ସ୍ୱୟଂଯେ । ୨୨୫ ।
ଶ୍ୱେତର ପ୍ରତାପ୍ୟାଂ ସହୁଂ ଶୁଣିଲେ ଦେବ ଧର୍ମେ
ସେନାପତି କରଣ ଆରମ୍ଭିଲେ ରଣେ । ୨୨୬ ।
ଅନେକ ଅଳଂକାର କଲେକ ଭୂଷଣ
ଚିତ୍ରିତ ବିଦାରଣ ମଣି ହୃଦରେ କଲେକ ଆଭରଣ । ୨୨୭ ।
ଶ୍ରୀଭୁଜେ ବାହୁଟି ରତ୍ନ ମୁକୁଟ ଶିରେ ଶୋଭା
ହିରଣ୍ୟକର ଭୁଲେ ହୀରା ବିରାଜଇ ଅତି ଆଭା । ୨୨୮ ।
କୃଷ୍ଣ ଯେହ୍ନେ ଅବତାର ପାରିଜାତକ ହରଣେ
ତେସନେକ ଶୋଭାବନ ମେ ଦିଶଇ ଶ୍ୱେତ ମହା ରଣେ । ୨୨୯ ।
ଅର୍ଜୁନ ବୋଇଲେ ଯୁଧିଷ୍ଠିରଂକ ମୁଖ ଗୁହିଂ
ଯେଉଁମାକୁ ସେନାପତି କରନ୍ତେ କିଛି ପିରୋଜନ ନାହିଂ । ୨୩୦ ।

---

୨୨୪।୨ { ଗତାଗତ କଥା ତୁ କି ନ ଜାଣି ଯେ ଅଛୁ । ( ଙ, ଥ, ନ )
{ ଗତ ଆଗତ କଥା ସେ ଜାଣଇଂ କିଛୁ କିଛୁ । ( ଝ, ଣ )

୨୩୦।୨ ପିରୋଜନ—ପ୍ରୟୋଜନ ।

ଗୋବିନ୍ଦେ ବୋଇଲେ ତୁ କିଛି ନ ଜାଣୁ ଫାଲଗୁନ
ଅନେକ ଧଂସିଲାନ୍ତ ଯେତେ କଉରବ ସଇନ । ୨୩୧ ।
ଯେବେ ଯେବେ ସେନାପତି ହୋଇଥାନ୍ତା କାଲି
କଉରବେ ବୃତ୍ତି ଯାଇ ଥାଆନ୍ତେ କ କାଲି ଗୃଳି । ୨୩୨ ।
ଆପଣେ ରଥରୁ ଯେ ଓହ୍ଲାଇଲେ ଜଗନ୍ନାଥେ
ଶ୍ରୀଭୁଜେ ମୁକୁଟ ବାନ୍ଧିଲେ ଶ୍ୱେତ କୁମାରର ମାଥେ । ୨୩୩ ।
ଶ୍ୱେତକୁମାରକଇଂ ବହୁତ ପୁରୁଷାର୍ଥ କଲେ ଦେବ ହରି
ଶ୍ୱେତର ଶ୍ରୁମୁରେ ଘନ ଘନ ଶଙ୍ଖ ପୁରି । ୨୩୪ ।
ଅନେକ ମଙ୍ଗଳେ ଯେ ଖଟନ୍ତି ବନିତା
ଦେବଗଣେ ଦୁନ୍ଦୁଭି ଯେ ବଜାନ୍ତି ଅପ୍ରମିତା । ୨୩୫ ।
ଶ୍ୱେତ ପ୍ରଣପତ୍ୟ ଶ୍ରୀକୃଷ୍ଣଂକ ପଦ୍ମପାଦେ
କଉରବେବଲ ଜିଣିମି ସ୍ୱାମୀ ତୋହୋର ପ୍ରସାଦେ । ୨୩୬ ।
ମୋହୋର ଶ୍ରୁମୁରେ ରହି ଯୁଦ୍ଧ କରନ୍ତୁ ଭୀଷ୍ମ ଦ୍ରୋଣେ
ରଥ ବାହିବାକୁ ଦେବୁ ସାରଥି ହାଦେ ଜଣେ । ୨୩୭ ।
ଗୋବିନ୍ଦଂକ ଶ୍ରୁମୁରେ ଉଭା ହୋଇଛି ସାତ୍ୟକୀ
ବୋଇଲେ ସାରଥିପଣେ ଯାଅ ଶ୍ୱେତର ଡାହାଂକ । ୨୩୮ ।
କେଶବଂକ ଆଜ୍ଞାଂଯେ ସେ ଚଳିଲି ମାଧବ
ମୁଂ ଯେବେ ଶ୍ୱେତର ରଥେ ସାରଥି ହୋଇବ । ୨୩୯ ।
ମୋହୋର ଶ୍ରୁମୁରେ ସେ ଯେ କରିବ ସତ୍ୟବ୍ରତ
ସାଂଗ୍ରାମେ ନ ଜିଣିଲେ ନ ବାହୁଡଇ ମୋର ରଥ । ୨୪୦ ।
ଶୁଣିଣ ସାନନ୍ଦ ଯେ ସୁଦେଷ୍ଣାର ବଳା
ସାତ୍ୟକୀର କଣ୍ଠେ ନେଇ ଲମ୍ବାଇଲି ରତ୍ନମାଳା । ୨୪୧ ।
ମୋହୋର ସାରଙ୍ଗେ ସାରଥି ପାଇଲଇଂ ତୋତେ
ତ୍ରଇଲୋକ୍ୟେ ସାମରଥ ଅଛି କେହ୍ନ ମୋତେ । ୨୪୨ ।
ତୁହି ଯେବେ ସାରଥି ପଣେ ସାମରଥ
କଉରବେ ସଇନ ଯେ ହୋଇବେ ସାଂଗତ । ୨୪୩ ।
ସାତ୍ୟକୀକ ସମ୍ବୋଧନା କରି ବସିଲି ଯାଇଂ ରଥ
ଶୁଦ୍ଧ ସ୍ଫଟିକ ଜାଣି ବିରାଜଇ ଶ୍ୱେତ ରଥ । ୨୪୪ ।

ଶ୍ୱେତ ଶଙ୍ଖ ଗୋକ୍ଷୀର ଯେ କାମପାଳ ଗୈଖାର ଅଶ୍ୱ ଗୃର
ଆପଣେ ନେଇ ଅଶ୍ୱ ଯୋଚଲେ ମଧୁହାସ୍ତ । ୨୪୫ ।
ବୀରବେଶ ଅଳଂକାର ହୋଇଣ ବସନ୍ତି
ସନ୍ନିଧ୍ୟେ ପ୍ରଲମ୍ବିତ କଲା ଧର୍ମରାଯ୍ୟେ ସୁଦେଷ୍ଣି । ୨୪୬ ।
ଶତ ସହସ୍ର ଦଣ୍ଡବତ ହୋଇଲା ପରଣାମି
ସର୍ବ ଶୁଭେ ଆଗ୍ୟାଂ ମୋତେ ଦିଅ ଦେବ ସ୍ୱାମୀ । ୨୪୭ ।
ଅନେକ କଲ୍ୟାଣ ବାଞ୍ଛା କଲେ ଧର୍ମ ସୁତେ
କଉରବେନ୍ଦ୍ର ଜିଣିଣ ବାବୁ ଅଭିମାନ ଫେଡ ମୋତେ । ୨୪୮ ।
ଦଧିବାବନ ସୁମରି ଚଳ ଯା ଅନକୂଳେ
ରଥରେ ବଜେ କର ବାବୁ ସୁଦେଷ୍ଣାର ବାଳେ । ୨୪୯ ।
ରଥେ ବଜେ କଲା ସତ୍ଯଂ ସୁଦେଷ୍ଣାର ବାଳ
ଚଣ୍ଡ ପୁଚ୍ଛେ ଆଗେ ମିଳ ପଢନ୍ତି ମଙ୍ଗଳ । ୨୫୦ ।
ଆଗରେ ଅର୍ଜୁନ ନନ୍ଦଘୋଷ ରଥ ସାଜ
କୃଷ୍ଣ ସାରଥି ରଥେ ଶୋହଇ ଗୃର ବାଜୀ । ୨୫୧ ।
ଚଳଇ ରଥ ଗଗନେ ଭୂମିପଥ ତେଜ
ଶେଣା ପକ୍ଷୀ ପ୍ରାୟେ ଯେ ଉଡନ୍ତି ଗୃର ବାଜୀ । ୨୫୨ ।
ନନ୍ଦଘୋଷ ବାମ ଡାହାଣେ ଧୃଷ୍ଟଦ୍ୟୁମନ ଶ୍ରୀଖଣ୍ଡୀ
ଶ୍ୱେତର ଭୁଲେ ଉତ୍ତର ଶଙ୍ଖ ରଥ ମଣ୍ଡି । ୨୫୩ ।
ଚଳନ୍ତି ହୟେବର ବାଘସ ମହା ତେଜ
ଆକାଶ କ୍ଷେପନ୍ତି ସେ ପବନ ଗତି ବାଜୀ । ୨୫୪ ।
କାଳେବର ଗଦା ଘେନି ବ କୋଦର ରଣମନ୍ତା
ବାଉନ ବାଉନ ଗଦା ଘେନି ପାଣ୍ଡବ ସାମରଥା । ୨୫୫ ।
ଭୀମସେନର ଭୁଲେ ଅଛି କୁମାର ଦୁର୍ଦ୍ଦକ୍ଷ
ଅଞ୍ଜନପ୍ରଭ ବୀର ଘଟ ଯେ ଉତ୍କଟ ଭୀମସେନ ବଚ୍ଛ । ୨୫୬ ।
ଶ୍ୱେତ ହାଥୀ ଯୈକ ଆରୋହିଣ ମଧ୍ୟେ ଧର୍ମରାୟେ
ଦ୍ରୁପଦ ବରାଟ ଜମାଉଷ୍ଟ ଯେ ବଜପ୍ୟେ । ୨୫୭ ।

---

୨୫୬ { ଭୀମର ପିଠି ରକ୍ଷା କୁମର ଦୁର୍ଦ୍ଦକ୍ଷ ନାମ
{ ଅଞ୍ଜନପ୍ରଭ ଆବର ଘଟ ଯେ ଉତ୍କଟ । ( ଥ, ଞ, ନ )

ଅନେକ ସମ୍ଭରେ ବାଜନ୍ତେ କଉଡ଼ଗେବ ସଇନ
ଆକାଶ ଉଚ୍ଛୁଳୁଛି ମୁଖରବ ଧ୍ୱନି । ୨୫୮ ।
ସମଦଣ୍ଡ ଘେନ ହୋଇଲେ ନିକଟ
କୁରୁ ପାଣ୍ଡବ ବଳ ସବୁ ହୋଇଲେକ ଭେଟ । ୨୫୯ ।
ଭୀଷ୍ମଙ୍କର ଗୁମ୍ଫରେ ଯେ ରହିଛନ୍ତି କେ ପାରି
ଯେସନେକେ ଗଜ ଯୂଥ ଆବୋରଇ କେଶରୀ । ୨୬୦ ।
କାଳାନଳ ଜାଣିଣ ଭୀଷ୍ମଙ୍କର ଚକ୍ଷୁ ବେନି
ଦେଖିଣ ତରସିଲେ ଓହୋବଳ ସଇନ । ୨୬୧ ।
ତର୍ଜନ୍ତି ଗର୍ଜନ୍ତି ଯେ କଉଡ଼ଗେବ୍ ବୀରେ
ରେ ରେ କାର ନାଦେ ପଶିଲେ ସମରେ । ୨୬୨ ।
ବଢିଲା ରଣ ରଙ୍ଗ ଭୀଷ୍ମ ଅରଜୁନ
କର୍ଣ୍ଣର ଭୂଲେ ଯୁଝଇ ବୀର ଭୀମସେନ । ୨୬୩ ।
ପଞ୍ଚଷଠି ଯୋଦ୍ଧା ଘେନଣ ଦ୍ରୁପଦେ
ଆଗେ ଓଗାଳଲେ ଭାରଦ୍ୱାଜଙ୍କର ସୁତେ । ୨୬୪ ।
ସୋମଦତ୍ତ ମହାରଥୀ ପ୍ରତଗ୍ୟାଂ କଲା ଥାଠେ
ତାହାର ଗୁମ୍ଫରେ ଆସି ମିଳଲେ ବରାଟେ । ୨୬୫ ।
ବରାଟର ନନ୍ଦନ ଶ୍ୱେତ ମହାରଥୀ
ଶୁଦ୍ଧ ସଫ୍ଟିକ ରଥେ କେଶରୀ ଲାଙ୍ଗୁଡ଼ ଉଡ଼ାନ୍ତି । ୨୬୬ ।
ଫରହର ଉଡନ୍ତି ପାତାଙ୍ଗ ଶବ୍ଦକତା ବରଧୂ
ଓହୋବଳ ପ୍ରଶଂସନ୍ତି ଜୀବନ ତୋର ସାଧୁ । ୨୬୭ ।
ଶ୍ୱେତର ପ୍ରତଗ୍ୟାଂ ଦେଖିଣ ହାଦେ କୃପ ଆଗୃର୍ଯ୍ୟ
ଶ୍ୱେତର ଗୁମ୍ଫରେ ଗୁଣ ଧୃଷ୍ଟ ନାଦ କରି ବଜେ । ୨୬୮ ।
ଶ୍ୱେତ କୁମରକଇଂ ଦେଖି କୃପ ଆଗୃର୍ଯ୍ୟ କୋପ ମୂର୍ତ୍ତି
ପାଞ୍ଚ ସାତ ନାରାଜ ଧରି ଯେ ବନ୍ଧଲେ ତତ୍ତତି । ୨୬୯ ।
ପଞ୍ଚବଂଶ ନାରାଜ ବନ୍ଧଲେ କୃପ ମହାରଥୀ
ଚଳନ୍ତି ନାରାଜ ଯେ କାଳାନଳ ମୂର୍ତ୍ତି । ୨୭୦ ।

---

୨୬୯ { କୃପ ଆଗୃର୍ଯ୍ୟ ଦେଖିଲେ ଶ୍ୱେତ କୋପ ମୂର୍ତ୍ତି ।
{ ଶ୍ୱେତ କୁମରକୁ କୋପେ ନାରାଜ ବନ୍ଧଲେ ତିନି ପାନ୍ତି ।
(କେତେକ ପୋଥିର ପାଠ)

ପୁଣି ପଞ୍ଚତ୍ରିଂଶ ନାରାଚ ଯେଣେ ସେ କୃପେ
ଆକ୍ଷେପି ବିନ୍ଧିଲେ ଶ୍ୱେତ କୁମରଙ୍କୁ ମହା ଦର୍ପେ ।୨୭୧ ।
ହୃଦସିତ କୁମାର କୃପଙ୍କ ବାଣ ଦେଖି
ବିନ୍ଧିଲା ନାରାଚ ସେ ଉପ୍ରୋଧ ଉପେକ୍ଷି । ୨୭୨ ।
ଶ୍ୱେତ ବୋଇଲା ମୁଂ ଜାଣିଛି ତୁମ୍ଭ ବଳ
ବିନ୍ଧୁଅଛି ନାରାଚ କୃପେ ସମ୍ଭାଳ ସମ୍ଭାଳ । ୨୭୩ ।
ପଶ୍ଚରୁ ପଙ୍କରୁ ସେ ବିରାଟର ସୁତ
ହାବୋଡା ଶରେକ ସେ ମାଇଲା ମହାମନ୍ତ୍ର । ୨୭୪ ।
ଅନିବାରଣ ଶର ସେ ଘୋର ନାଦେ ପଡିଲା
କୃପଙ୍କର ରଥ ସେ ଭାଞ୍ଜି ଚୂର୍ଣ୍ଣ ହୋଇଗଲା । ୨୭୫ ।
ଲୋହଦଣ୍ଡ ରଥ ସେ ହୋଇଲା ମସୀଗୁଣ୍ଡା
ସମସ୍ତେ ପ୍ରଶଂସନ୍ତି ଶ୍ୱେତ ସମରେ ରଣ ଚଣ୍ଡା । ୨୭୬ ।
ଆରେକ ରଥ ଆରୋହି ସେ ସୁଦେବଙ୍କର ନାତି
ଶତେକ ନାରାଚ ସେ ବିନ୍ଧିଲେ ତତକ୍ଷଣାନ୍ତି । ୨୭୭ ।
ଦେଖଇ ଶ୍ୱେତ କୁମର ନାରାଚ ପଡନ୍ତେ
ପଞ୍ଚାଶ ଶର ବାବଲ ବିନ୍ଧିଲା କୋପ ଚିତ୍ତେ । ୨୭୮ ।
ଯେସନେକ ଆକାଶୁ ପଡଇ ନିର୍ଘାତ
ପୁଣ ଭଗ୍ନ ଗଲା ସେ କୃପଙ୍କର ରଥ । ୨୭୯ ।
ପାଦଗତି ହେଲେ କୃପ ଭରୋଇମଲ୍ଲ ମହାରଥୀ
ସମର ଉପେକ୍ଷି ସେହୁ ସେ ହୋଇଲେ ବିରଥୀ । ୨୮୦ ।
କୋପେଣ ଧାଇଁଲେକ ସୁଦେଷ୍ଣାର ବଳା
କରେଣ କୁମର ଯେନ ଅଛି ଖଣ୍ଡା ଫଳା । ୨୮୧ ।
ବାହୁର ତେଜ ପ୍ରାପ୍ତେ ସେ ବିରାଟ କୁମର
ଆକ୍ଷେପି କେଶ ଯାଇଂ ଧଇଲା କୃପ ଆଚାର୍ଯ୍ୟଙ୍କର । ୨୮୨ ।
କୋପେଣ କୁମର ସେ ମାରନ୍ତେଣ କୃପାଣ
ଦେଖିଲା ହୃଦଗତେ ତାର ଶ୍ରୀବତ୍ସ ଲାଞ୍ଛନ । ୨୮୩ ।

---

୨୭୮ । ୨ ପଞ୍ଚମ ଶର ବାବଲ ବିନ୍ଧିଲା ବାହୁ ଦର୍ପେ । ( ଚ, ଥ, ନ, ଓ )

ବେଦ ବିପ୍ର ଦେଖିଣ ଯେ ଗୁଣ୍ଡଳ ତାର ବାଳ
ବୋଇଲା ବ୍ରାହ୍ମଣ ଙ୍କୁ ହୋ ବିପ୍ର ଯେ ଗୃଣ୍ଡାଳ ।୨୮୪ ।
କେବଣ ଭବିଷ୍ୟ ଥାପିଚ ତୋହୋର ପୂର୍ବେ
ବ୍ରାହ୍ମଣ ହୋଇ ସମରେ ପଶୁ କର୍ମେ ପୂବେ । ୨୮୫ ।
ଶ୍ୱେତ ବୋଇଲା ପଲା ଯା ସମରେ ନ ଥାଅ ହାଦେ କୃପ
ବ୍ରାହ୍ମଣ ନୋହିଲେ ସିନା ଖଣ୍ଡନ୍ତ ତୋର ଦର୍ପ । ୨୮୬ ।
ବିରଥୀ ହୋଇ ପଳାଯେ ଅନନ୍ତ ଋଷିଂକ ଶିଷି
ଦେଖିଲେ ଅଶତ୍ଥମା ଯେ ରଥେକ ଚଢି ଆସି । ୨୮୭ ।
କୃପ ବୋଇଲେ ବାବୁ ରେ ମୋହୋର ଦୁଖ ଦେଖ
ହୋଇଲ ବିରଥୀ ଯେ ପାଇଲେ ମୋତେ ରଖ । ୨୮୮ ।
କୃପଂକର ଭୁଲେ ପାଞ୍ଚ ସହସ୍ର ଯୋଧୀ
ଅନୁକ୍ଷଣେ ନାଗଜ ଶ୍ୱେତ ଆବୋରଣ ବନ୍ଧି । ୨୮୯ ।
ଯେସନେ ପଂକ୍ତୁ ଫଳ ପଡନ୍ତ ବାତ ଘାତେ
ଯୋଦ୍ଧାଂକର ଶିର ଛିଣ୍ଡ ଲୋଟଇ ଭୂମି ଗତେ । ୨୯୦ ।
ଯେକା ନାଗଜକେ ପଡନ୍ତ ଶତେ ଶତେ ରଥୀ
ରକତରେ କର୍ଦ୍ଦନ ଯେ ହୋଇଲ ବସୁମତୀ । ୨୯୧ ।
ପାଞ୍ଚ ସହସ୍ର ରଥୀ ନୋହିଲେ କେହି ଉଭା
ବିଚିତ୍ର ସମର କରଇ ଅସମ୍ଭବା । ୨୯୨ ।
ତାରାଗଣ ମଧ୍ୟେ ଯେହ୍ନେ ଚନ୍ଦ୍ରମା ପାଯେ ଶୋଭା
ଦେଖି କରି ଅଶତ୍ଥମା ଠେକିଲା ରଥ ପ୍ରଭା । ୨୯୩ ।

---

୨୮୫।୨ ଯେତେ ବିଦ୍ୟାବନ୍ତ ହୋଇ ତୁ ସଂଗ୍ରାମେ ପଶୁ ଯେବେ । (ଥ,ମ,ଓ,)
୨୮୫।୨ "ବ୍ରାହ୍ମଣ ହୋଇ ସମରେ ପଶୁ କର୍ମେ ଯେବେ ।"
ଏହି ପାଠ ପରେ ଥ, ନ, ଓ ରେ ଭିନ୍ନ ପାଠ—
ଯେବେଣ ସମର ତୁମ୍ଭେ କଲ ହେ ସମ୍ଭବେ ।
ବ୍ରାହ୍ମଣ ଶହସ୍ର ଧାରୀ ହୋଇଲ କର୍ମେ ଯେବେ ।
କୃପଂକ ଚରଣେ ପ୍ରଲମ୍ବିତ କରଇ ଶ୍ୱେତ ବୀର
ଯାଅ ହେ ବ୍ରାହ୍ମଣେ ତୁମ୍ଭେ ସମର ନ କର ।
୨୮୭।୨ ଦେଖିଣ ଅଶତ୍ଥମା ରଥେକ ଛୁଡ ଆସି । ( କ, ନ, ଥ, ଙ )

ସହସ୍ରେକ ଶର ଯେ ଛେଦନ୍ତ ବୀର ଦ୍ରୋଣି
ଶ୍ୱେତର ଉପରକୁ ବିନ୍ଧିଲେ ବେଗେ ହାଣି । ୨୯୪ ।
ଜଳୁଜଳା ପୋକ ଯେସନେ ଉଡନ୍ତ ଗଗନେ
ଶୂନ୍ୟ ଭେଦ ଶରମାନେ ଯେ ପଡନ୍ତ ଅନୁକ୍ଷଣେ । ୨୯୫ ।
ଅଶ୍ୱତ୍ଥାମାଂକୁ ପ୍ରଶଂସା କରଇ ବିରାଟି
ପ୍ରଶଂସା କରି ନାରାଚ ବିନ୍ଧିଲା ଚଉଷଠି । ୨୯୬ ।
ଅଶ୍ୱତ୍ଥାମାର ଶର ଛେଦିଲାକ ଶ୍ୱେତ
ପୁଣିହିଂ ଅଶ୍ୱତ୍ଥାମା ବିନ୍ଧିଲେ ଶସ୍ତ୍ର ଅଶ୍ୱବ୍ରତ । ୨୯୭ ।
ରଥୀଂକ ଅଶ୍ୱବ୍ରତେ ସାରଥୀଂକ ଅଶ୍ୱବ୍ରତେ
ବୃହ ଅଶ୍ୱଂକୁ ବିନ୍ଧିଲେ ନାରାଚ ଶତେ ଶତେ । ୨୯୮ ।
ମହାଛନ୍ଦୀ ଅଶ୍ୱତ୍ଥାମା ସମରେ ମହାଯୋଧି
ଅପ୍ରମିତ ନାରାଚ ସେ ଶ୍ୱେତକଇଂ ବିନ୍ଧି । ୨୯୯ ।
ସାରଥୀ ଅଶ୍ୱଂକର ଯେ ନିଧନ ଦେଖି ଶ୍ୱେତ
ମେଲ୍ହି ପୁଣ ନାରାଚ ବିନ୍ଧିଲା ପାଞ୍ଚ ଅଶ୍ୱବ୍ରତ । ୩୦୦ ।
ବେନି ଶର ପଚତାଳ ହେଲା ମହାବଳ
ବଦନ ଉଠିଲା ଜାଣି ତରଣ ସଞ୍ଜାଳ । ୩୦୧ ।
ପୁଣି ଶତେ ବାଣ ଛେଦନ୍ତ ଶ୍ୱେତ ବୀର
ଧାମ୍ୱେ ଭଗ୍ନ ଗଲା ଅଶ୍ୱତ୍ଥାମା ରଥବର । ୩୦୨ ।
ଆନ ରଥେ ଯାଇଂ ଆରୋହିଲେ ଦ୍ରୋଣି
ଶତେକ ଗଜ ଯୋଦ୍ଧା ଗୋଡାଇ ଶ୍ୱେତ ହାଣି । ୩୦୩ ।
ଗଦା ମୁଦ୍ଗର ଯେ ଗ୍ରୁରଜ ଶାବେଳ ମୂଷଳୀ
ଚେଳ, ଚନ୍ଦ, କୋନ୍ତ, ଲଂକଆ ନାରାଚ ତେଜ ଝଳ । ୩୦୪ ।
ଶଂଖ, ଶ୍ୱେତ, ଉତ୍ତର, କୁମାର ଅଭିମନ୍ୟୁ
ସମରେ ସୈକ ଯୋଗ ହେଲେ ବୃହ ତନୁ । ୩୦୫ ।
ଯେସନେ ଅନଳ ଦହଇ କିରଣରାଶି
ହୁଅନ୍ତ କୁରୁବଳ ସମରେଣ ଖ୍ୟାମି । ୩୦୬ ।

---

୩୦୬ { ଯେସନେ ଅନଳ ଦହଇ ପଞ୍ଚଶିଖା
{ ଦହନ୍ତ କୁରୁବଳ ସଇନ ଅଲେଖା । ( ଙ, ଝ, ଘ, ଚ, )

ଯେ ଗୁରୁ ଦିଶିଯେ ଧାମନ୍ତ ଯେକମୂର୍ତ୍ତି
କି ଅବା କାଳାନଳ ପ୍ରଚଣ୍ଡ ବହନ୍ତି । ୩୦୭ ।
ଅଗ୍ନିଶିଖା ନାରାଚ ଯେ ବନ୍ଧନ୍ତ କରେ ଧରି
ଉଠଇ ବହ୍ନିକ ଯେ ପ୍ରଚଣ୍ଡ ଜ୍ୱାଳାବଳୀ । ୩୦୮ ।
ନାରାଚ ଜାଳାରେ ଯେ ନ ବହଇ ପବନ
ପଳାବନ୍ତ ଯୋଦ୍ଧାମାନେ ଯେ ତ୍ରସ୍ତ ହୋଇଣ । ୩୦୯ ।
ଦଣ୍ଡ ଭଗ୍ନ ଦେଖି ଧାମନ୍ତ ଦ୍ରୋଣ ଗୁରୁ
ଦେଖିଣ ଅଭିମନ୍ୟୁ ଓଗାଳିଲା ଦୂରୁଂ । ୩୧୦ ।
ଦ୍ରୋଣଗୁରୁ ଦେଖିଲେ ଯେ ଅର୍ଜୁନର ଶିଷି
ସମରେ ଅଭିମନ୍ୟୁ ଅନଙ୍ଗ ପଞ୍ଚାନ୍ତର ଦିଶି । ୩୧୧ ।
ଝଳକନ୍ତ ରତ୍ନ ଯେ ବଇଡୂର୍ଯ୍ୟ ମଣି
ରଥରେ ବିରାଜନ୍ତ ତିମିର ବିଦାରଣ ଜାଣି । ୩୧୨ ।
ଶ୍ରୀଭୁଜେ କୁମାରର ଅନଙ୍ଗ ସାରକ୍ଷେଣ ଧନୁ
ଦ୍ରୋଣେ ପ୍ରଶଂସା କଲେ ସାଧୁ ସାଧୁ ରେ ଅଭିମନ୍ୟୁ । ୩୧୩ ।
ଯେତେକ ପ୍ରତଗ୍ୟାଂ ତୋର ଚଉଦ ବରଷୁ
ବିଦ୍ୟା ନ ସାଧିଣ ତୁ ସମରେ କଂପେ ପଶୁ । ୩୧୪ ।
ଆହୋ ହୋ ଆହୋ ହୋ ବାଳୁତ ତୋତେ ଆମ୍ଭର ସମର ନ ଶୋହଇ
ଅଗ୍ୟାନ କାଳେ ତୋତେ ସମର ନ ଗଛଇ । ୩୧୫ ।
ଅଭିମନ୍ୟୁକୁ ଛାଡି ଦ୍ରୋଣେ ରଥ ଦେକଗଲେ ଆଗସରି
ଶ୍ୱେତର ଗୁମ୍ଫରେ ଦ୍ରୋଣେ ମିଳିଲେ ଧନୁ ଧରି । ୩୧୬ ।
ପ୍ରତଗ୍ୟାଂ ସାଛା କରି ସେ ସୁଦେଷ୍ଣାର ବଳା
ଦ୍ରୋଣକଇଂ ନାରାଚ ବିନ୍ଧିଲା ଛନିସ୍ତ ଅଗ୍ରୁର୍ଗଳା । ୩୧୭ ।

---

୩୦୭।୧ ଯେ ପଞ୍ଚରଥୀ ଧାମନ୍ତ ଅତବେଗ ଯେକ ଦୃଷ୍ଟି । (ଙ, ଝ, ଡ)
୩୧୧।୨ ସମରେ ଅଭିମନ୍ୟୁ ଅଙ୍ଗାରପନ୍ନଙ୍ଗ ପ୍ରାୟେ ଦିଶି । (ଘ,ଙ,ଝ,ଉ,ଚ,ଖ,ନ)
୩୧୫ { ଅ.ହେ ହୁଅ ବାଳୁତ ତନଯେ ବୟସ ତୋର ଯେମତ ନୋହଇ
ଅଗ୍ୟାନ କାଳେ ତୋତେ ସମର ନ ଶୋହଇ । (କ, ଟ)
ବାଳୁତ ଅଗ୍ୟାନ ତୁ ରେ ଯୁଦ୍ଧେଣ ନ ମାରି
ବସ୍ତ୍ରୋହ କଲେ ତ ଯଶ ଧର୍ମ ହାରି । (ଊ, ଥ, ନ) }

ନାଗଜେ ବଶନ୍ତ ଯେହ୍ନେ ଜଳଦ ମେଘମାଳ
କରେଣ ପ୍ରେକ ଧନୁ ଧରିଅଛଇ ଉଦ୍ଧତ ଆଦ୍ରିାବଳୀ । ୩୧୮ ।
ଅଶସ୍ତମା ବରଥି ଦ୍ରୋଣଗୁରୁ ଦେଖି
ବନ୍ଧଲେ ନାରାଜନ୍ତ ଗୁରୁ ଶ୍ୱେତକଇଂ ଓପ୍ରୋଧ ଉପେକ୍ଷି । ୩୧୯ ।
ଅଶସ୍ତମା ଭୁଲେ ପାଞ୍ଚଶତ ରଥୀ ଥିଲେ
ଶ୍ୱେତର ପ୍ରହାରେ ଶତେ ଅଶି ଯୋଦ୍ଧା ଯେ ପଡିଲେ । ୩୨୦ ।
ଦୁର୍ଦ୍ଧର୍ଷ ମାଇଲ୍ ଯେ ବେନ ସସ୍ତ୍ର ରଥୀ
ଅଭିମନ୍ୟୁ ମାଇଲ୍ ଯେ ନବଶତ ରଥୀ ହାଥୀ । ୩୨୧ ।
ପ୍ରେତେକ ଯୋଦ୍ଧା ଯେ ପଡିଲେନ ସମରେ
ଦ୍ରୋଣ ଶ୍ୱେତ ବେନ ଲଗିଲ୍ଲ ସମର ମହାଘୋରେ । ୩୨୨ ।
ସହସ୍ରେ ଶର ଶ୍ୱେତ ବନ୍ଧଲ ଦ୍ରୋଣଂକୁ
ପୁଣି ଚ୍ଚରଶତ ବନ୍ଧଲ ଯେ ଚ୍ଚର ଅଶ୍ୱଂକୁ । ୩୨୩ ।
ହାଥର ବ୍ୟଗ୍ର ତାର ଦେଖିତ ନୁଆର
ଦ୍ରୋଣ ବନ୍ଧଲେ ନାରାଜ ସହସ୍ରେ ଯେ ଚ୍ଚର । ୩୨୪ ।
ପୁଣ ପଞ୍ଚଷଠି ନାରାଜ ଧନୁରେ ପୂରେଇ
ଆଛେଦି ଗୁରୁ ଯେ ବନ୍ଧଲେ ଭୁହାଇ । ୩୨୫ ।
ଅଷ୍ଟବ୍ରତେକ ନାରାଜ ଯେ ବନ୍ଧଲେ ଲୋହଶର ତୀକ୍ଷମୁନା
ଶ୍ୱେତର ନାରାଜେ ସେ ଭେଦଲ ଦ୍ରୋଣଂକର ସେହ୍ନା । ୩୨୬ ।
ଭରଦ୍ୱାଦଶଂକ ନନ୍ଦନ ଯେ ପରଶୁରାମ ବରଦାତା
ପ୍ରେ ଭୂଅମଣ୍ଡଳେ କେ ଅଛଇ ଜଣନ୍ତା । ୩୨୭ ।
ପାଣ୍ଡବେ କଉରେବେ ଯାହାର ବିଦ୍ୟାଚରଣ ଚ୍ଚର୍ଣ୍ଣୀ
ସେ ଗୁରୁ ସ୍ମୁଖରେ ହେବେ ଯୁଝଇ ଶ୍ୱେତ ରଥୀ । ୩୨୮ ।
ଅବସରେ ନାରାଜ ବନ୍ଧିଲେ ଦ୍ରୋଣେ ଛେନି
ନଦାଘ କାଳେ ଯେହ୍ନେ ପ୍ରଚଣ୍ଡ ବହ୍ନିନି । ୩୨୯ ।
ହାଥର ବ୍ୟଗ୍ର ଗତି ଦେଖିତ ନ ପାରି
ଧୋଣରୁ ନାରାଜ କାଢି ବନ୍ଧିଲେ ରୋଷ ଭରି । ୩୩୦ ।

---

୩୨୯।୨ ସଂସାର ଦହନେ ଯେହ୍ନେ ପ୍ରଳୟ ବହ୍ନନ । (ଥ, ଞ, ନ)

ଯେସନେ କୁଧାରେ ଗଗନ ଅନ୍ଧକାର
ତେସନେକେ ଗଗନ୍କୁଂ ଜାଣି ପଡନ୍ତି ଦ୍ରୋଣଂକର ଶର । ୩୩୧ ।
ଶ୍ୱେତ କୁମାର ଯେ ପୁଣ ଅଦ୍ଭୁତ୍ୟଇ
ଦେଖିଣ ଶ୍ୱେତବୀର ଅର୍କଶର ଆଚ୍ଛେଦି ବନ୍ଧଇ । ୩୩୨ ।
ଦ୍ରୋଣଂକର ଶର ଯେ ଅଟଇ ତମିର
ଶ୍ୱେତର ବାଣେ ସେ ହୋଇଲେ ଅପହାର । ୩୩୩ ।
ଶ୍ୱେତର ନାରାଜ ସନ୍ଧ୍ୟଂ ପୃଥିବୀ ଯାକ ଘୋଟି
ଦ୍ରୋଣେ ପ୍ରଶଂସା କରନ୍ତି ସାଧୁ ସାଧୁ ରେ ବୋଲି । ୩୩୪ ।
ବାରୁଣାଶର ଯେନ ଦ୍ରୋଣ ଗୁରୁ ବେଗେ ପେଷି
ବଜ୍ରାବଳୀ ବାଣେ ଶ୍ୱେତ ତାହା ଯେ ବିନାଶି । ୩୩୫ ।
ନଦ୍ରାଦ ବାଣ ଧରି ଯେ ପେଷିଲେ ଗୁରୁ ଦ୍ରୋଣେ
ପୃଥ୍ୱୀରେ ଥିଲା ଯୋଦ୍ଧାପ୍ରେ ମୂର୍ଚ୍ଛାଗତ ଯାନ୍ତି ତେଣେ । ୩୩୬ ।
କୋପେଣ ଦ୍ରୋଣ ଗୁରୁ ଯେ ରସାଂଗତ ଶର ପେଷି
କାଳାନଳ ବାଣେ ତାହା ଶ୍ୱେତ କୁମାର ବିନାଶି । ୩୩୭ ।
ଲଦେବ ଶରେ ଗୁରୁ ନୁଆରିଲେ ଜିଣି
ବଡବାନଳ ସମାନେ ଦେବଶର ଗୁରୁ ଆଧାନ କଲେ ଟାଣି ।୩୩୮ ।
ପରଶୁରାମ ଜଟନ୍ତ ଜିଣିଲେ ଯେଉଂଣ ବାଣେ
ସମାନରେ ପେଷି ତାହା ନ ପେଷି ଇତର ଜନେ । ୩୩୯ ।
ତ୍ରୈଲୋକ୍ୟ କମ୍ପଇ ଯେଉଂଣ ଶର ଛାଡେ
ଧର୍ମକୁ ଲଂଘିଲେ ଗୁରୁ ସମର ବିମୁଖେ । ୩୪୦ ।
ଶହସ୍ରଂକର ଶିଖା ଯେ କାଳାନଳ ବହନ
ଦେଖିଣ ହାସିଲେ ଯେ ଓହୋବଳ ସଇନ । ୩୪୧ ।
ବିଛନ୍ନେଣ ନାରାଜ ଯେ ଆସଇ ଗରଜ
ଆକାଶୁଂ ନର୍ଦ୍ଧାତ କି ପଡିଲା ଗଲଗାଜ । ୩୪୨ ।
ବହନ ତେଜ ଦେଖି ପଳାବନ୍ତି ବଳ
ସାତ୍ୟକୀ ବୋଇଲା ଶ୍ୱେତ ସମ୍ଭାଳ ସମ୍ଭାଳ । ୩୪୩ ।

---

୩୩୮।୨ ବର୍ଣ୍ଣାନଳ ନାମେ ଦେବ ଶହସ୍ର ଆଧାନ କଲେ ଆଣି । (କ,ଙ,ଝ,ଚ,ନ
୩୩୯।୨ ଅନ୍ୟାବଙ୍କ ତାହା ପେଷି ନ ପେଷି କଣ୍ଠିତ ସମରେ । (ଝ, ଚ)

ତୋର ପ୍ରତଗ୍ୟାଂ ଦେଖି ଯୁଝେଷ୍ଟି ଦେବେ ତୋଷ
ଭରଥ ଯୁଦ୍ଧେ ତୋର ବାହାକୁ କଲେ ଆଶ । ୩୪୪ ।
ଶ୍ୱେତ ବୋଇଲା ତୁ ସାହା ହୋଇ ବସିଥାଅ ମୋର ରଥେ
ଆଉ କ ଆଜ କଉରେବେ ଯିବେ ସେ ଜୀବନ୍ତେ । ୩୪୫ ।
ଯେ ଶହସ୍ର ଦେଖି ତୁମ୍ଭେ ସମସ୍ତେ କଲ ଭୟେ
ଯେ ମୋତେ ଦିଶୁଅଛୁ ଜୁଳୁଜୁଳା ପୋକ ପ୍ରାୟେ । ୩୪୬ ।
ଶ୍ୱେତ କୁମାର ବୋଇଲା ଦେଖ ହେ ସାରଥି
ଯେହ୍ନେକ୍ଷଣି ଜାତ ହୋଇବ ଅନଳ ପ୍ରତ୍ତ ପ୍ରତ୍ତ । ୩୪୭ ।
ମରୁତା ଶର ବନ୍ଧିଲା ବିରାଟର ସୁତ
ଅନଳ ଆସନ୍ତେଣ ଘୋଟିଲା ମହାବାତ । ୩୪୮ ।
ପାଣ୍ଡବ ଥାଟକୁ ଯେ ଆସୁଥିଲା ଅଗ୍ନି ବାଣ
ପବନ ବିଘାତେ ସେ ନେଉଟିଲା ତତକ୍ଷଣ । ୩୪୯ ।
ସହସ୍ରଶିଖା ହୋଇ ପଡିଲା ଲେଉଟି
ଅନଳେ ଦହନ ଗଲା ଦ୍ରୋଣଂକର ରଥ ଗୋଟି । ୩୫୦ ।
କଉରେବ ଥାଟରେ ପଡିଲାକ ଯାଇଂ ଝାସ
ଅନେକ ରଥ ଦହନ ତହୁଂ ହୋଇଲାକ ଅନଳ ହାସ । ୩୫୧ ।
ପବନେ ଦିଗୁଣ ଜଳଇ ବହନ୍ତି
ଅସମ୍ଭାଳ ହୋଇଣ ଧାମଇଂ କୁରୁପତ୍ତି । ୩୫୨ ।
ବିଶେଷେ ଅଢାଇ ପହର ହୋଇଛି ଦିନକର
ଆହର ଅପ୍ରମିତ ଅଗ୍ନିର ପରଖର । ୩୫୩ ।
କଉରେବେ ଅଗ୍ନି ଆସେ, ପାଣ୍ଡବେ ପଛକତ୍ତି
ପବନ ବହନ୍ତେ ବହନ୍ତି ଦିଗୁଣ ତେଜ ମୂର୍ତ୍ତି । ୩୫୪ ।
ରାଜଣ ସମଦଣ୍ଡ ପଳାବନ୍ତି ଯେକମୁଖ
ଗଜ ଅଶ୍ୱ ପାଦାନ୍ତି ପଳାନ୍ତି ପାଇଣ ବଡ ଦୁଖ । ୩୫୫ ।
ଫଳା ଆଢେଣୀ ଯେ ଗୁରୁଜ ଲଂକଆ
ଗୁଡଣ ଯୋଦ୍ଧାମାନେ ପଳାଇଲେ କେହ୍ନ କାହାକଇଂ
ନୋହିଲେକ ସାହା । ୩୫୬ ।

---

୩୪୫ ଶ୍ୱେତ ବୋଇଲ ମୋତେ ସାହା ଜଗନ୍ନାଥେ ।
ଆଜ କଉରେବେ କନ୍ଧେ ଶିର ଘେନ ଯାଆନ୍ତୁ କେମନ୍ତେ । (ଉ, ଥ, ନ)

୩୫୬।୧ ଆଢ଼େଣୀ--ଅଡଣି, ଢାଲ ।

ସଇନ ପଳାବନ୍ତେ ଭୀଷ୍ମେ ହୋଇଲେ ସେ ଏକା
ପାଣ୍ଡବ ବଳ ବଢନ୍ତେ ଭୀଷ୍ମେ ଭୀମକୁ କଲେ ଶଂକା । ୩୫୭ ।
ପାଣ୍ଡବ ସୁନ୍ଦର ବୀର ବୃକୋଦର ବେଗେ ଉଠି
ଭୀଷ୍ମଂକର ରଥରେ ଗଦା ନେଇ ପିଟି । ୩୫୮ ।
ଭାଙ୍ଗିଣ ଭୀଷ୍ମଂକ ରଥବର ହୋଇଲା ଖଣ୍ଡ ଖଣ୍ଡ
ହୟେ ସାରଥୀୟେ ପଡ ହୋଇଲେ ମସିଗୁଣ୍ଡ । ୩୫୯ ।
ମଣିନାଗ ନାମେ ହାଥୀୟେ ଆରୋହି
ପଛଦୁଆ ହଲେ ଗାଙ୍ଗେବେ ଶହସ୍ର ଧନୁରେ ପୂରୋଇ । ୩୬୦ ।
ନାଗଜ ବନ୍ଧୁ ବନ୍ଧୁ ପଛଦୁଆ ଦେଇ ଆସି
ବେନ କୋଶ ପର୍ଯ୍ୟନ୍ତ ଆପଣା ଥାଟରେ ଆସି ପଶି । ୩୬୧ ।
ବେଳ ଅବସାନେ ଶ୍ରମେଣ ମହାକ୍ଷୁଧା
ଯୁଗତେ ଭଗ୍ନବଳ ଅଗ୍ନିର ତେଜ ବାଧା । ୩୬୨ ।
ଶହସ୍ର ଧରି ବୀରେ ନୁଆରନ୍ତି ଚଳି
ମୁଖେଣ ହାଥ ଭରି ଶରଣ ରଖ ବୋଲଣ ପୁକାରି । ୩୬୩ ।
ଭୀମସେନ ଶ୍ରୀଖଣ୍ଡୀ ଧୃଷ୍ଟ ଯେ ଦ୍ୟୁମନୁ
ଶଙ୍ଖ, ଶ୍ୱେତ, ଉତ୍ତର, ଦୁର୍ଦ୍ଧର୍ଷ, ଘଟୋତ୍କଚ, ଅଭିମନ୍ୟୁ । ୩୬୪ ।
ନିର୍ଦ୍ଦୟା ନଗପକ୍ଷ ଅଟନ୍ତି ବାଳ ବୁଦ୍ଧି
ଶରଣ ବୋଇଲେ ସେ ଗୋଡାଇ ଦୁଗୁଣେ ଶର ବିନ୍ଧି । ୩୬୫ ।
ପଡନ୍ତି ଯୋଦ୍ଧାୟେ ଅସଂଖ୍ୟ ରଥୀ ହାଥୀ
ଅନେକ ଅଶ୍ୱ ଯୋଦ୍ଧା ସଙ୍ଗେ ଅପ୍ରମିତ ପାଦାନ୍ତି । ୩୬୬ ।
ତେର କୋଶ ପର୍ଯ୍ୟନ୍ତେ ସଇନହିଂ ପଡ଼ୁଡ଼ି ପଡିଲା
ମୃତ୍ତୁପିଣ୍ଡ ରକତେ କର୍ଦ୍ଦମ ହୋଇଲା । ୩୬୭ ।
ପଛର ସଇନ ଧାମନ୍ତି କରି ଚାଳି
ତାହାଂକର ବଳେ ଯେ ମେଦମେଦା ମାଂସ ହୋଉଅଛି ଧୂଳି । ୩୬୮ ।
ଅକଳିତ ସଇନ ପଡିଲେ ବଳ ଥାଟ
ରହିଲେ ପାଣ୍ଡବେ ଯାଇଂ ହସ୍ତିନା ନିକଟ । ୩୬୯ ।

---

୩୬୩।୨ ଦନ୍ତରେ ତୃଣ ଦେଇ ବୋଲନ୍ତି ରଖ ରଖ ବୋଲି । (ଓ, ଥ, ନ)

ଯମୁନା ନଦୀରେ ସଇନ ପଡିଲେକ ଚଡଇଂ
କେ ଇନ୍ଦ୍ରପ୍ରଶସ୍ତେଣ ପଶିଲେ ଲୁଗୃ ଦେଇ ।୩୭୦।
ଧନକର ନାଥ ଓହ୍ଲାଡେ ହେଲେ ହାଦେ ମେରୁ
ପାଣ୍ଡବେ ନଇଲେ ଯେ ଯମପ୍ରଶସ୍ତ ରାଜ୍ୟରୁ ।୩୭୧।
ଆଦିତ୍ୟ ଅସ୍ତ ଯାଇଂ ବେନ ଘଡି ରାତ୍ରି
ଧୃତରାଷ୍ଟ୍ର ସମୀପେ ଭୀଷ୍ମ ଦ୍ରୋଣ ଯେ ମିଳନ୍ତି ।୩୭୨।
ସମସ୍ତେ ପ୍ରଶଂସନ୍ତି ଶ୍ୱେତର ମହିଂମା
ସାଧୁ ମହାପତି ବିରାଟ ମହାତମା ।୩୭୩।
ଶୁଭ ସୁଲକ୍ଷଣ କରି ସେ ପୁତ୍ରକୁ ଜାତକଲା
ତ୍ରଇଲୋକ୍ୟ ସଂସାରକୁ ଅଧିକ ହୋଇଲା ।୩୭୪।
ସାଂଗ୍ରାମେ ଜଣନ୍ତା ସେ ସୁଦେଷ୍ଣାର ବଳା
କଉରବ ସଇନଂକୁ ସେ ବହୁତ ଦୁଖ ଦିଲା ।୩୭୫।
ନବ ଯୋଜନ ପର୍ଯ୍ୟନ୍ତ ପଡିଲା ଅପାର
ରଥୀ ସାରଥି ପାଦେ ହୋଇଲେ ସବୁ ଚୂର ।୩୭୬।
ତଦନ୍ତ ନ ଯାଇ ଦେବ ସଇନର ନିଧନ
ରୁଧିରେ ମେଦିନୀ ଯେ ହୋଇଲା କର୍ଦ୍ଦମ ।୩୭୭।
ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା ତିନି ରଥୀନ୍ଦ୍ର ଜାଣି
ସେହୁକା ଶ୍ୱେତ କୁମାର ଯେ ମର୍ଦ୍ଦିଲା ସଇନ ।୩୭୮।
ଧର୍ମେଣ ସେ ବିଧାତା ଆଣିଲା ଲୀଆଇ
କହନ୍ତି ଭୀଷ୍ମ ଦ୍ରୋଣେ ଶ୍ୱେତର ବଡାଇ ।୩୭୯।
ଶୁଣିଣ ଧୃତରାଷ୍ଟ୍ର ହୋଇଲେ ତବଦ
ନିଶ୍ୱାସ ପକାଇଣ ସେ ହୋଇଲେ ବିଷାଦ ।୩୮୦।
ଧୃତରାଷ୍ଟ୍ର ବୋଇଲେ ସାଧୁ ସାଧୁ ରେ ସଞ୍ଜୟେ
ସୁସାଧୁ ପଣ୍ଡିତ ତୁ ସୁଗ୍ୟାନୀ ବୁଦ୍ଧିମୟେ ।୩୮୧।
କାଲି ଯା ସମ୍ପି କହିଲୁ ନିଶାକାଳେ
ପ୍ରତକ୍ଷେ ଫଳିଲା ତାହା ଦେଖିଲି ତେବେନି ତୋତେଲ ।୩୮୨।

---

୩୭୧।୨ ପାଣ୍ଡବେ ନଇଲେ ଯେ ଇନ୍ଦ୍ରପ୍ରଶସ୍ତ ରାଜ୍ୟରୁ । (ଘ, ଙ, ଚ)
୩୭୨।୨ ଧୃତରାଷ୍ଟ୍ର ସମୀପେ ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନ ଯେ ମିଳନ୍ତି । (କ,ଗ,ଛ,ଝ)

ଦ୍ରୋଣେ ବୋଇଲେ ସେ ସଞ୍ଜୟେ ମହାଭାଗ୍ୟାମ
ଭୂତ ଭବିଷ୍ୟ ବର୍ତ୍ତମାନ ଜାଣଇ ସେ ଜନ । ୩୮୩ ।

ଆମ୍ଭ ବଇକୁଳ୍ୟେ ଦୁର୍ଯୋଧନ ମହାଭାଗୀ
କାହାକୁ କୋପଭର କାହାକୁ ସନ୍ଧିଧ୍ୟଂ ପରିତ୍ୟାଗୀ । ୩୮୪ ।

କର୍କଶ ମଧୁ ପିଙ୍ଗଳ ଦୁଷ୍ଟ ହାଦେ ପ୍ରକୃତି
କାହାକଇଂ ସମାସ୍ୟା ନାହିଂ ବସୁଦେ ମହାମତି । ୩୮୫ ।

ଭୂମିରେ ଭୂଜ ତାଡ଼ି ଅଧରେ ଦନ୍ତ ଚୁପି
ଅପଣ୍ଡିତ ପଣେ ରାଜା ଅପ୍ରାଂଜୟେ କୋପୀ । ୩୮୬ ।

ରୋମ ଉଲୁସାଇ କରତାଳ ମାରଇ ଜାନୁ
ବାହାସ୍ଫୋଟ ଦେଇ କମ୍ପାଇ ନିଜ ତନୁ । ୩୮୭ ।

ଧୂଶାସନ ଦୁର୍ଜୟେ ସେ ଦୁର୍ବିନ୍ଦ ଦୁର୍ମୁଖ ଦୁରନ୍ତ
ଦୁବାଳ ଦୁମନ ଦୁଜନକଇଂ ରାଇଣ ସୋଦରନ୍ତ । ୩୮୮ ।

ଧିକ ମୋର ବଳବୀର୍ଯ୍ୟ ଧିକ ମୋର ଭାଇ
ତୁମ୍ଭନ୍ତ ଆଶ କରଣ ନିଷ୍ଫଳ ମୋର ଦେହି । ୩୮୯ ।

ମହା ମହା ରଥୀୟେ ଅଟନ୍ତ ଭୀଷ୍ମ ଦ୍ରୋଣ
ନିରେଖ କର ମୋର ସଇନ ମରାଇଲେ ପୁଣ । ୩୯୦ ।

ମାନଗୋବିନ୍ଦ ବୋଇଲ ସମର ମୋର ନୋହୁ
ନଗ୍ରେ ଘୋଷଣା ଦିଅ ରାଜାମାନେ ସେ ଯାହା ରାଜ୍ୟକଇଂ ଯାଉ ।୩୯୧।

ଭୀଷ୍ମ ନ ଥାଉ ସେ ଦ୍ରୋଣହିଂ ନ ଥାଉ
କୃପହିଂ ନ ଥାଉ ଭୂରିସର୍ବାୟେ ଯେଥୁଂ ଯାଉ । ୩୯୨ ।

ନଗ୍ରେ ଘୋଷଣା ଦିଆଇଲ ରାଜା ମାନଗୋବିନ୍ଦ
ଲକ୍ଷେ ରାଜା ଯାନ୍ତୁ ଘେନି ସେ ଯାହାର ସଇନବୃନ୍ଦ । ୩୯୩ ।

ସକଳ ସଇନମାନେ ନିଚନ୍ତେଣ ଥାଅ
ରାଜାମାନନ୍ତ ଆଶ ନାହିଂ ମୋର ଦେହ । ୩୯୪ ।

ସଂସାରେ ଅପଗ୍ରତ୍ତ ନୋହୁ ମୋର ନାମ
ଅନେଶ୍ୱର ରାଇ ଘେନି ମୁଂ କରିବି ସାଂଗ୍ରାମ । ୩୯୫ ।

କର୍ମକଇଂ କରେପି ବୋଲଇ ଧୃତରାଷ୍ଟ୍ରି
ଆବହୁଂ ମୋତେ ନ ବୋଇଲୁ କ ଯୁଦ୍ଧେଷ୍ଟି
ଜନମୁଖେ ମୁଂ ଯେ ପାଇଲ ଅପଛାନ୍ତ । ୩୯୬ ।
ଅପଣ୍ଡିତ ପଣେ ମୁହିଂ ଯେହା କଲି ମନ୍ଦ
ସଂସାର ଲୋକତକୁ ଆରମ୍ଭିଲି ଯେତେ ଦ୍ୱନ୍ଦ । ୩୯୭ ।
ବହୁତ ଇନ୍ଦୁରେ ନ ମରଇ ମଞ୍ଜାର ଯେକଇଂ
ବହୁତ ଅଜାଯୂଥେ କ ଜଣିହୋଇ ବ୍ୟାଘ୍ରକଇଂ । ୩୯୮ ।
ବହୁତ ବଷପୁରେ ନାଶଯାନ୍ତି ପ୍ରାଣୀ
ଅପାର ଯୁବତି କ ପୁରୁଷବଳକଇଂ ପାରନ୍ତି ଜିଣି । ୩୯୯ ।
ବହୁତ ଗାବ ଯେକା ନାଶନ୍ତି କ ଷଣ୍ଢ
ମୁହିଂ ଅବା ନ ଜାଣି ବହୁତ କଲି ରୁଣ୍ଡ । ୪୦୦ ।
ବହୁତ ଲୋଗୁଯେ ମରୁଛନ୍ତି ଅନମିତେ
ମୋହୋର ବଂଶହିଂ ମରିବ ବହୁତଂକ ଅପଗ୍ରାତେ । ୪୦୧ ।
ଗୁଗଲ ପଲ ଜାଣି ହୋଇଲ ମୋର ଥାଟ
ଯେକା ମତ୍ତବ୍ୟାଘ ହୋଇଲ ବରାଟର ଗ୍ରହ । ୪୦୨ ।
ମୋହୋର ଥାଟ ହୋଇଲା କଦଳୀ ବନ ଗୋଟିଯେ
ଯେକା ମତ୍ତଗଜେକ ସେ କଲ ଧୂମାନ୍ତମଯେ । ୪୦୩ ।
ହାଥୀ ଉପରେ ଥାଇ ଦେଖଇ ମୋର ଥାଟ
ନବ ଯୋଜନ ପରଯନ୍ତେ ପଳାଇତେ ନ ପାଇଲେ ବାଟ । ୪୦୪ ।
ଯେସନେକେ କେଶରୀ ଘଉଡଇ ଗଜଯୂଥ
ସେହ ସରୂପେ ମୋହୋର ସଇନ ହୋଇଲେ ଭଗନସ୍ତ । ୪୦୫ ।
ନୋହଇ ନୋହଇ ଯେହାନ୍ତ ଲୋପ୍ୟ ନୋହଇ ରେ ଧୂଶା
ଇନ୍ଦ୍ର ଆଶ୍ରିତ କରି ନ ପାଇଲ ବରଷା । ୪୦୬ ।

---

୩୯୬।୨ ଆବହୁଂ ଯେକଥା ମୋତେ କହୁଥିଲେ ଯୁଦ୍ଧେଷ୍ଟି । (ଖ, ଘ, ଙ, ଝ)
୩୯୭।୨ ସସାର ଲୋଭ କରି ଆରମ୍ଭିଲି ଯେତେ ଦ୍ୱନ୍ଦ । (କ, ଟ)
୩୯୯।୧ ବହୁତ ବିଷ ଖାଇ ନାଶଯାନ୍ତି ପ୍ରାଣୀ । (ଖ, ଛ)
୪୦୪।୨ ତେରକୋଶ ପରଯନ୍ତେ ପଳାଇତେ ନ ପାରନ୍ତି ବାଟ । (କ, ଛ, ଠ)
୪୦୬ { ନୋହଇ କିଛୁ ଯେହାନ୍ତ ନାଶ ନ କରରେ ଧୂଶା
କାହାର ଆଶ୍ରେ କରି ନ ପାଇଲ ଭରସା । (କ, ଝ, ଟ, ଠ)

ଶୁଣିଲ୍ଲ ଅରଣ୍ୟ ହୋଇଲେ ମୋହୋର ସଇନ
ବସିଷ୍ଠର ନନ୍ଦନ ହୋଇଲ୍ଲକ କାଳାନଳ ବହ୍ନନ । ୪୦୭ ।
ପ୍ରଚଣ୍ଡ ପବନ ମୋତେ ହୋଇଲ୍ଲ ସାତ୍ୱିକା ସାରଥି
ମୋତେ ହୋଇଲା ଦୁର୍ଦ୍ଧର୍ଷ ନରେଂ ଲଂକାଗଡର ଗଡ । ୪୦୮ ।
ଅନେକ ଝିଂଘାସି କ୍ରୋଧ କରଇ କୁରୁପତ୍ତି
ସତେଣ ସଭାରୁ ଉଠିଲେ ଦ୍ରୋଣ ମହାରଥୀ । ୪୦୯ ।
ଦ୍ରୋଣେ ବୋଇଲେ ଶୁଣ ହୋ ମାନଗୋବିନ୍ଦ
କାହାର ବଚନ ନ କର ତୁ ଆରମ୍ଭିଲୁ ଦ୍ୱନ୍ଦ । ୪୧୦ ।
ରାମ ରାବଣର ପୂର୍ବେ ହୋଇଲ୍ଲକ ଯୁଦ୍ଧ
ରାମଲକ୍ଷଣଂକୁ ଇନ୍ଦ୍ରଜିତ କଲ୍ଲ ନାଗପାଶେ ବନ୍ଧ । ୪୧୧ ।
ଲକ୍ଷଣର ବକ୍ଷସ୍ଥଳେ ପଡିଲ୍ଲଟି ଶକ୍ତି
ଗତପ୍ରାଣ ହୋଇ ସେହୁ ଉପାୟେଣ ପାଇଲେ ଜୀବନ୍ତ । ୪୧୨ ।
ବେଶ୍ୟା ପ୍ରସଙ୍ଗେ ହାଦେ ଶିରୀ ନାଶ ଯାଇଂ
ତସ୍କର ପ୍ରସଙ୍ଗେ ବଢିଲେ ଧର୍ମଯଶ ହରଇ । ୪୧୩ ।
ରୋଗର ପ୍ରସଙ୍ଗେ ନାଶ ହୋଅଇ ବଳବପୁ
ରାଗ ପ୍ରସଙ୍ଗେଣ ଯେ ଅଦଭୂତେ ହୋୟେ ରିପୁ । ୪୧୪ ।
ଯାନ୍ତା ପ୍ରସଙ୍ଗେ ନାଶଯାନ୍ତି କୁଳସ୍ତିରୀ
କୁବୁଦ୍ଧି ପ୍ରସଙ୍ଗେଣ ଅଭାବ ସବୁରି । ୪୧୫ ।
ଯଦ୍ୟପି ଶିରୀ ଆଷ୍ୟ ବଢଇ ସମ୍ପଦ
ଆଷ୍ୟ ଶ୍ରୀ ସମ୍ପଦ ନାଶ ଯାଇଟି କୁଟୁମ୍ବେ ଅର୍ଜିଲେ ବିବାଦ । ୪୧୬ ।
ଅଥବା ସ୍ୱେତେବେଳେ ଯଦ୍ଧ ପାରୁ ଅପସରି
ଉପୁରିକ ବୁଦ୍ଧି ଶିଖ ଥୋକାୟେକ ହାରି । ୪୧୭ ।
ମାନଗୋବିନ୍ଦ ବୋଇଲ୍ଲ ଗୁରୁ ହେ ହୋଇଚ୍ଛୁ କ ସ୍ୱେମନ୍ତ
ତୁମ୍ଭମନ୍ତ ଯୁଝି ଯେବେ ହୋଇଲ ନସତ । ୪୧୮ ।
ଦ୍ରୋଣେ ବୋଇଲେ ରାଜା ତୁ ଝିଂଘାସି ବୋଇଲୁ ବୋଲ
ଆମ୍ଭର ସାଂଗ୍ରାମ ରାଜା ତୁ ଦେଖୁ କଜା କାଲି । ୪୧୯ ।
ଯଦ୍ୟପି ଶ୍ୱେତର ପ୍ରାୟେ ହୋଇବେ ସହସ୍ରେ ରଥୀ
ମୋହୋର ସ୍ତମ୍ଭରେ କେ ପାଇବଟି ଜୀବନ୍ତ । ୪୨୦ ।

ଅଥବା ସମରେ ଯେବେ ନୁଆରଇ ମାର
ସମରେ ଶସ୍ତ୍ର ଛାଡ଼ିବି ସତ୍ୟ ସତ୍ୟ ଯେ ମୋହୋର । ୪୨୧ ।
ଦୁସହ ପ୍ରତିଜ୍ଞା ଯଦ୍ଧଂ କଲେ ଦ୍ରୋଣ ମହାରଥୀ
ଧୃତରାଷ୍ଟ୍ରଂକ ସନ୍ନିଧେ ପାଣ୍ଡବେ ଅଛନ୍ତି । ୪୨୨ ।
ଭୀମସେନ ବୋଇଲା ଗୁରୁ ହେ ତୁମ୍ଭେ ପ୍ରତିଜ୍ଞା କରୁଂ କରୁଂ
ଏକ ସୋଦରେ ଆସି ଲଗିଲା ଏତେ ଦୂରୁଂ । ୪୨୩ ।
ପ୍ରତିଜ୍ଞା ଏକ କଲେନାହିଂ କି, ଭୀଷ୍ମ ମହାରଥୀ
ଦଶ ସହସ୍ର ଯୋଦ୍ଧା ପାଡ଼ୁଥିବ ନିତି ନିତି । ୪୨୪
ଆଜର ଯୁଦ୍ଧେ ତ ଜଣେହେଂ ନୁଆରିଲେ ମାର
ପ୍ରତିଜ୍ଞା ସାଚା ଦେଖିଲୁ ଯେ ନୋହିଲେ ପ୍ରାଣେ ହାରି । ୪୨୫ ।
ଭୀମସେନ ବୋଇଲା ଯେବେ ଛତ୍ରୀଂକର ବଚନ ନିକଳଂକ ହୋଇବ
ମହନ୍ତଂକର ବଚନ ଯେବେ ବ୍ୟର୍ଥକୁ ଯିବ । ୪୨୬ ।
ବ୍ରାହ୍ମଣ ହୋଇଣ ଯେବେ କହିବଟି ମିଥ୍ୟା
ଆପଣାର ପ୍ରତିଜ୍ଞା ଯେବେ ନ କରିବ ରକ୍ଷା । ୪୨୭ ।
ରାଜାର ମୁଖେ ଯେବେ ଆସିବ ଅମିତ
ପୁତ୍ରହୋଇ ଯେବେ ମାତା ପିତାରେ ଅଭଗତ । ୪୨୮ ।

---

୪୨୩ } ଭୀମସେନ ବୋଇଲା ଗୁରୁ ହେ ତୁମ୍ଭେ ପ୍ରତିଜ୍ଞା କମ୍ପେ କରୁ
ତୁମ୍ଭର ମନ୍ଦପଣେ ନାଶଗଲୁ ଏକ ସହୋଦରୁଂ । (ଥ, ନ, ଓ)

୪୨୬।୧ "ଭୀମସେନ ବୋଇଲା ଯେବେ ଛତ୍ରୀଂକର ବଚନ ନିକଳଂକ ହୋଇବ ।"
ଏ ପାଦାନ୍ତ ସ୍ଥାନରେ (ଥ, ଓ, ନ) ରେ ଭିନ୍ନ ପାଠ:—
ଏତେକ ଚରିତ ଯେବେ ହୋଇବ ବିଡମ୍ବଣ
ଏଥିରୁ ଅଶିଷ୍ଟି ଜାତ ହୋଇବ ଯେ ପୁଣ ।
ଛତ୍ରୀଂକର ବଚନ ଯେବେ ନିଷ୍ଫଳ ହୋଇବ
ସମର ବେଳେ ଯେବେ ଶସ୍ତ୍ରଧାରୀ ପିଠି ଦେବ ।
ସେ ଛତ୍ରୀ ସମରେ ପଡିଲେ ମୋକ୍ଷ ଗତି ନାହିଂ
କଡ଼ରେବେ ପଡଇ ସେ ନସତେ ଆଂଶା ବନ୍ଧୁ ।

୪୨୭।୨ ଆପଣାର ସତ୍ୟ ଯେବେ ନ କରିବ ରକ୍ଷା । (କ୍ଷ, ଠ, ଙ, ଝ, ଚ)

ଅଦଭୂତ ଭାବେ ଯେବେ ଉପୁଜିବ ଅରିଷ୍ଟି
କପାଇଂ ଇନ୍ଦ୍ର ଦେବତା କରିବାକ ବୃଷ୍ଟି । ୪୨୯ ।
କଳ୍ପତର ମନ୍ତ୍ର ଯେହ୍ନେ ଗୋପ୍ୟ ହୋଇ ପ୍ରସରଇ
ତେହ୍ନେନେକ ହୋଇଲା ସିନା ଭୀଷ୍ମଙ୍କର ପ୍ରତଗ୍ୟାଂଇଂ । ୪୩୦ ।
ବାତୁଳ ଯେହ୍ନେ ଯାହା ବୋଇଲା ବୋଇଲା
ଯହ୍ନିଂଥିଲା ଥିଲା, ଯାହା ଖାଇଲା ଖାଇଲା । ୪୩୧ ।
ଯାବତ କାଳକୁ ତ ଯେ କଥାହ୍ନିଂ ରହିଲା
ଭୀଷ୍ମଙ୍କର ପ୍ରତଗ୍ୟାଂ ଯେ ତେମନ୍ତ ହୋଇଲା । ୪୩୨ ।
ଜୟ ତୁ ସଂସାର ବଲ୍ଲଭ ବାସୁଦେବ
ତୁହ୍ମ ସେ ଜାଣୁ ସିନା ନାଥ ଭାବ ଯେ ଅଭାବ । ୪୩୩ ।
ବ୍ରାହ୍ମଣ ହୋଉ କ ସେ ଶୂଦ୍ରହ୍ନିଂ ହାଦେ ହୋଉ
ତବ ଲୟେ ନ ଥିଲେ ଜୀବନକୁ କାରଣ ଅଛୁ କାହ୍ନୁଂ । ୪୩୪ ।
ଗ୍ୟାନେ ଅଗ୍ୟାନେ ବା ସବେ୍ୟ କ ଅସବେ୍ୟ
ନିର୍ଦ୍ଦ୍ୟ ବା ଅନିତ୍ୟରେ ଚନ୍ତିବ ବାସୁଦେବେ । ୪୩୫ ।
ସଚିତ୍ତ ଅସଚିତ୍ତ ଦେବ ତୁହ୍ମ ସେ କରାଇ
ଜାତହ୍ନିଂ କରାଇ ଭାବହ୍ନିଂ କରାଇ ଅଭାବ ହୋଇଲେ ମରାଇ । ୪୩୬ ।
ଦକ୍ଷିଣ ମହୋଦଧି ତୀରେ ଯେ ବୃକ୍ଷ କଳ୍ପବଟେ
ଚନ୍ଦ୍ରଭାଗା ତୀର୍ଥ ଯେ କୋଣାରକ ନିକଟେ । ୪୩୭ ।
ପୁରୁଷୋତ୍ତମ କ୍ଷେତ୍ର ଯେ କୋଟିଏ ତୀର୍ଥ ଯେନ
ବସିଲେ ହରି ବଳରାମ ସୁଭଦ୍ରା ଯେ ତିନ । ୪୩୮ ।
ନ ଯା ନାନା ତୀର୍ଥ ନିଗମ ଦୂର ପନ୍ଥେ
ଜଞ୍ଜାଳ ପ୍ରମାଦ ନ ପଶ ଶ୍ରୀଜଗନ୍ନାଥଙ୍କର ଦେଖନ୍ତେ । ୪୩୯ ।
ଶ୍ରୀ ଜଗନ୍ନାଥ ନାମ କରସି ଉଚ୍ଚାର
ଲୋଭ ମୋହ ସଂସାରୁ ନରେ ହୁଅସି ବେଗେ ପାର । ୪୪୦ ।
ସକଳ ତୀର୍ଥେ ପ୍ରାଣୀ ବୁଲି ସେ ମରଇ
ନାହ୍ନିଂ ତହ୍ନିଂ କାରଣ ଯେବେ ନାମ ନ ଭଜଇ । ୪୪୧ ।

---

୪୨୯।୧ ଅନମିତେ ଅନାଥ ଯେବେ ଉପୁଜିବ ଅନାସ୍ଥି । (ଘ, ଠ)
୪୨୯।୨ ଗୃହ ମେଘେ ଯେବେ ନ କରିବେ ଜଳବୃଷ୍ଟି । (ଅ, ଡ, ନ)

ସକଳ ତୀର୍ଥଟି ଗୋବିନ୍ଦର ନାମ
ଯେତ୍ଥି ଉପରେ ଆଉ ନାହିଂ ନା କିଛି ଧର୍ମ । ୪୪୨ ।
ଗତି ମୁକତି ଯେ ଗୋବିନ୍ଦର ନାମ
ଯେ ନାମ ସୁମରନ୍ତେ ନ ଥାଇ ଦୁଃଖ ଶ୍ରମ । ୪୪୩ ।
ଯମ ନ ଦଣ୍ଡଇ ଯେଉଂ ନାମ ଧଇଲେ
ନ ଥାଇ ରୋଗ ବ୍ୟାଧି ମୁଖରେ ବୋଇଲେ । ୪୪୪ ।
ନ କାଟଇ ସର୍ପାଘାତ ରିପୁ ଭୟ ଆଦି
ଶ୍ରୀଜଗନ୍ନାଥ ପରସନ୍ନେ ସକଳ ରିପୁ ସିଦ୍ଧି । ୪୪୫ ।
ପୁରୁଷଂକର ଉତ୍ତମ ଯେଣୁ ଶ୍ରୀ ପୁରୁଷୋତ୍ତମ ନାମ
ପରମାନନ୍ଦ ସ୍ୱାମୀ ଅଧମ ଉଦ୍ଧାରଣ । ୪୪୬ ।
ଦକ୍ଷିଣ ମଉଦଧି ତଟେ ତୋର ବାସ
ନୀଳାଦ୍ରି ରୂପ ସେ ବ୍ରହ୍ମପ୍ରଳୟ ପ୍ରକାଶ । ୪୪୭ ।
ବିଜେ ନୀଳକନ୍ଦରେ ଚତୁର୍ଦ୍ଧା ରୂପ ଗୋଟି
ନୀଳ କଳ୍ପବଟ ତଳେ ସଙ୍ଗମ ହୋଇଛି ତୀର୍ଥ କୋଟି । ୪୪୮ ।
ପରମାନନ୍ଦ ପୁରୁଷ ଯେ ପରଲୋକ ବନ୍ଧୁ
ଜାଣି ସେ ନ ମାଉଲ କାଳ କୃତାନ୍ତେକ ଦର୍ପ ସିନ୍ଧୁ । ୪୪୯ ।
ନିର୍ମଳ ନୀରକୂଳ ଯେ ଦକ୍ଷିଣ ଦ୍ୱାରିକା
ଅଜ୍ଞାନ ଅଗତିଙ୍କ କାରଣି ଯେହ୍ନ ଯେକା । ୪୫୦ ।
ଯହିଂ ଯେହ୍ନ ସେ ନାରାୟଣ ବିଶ୍ରାମ କରଇ ଦଣ୍ଡେ
ଯାବତ ଚନ୍ଦ୍ର ଅର୍କେ ସେ ହୋଅଇ ତୀର୍ଥ ଖଣ୍ଡେ । ୪୫୧ ।
ଆପଣେ ଜନମିଲେ ବାଳୁତ ରୂପ ଧରି
ପରଦାରା ରମଣେ ଅଛଅ ଅନ୍ୟାୟ ଆଚରି । ୪୫୨ ।
ଇଦଂ ବାକ୍ୟ ଅମୃତ ଯେ ମମ ହୃଦଗତେ
ନାରାୟଣ ନାମତଙ୍କ ବିଚଳିତ ନୋହୋଇ ଯେମନ୍ତେ । ୪୫୩ ।
ଯେଉଂଣ ଆଗ୍ୟାଂଯେକ ମୋତେ ଦିଲେକ ହେଙ୍ଗୁଳା
କୃପାଜଳ ନନ୍ଦମା ହୃଦରେ ମମ ହାରା । ୪୫୪ ।

---

୪୫୪।୧ { ଯେଉଂଣ ଆଗ୍ୟାଂଯେକ ମୋତେ ଦିଲେକ ଅଙ୍ଗିରା । (ଘ, ଙ, ଓ, ଥ, ନ)
ଯେଉଂଣ ଆଗ୍ୟାଂଯେକ ମୋତେ ଦିଲେକ ଗିରିଜା (କ, ଛ)

ଅଜପା ଅପଣ୍ଡିତ ମୁଂ ଅକର୍ମଣ୍ୟ ଅଟଇ
ଶ୍ରୀଚଣ୍ଡୀ ସାରଳାର ବାଗ୍ଦ କର ପ୍ରେମାନ ଭେଟାଇ । ୪୫୫ ।
ଯେଉଂଣ ଭାରଥ ଲେଖନ, ଖଣ୍ଡ ନ ଜାଣଇଂ ଲେଖା
କସ ମୁଂ ପଣ୍ଡିତ କସ ମୋର ଭାଖା । ୪୫୬ ।
ଯେତେ ଦୂରେ ପଶିଲ ମୁଂ ତେତେ ଦୂର ଅନ୍ତକଲ
କେ ଲେଖା କରି ଗଣିପାରଇ ଗଙ୍ଗା କୂଳର ବାଲି । ୪୫୭ ।
ଜଙ୍ଘେରପୁର ବାସୀ ଶ୍ରୀଚଣ୍ଡୀ ସାରଳା ଦେବୀ
ମୁହିଂ ତାହାର ପୁତ୍ର ଯେ ସାରଳା ଦାସ କବି । ୪୫୮ ।
ଯାବନ୍ତ ଜୀବଂକରହିଂ ସେ ଜଗନ୍ନାଥହିଂ ମୂଳ
ତାହାର ତଳସ୍ଥେ ମୁଂ ଭାବଇ ବକ୍ଷସ୍ଥଳ । ୪୫୯ ।
ସେ ଜଗନ୍ନାଥ ସ୍ୱାମୀଂକର ଚରଣାରବିନ୍ଦେ
ସେ କେଶର ଚୁମ୍ବଇ ମୁଂ ହୋଇଣ ମକରନ୍ଦେ । ୪୬୦ ।
ସେ ସ୍ୱାମୀର ଚରଣେ ଶରଣ ମୁହିଂ ନତ୍ୟେ
ତେଣୁ କରି ହୋଇଲ ମୁଂ ପରମ ପଣ୍ଡିତେ । ୪୬୧ ।
ଶ୍ରୀପଦ୍ମ ଚରଣେ ଆରାଧି ମୋର ସେବା
ଶୂଦ୍ରମୁନି ସାରଳା ଦାସକୁ ମୁକତି ଗତି ଦେବା । ୪୬୨—୨୮୩୨ ।



## ପଞ୍ଚମ ଦିବସ ଯୁଦ୍ଧ

ବଇବସ୍ୱତ ମନୁ ପୁଚ୍ଛାକଲେ ଶୁଣ ହେ ଅଗସ୍ତି
ଶ୍ରୀ ବିଷ୍ଣୁ ପୁରାଣ ମହାଭାରଥ ଦେବ୍ୟ ଶାନ୍ତି । ୧ ।
ପାଞ୍ଚ ଦିବସେ ଆସି ଭୀଷ୍ମପର୍ବ କଥା
କହସି ପ୍ରଥମେ ମୋତେ ପଣ୍ଡିତ ମହାଭାଗ୍ୟାଂତା । ୨ ।

---

୪୬୦।୨  ମକରନ୍ଦ—ମଧୁ ଓ ମଧୁପ, ଦୁଇ ଅର୍ଥ ହୁଏ । ଏଠାରେ ମକରନ୍ଦ ଅର୍ଥ ମଧୁପ ।
ପଞ୍ଚମ ଦିବସ ଯୁଦ୍ଧ ଆରମ୍ଭରେ (ଖ) ରେ ଅଧିକପାଠ:—
ଶୁଣ ବଇବସ୍ୱତ ମନୁ ସେଥୁ ଅନନ୍ତରେ
ପାଣ୍ଡବଦଳ ବାହୁଡ଼ି ଗଲେ ନିଜ ପୁରେ । ୧ ।
ରାତି ହୁଅନ୍ତେ ପାଣ୍ଡବ ହସ୍ତିନା ଅଇଲେ
ଦୁର୍ଯ୍ୟୋଧନ ସଙ୍ଗତରେ ସଭାରେ ବସିଲେ । ୨ ।

ଶୁଣ ହୋ ମହାରାଜା ବଇବସ୍ୱତ ମନୁ
ଦୁର୍ଯୋଧନଙ୍କୁ ବହୁତ ଅପ୍ରାଂଜଯ୍ୟେ ପଡ଼ିଲା ହାଦେ ଚତୁର୍ଥ ଦିନୁଂ । ୩ ।
ବହୁତ ସମର କଲା ଶ୍ୱେତ ଯେ୍ୱକା ରଥେ
କଉରେବନ୍ତ ପସ୍ୟେଜ ପଡ଼ିଲା ନବପୋଜନ ପରିଯନ୍ତେ । ୪ ।
ନବ ସହସ୍ର ରାଜା ବତଶ ଅନିବ୍ରତ ରଥୀ
ପାଞ୍ଚଲକ୍ଷ ଯୋଦ୍ଧା ପେ ତିନିଲକ୍ଷ ମହାହାଥୀ । ୫ ।
ପସ୍ୟେଜ ପଡ଼ିଲା ଯେ ଅସନ୍ତ ଯୁଦ୍ଧ
ସଇନହିଂ ପଡ଼ିଲା ନବ ଯେ ଚାରସୁଧ । ୬ ।
ପାଞ୍ଚ ଯୋଜନ ଦୀର୍ଘ ଅଢ଼ାଇ ପୂର୍ଣ୍ଣ ଭୂମି
ପାଞ୍ଚଚାଲ ଉଚ୍ଚର୍ଗେଣ ପଡ଼ିଲେ ରଥୀ ହାଥୀ ପାଦାନ୍ତ । ୭ ।
ସମପ୍ରସ୍ଥ ବୋଲି ସରସ୍ୱତୀ ନଦୀ କୂଳେ
ପାଣ୍ଡବେ ରହିଲେ ଯାଇଂ ବାହ୍ଲିାବଂଶ ତଳେ । ୮ ।
ପାଣ୍ଡବେ କଉରେବେ ରହିଲେ ଯେ୍ୱକ ଯୋଗେ
ବଞ୍ଚିଲେକ ରଯୂଣୀ ପ୍ରୀତି ଯେ୍ୱକସଙ୍ଗେ । ୯ ।
ଅରୁଣ ପ୍ରକାଶ ଯହୁଂ ସଗ୍ୟାର ବହ୍ନିତ
ପଞ୍ଚଜନ୍ୟ ଶଙ୍ଖ ଶବ୍ଦ କଲେ ବାସୁଦେବ । ୧୦ ।
ହରି ଅର୍ଜୁନ ଯେ ହୋଇଲେ ଯେ୍ୱକଠାବ
ନନ୍ଦଘୋଷ ସାଜନ୍ତ କମଳାବଲ୍ଲଭ । ୧୧ ।

---

ଭୀଷ୍ମ ଦ୍ରୋଣ ସହିତେ ସକଳ ପାତ୍ର ମନ୍ତ୍ରୀ
ନାନା କଥାମାନ ସେ କୁହାକୁହି ହୁଅନ୍ତି । ୩ ।
ରାତ୍ର ଦଶଦଣ୍ଡ ଯହୁଂ ହୋଇଲା ପ୍ରବେଶ
ଅସ୍ଥାନ ମଣ୍ଡଳରୁ ଚଳିଲେ ଯେଝା ବାସ । ୪ ।
ଯେ ଯାହା ମନ୍ଦିରେ ନଚନ୍ତେ ଶୋଇଲେ
ଆଠ ଘଇନ ଆଦ ଯେ ସମସ୍ତେ ନାଶଗଲେ । ୫ ।
ଯେ୍ୱଥୁ ଅନ୍ତରେ ପୁଣ ପାହିଲା ରଜନୀ
ଦେବତାଂକ ଅଳରେ ଶୁଭିଲା ଶଙ୍ଖଧ୍ୱନି । ୬ ।
ସାରଲେ ନିତ୍ୟକର୍ମ ଯେ ରନ୍ଧନ ଭୋଜନ
ଯୁଦ୍ଧକୁ ଯିବାକୁ ପୁଣ କଲେ ଆଗମନ । ୭ ।

ତ୍ରିଦଶ ଦେବତାସ୍ୱେ ଶୁଣିଲେ ଶଙ୍ଖଧ୍ୱନି
ସାଧୁ ସାଧୁ ପାଣ୍ଡବେ ବୋଲି ବୋଲନ୍ତି ପଦ୍ମଯୋନି । ୧୨ ।

ସ୍ନାହାନ ନର୍ତ୍ତକର୍ମ ସାରଣ ବେଗ ବେଗ
ଯେ ଯାହାର ସମଦଣ୍ଡ ଯେନ ହୋଇଲେ ବେନି ଭାଗ । ୧୩ ।

ବାଜଇ ଖରତୁର ଝମକ ନିଶାଣ ଦାଉଂଣ୍ଡି
ଖର ବେଶ ଅଳଂକାର ହୋଇ ଯେ ଯାହାର ରଥ ମଣ୍ଡି । ୧୪ ।

ଟର୍ଜନ୍ତି ଗର୍ଜନ୍ତି ଡାକନ୍ତି ନାମ ଧରି
ସାଜ ରେ ସାଜ ରେ ବୋଲି ବାଜଇ ଖର ଭେରୀ । ୧୫ ।

ନନ୍ଦିଘୋଷ ରଥରେ ଶ୍ରୀକୃଷ୍ଣ ସାରଥି
ଶ୍ରୀକରେ ଗାଣ୍ଡିବ ଧନୁ ଧରି ଯେ ବିଚକ୍ଷଣାର୍ଯ୍ୟର ନାତି । ୧୬ ।

ଭୀମସେନର ରଥେ ସାରଥି ବଳସ୍ୱେ
ବିଶ୍ୱାବସୁଂକର ଯେ ଅଟଇ କନିଷ୍ଠ ତନସ୍ୱେ । ୧୭ ।

ଭାଗ୍ୟବର ସାରଥି ଯେ ନକୁଳର ରଥେ
ସହଦେବ ରଥେ ସାରଥି ହୋଇଲେ ଅନାଗତେ । ୧୮ ।

ଯୁଧିଷ୍ଠିରଂକର ରଥେ ସାରଥି ଶାକଲ୍ୟ ବ୍ରାହ୍ମଣେ
ପ୍ରଖରର ନାତି ଯେ ମଣ୍ଡୋଳେ ସ୍ୱେକଜଣେ । ୧୯ ।

ଧୃଷ୍ଟଦ୍ୟୁମ୍ନର ରଥେ ସାରଥି ଅରୁଣତେଜ
ଦ୍ରୁପଦର ରଥେ ସାରଥି ମକରଧ୍ୱଜ । ୨୦ ।

ଜମ୍ବୁନଦ ନାମେ ସାରଥି ଯେ ବିରାଟର ରଥେ
ସାତ୍ତ୍ୱକୀ ସାରଥି ଶ୍ୱେତ କୁମାରର ରଥେ । ୨୧ ।

ହରିସାଗର ପୁରେ ହରିଦଳନ ବୋଲି ଦକ୍ଷ
ସେ ସାରଥି ପଣେ ରଥ ବାହଇ ଦୁର୍ଦ୍ଧର୍ଷ । ୨୨ ।

---

୧୨।୧ ଅକାଶେ ଶୁଭିଲା କେଶବ ଶଙ୍ଖଧ୍ୱନି । ( କ, ଘ, ଝ, ଠ )
୧୯।୧ ଧର୍ମପୁତ୍ରଂକ ରଥେ ସାରଥ ସଙ୍କର୍ଷଣ ବ୍ରାହ୍ମଣ । ( ଅ, ଊ, ନ )
୨୧।୧ ଜମ୍ବୁସେନ ନାମେ ସାରଥ ବିରାଟର ରଥେ । ( ଊ, ଥ, ନ )

ସୁଭଦ୍ରା ନନ୍ଦନ ଯେ କୁମାର ଅଭିମନ୍ୟୁ
କେତନ ସାରଥି ଉମାବସୁଂକ ତନୁ । ୨୩ ।
ଦ୍ରୁପଦର ନନ୍ଦନ ମହାରଥୀ ଶିଖଣ୍ଡୀ
ସମର୍ଥେକ ସାରଥି ତାହାର ରଥ ମଣ୍ଡି । ୨୪ ।
ହିଡମ୍ବିକାର ନନ୍ଦନ ଘଟଉତ୍କଟ ମହାବଳୀ
ତା ରଥେ ସାରଥି ଅଟଇ କୃଷ୍ଣାବଳୀ । ୨୫ ।
ଶଙ୍ଖନାମେ ରଥୀ ଯେ ବିରାଟର ସୁତ
ଚଇତନ ସାରଥି ବାହଇ ତାର ରଥ । ୨୬ ।
ଉତ୍ତର କୁମାର ଯେ ସୁଦେଷ୍ଣାର ବଳା
ତାହାର ରଥେ ସାରଥି ଅଟଇ ସସ୍ତ୍ରକଳା । ୨୭ ।
ଘଟଉତ୍କଟ ନନ୍ଦନ ଅଞ୍ଜନପ୍ରଭ ବୀର
ତାହାର ସାରଥି ଦିବାକର ଶବର । ୨୮ ।
ଜାରାସନ୍ଧ ନନ୍ଦନ ସହଦେବ ଜୟସେନ
କୁମ୍ଭ ନିକୁମ୍ଭ ସାରଥି ଅଙ୍ଗିରାଂକ ନନ୍ଦନ । ୨୯ ।
ଭୀଷ୍ମଂକର ରଥେ ଯେ ଅନୁମତ ସାରଥି
କଂକ ଇନ୍ଦ୍ର ପୁତ୍ର ଅରୁଣର ପଣନାତି । ୩୦ ।
ଛନିପୁତ୍ର ସୁନ୍ଦର ଭଗେଇମଲ୍ଲ କର୍ଣ୍ଣ
ଶୋତକ କାଳସର୍ପ ତାହାଂକ ସାରଥି ବିଦ୍ୟମାନ । ୩୧ ।
ଦ୍ରୋଣଂକର ରଥେ ଯେ ବିଷାଦ ସାରଥି
ଅଙ୍ଗିରା ଦଇବତଂକର ସେ ଅଟଇ ପଣନାତି । ୩୨ ।
କୃପଂକ ରଥେ ସାରଥି ଭଗ୍ୟବର ଗୁରୁ
ବିଶ୍ୱଦେବାଂକର ନନ୍ଦନ ସେ ଅଇଲେ ସ୍ୱର୍ଗ ପୁରୁଂ । ୩୩ ।

---

୨୫।୧ ହିଡମ୍ବିକାର ନନ୍ଦନ କୃତାନ୍ତକ ବଳୀ । ( ଓ, ଥ, ନ )
୨୭।୨ ତାହାର ରଥେ ସାରଥି ଅଟଇ କୃଷ୍ଣ କଳା । ( ଓ, ଥ, ନ )
୨୮।୨ { ଘଟଉତ୍କଟର ନନ୍ଦନ ଘଟକା ନାମେ ବୀର ( ବହୁପାଠ )
ବିଦ୍ୟାରୁକ, ବିଦ୍ୟାରଜ, ବିଦ୍ୟାକର, ବିବାକୁର ପ୍ରଭୃତି ପାଠମାନ ଦେଖାଯାଏ ।
୩୨।୧ { ଦ୍ରୋଣଂକର ରଥେ ଯେ ନିଷାଦ ସାରଥି । ( ଛ, ଠ )
ଦ୍ରୋଣଂକର ରଥେ ଯେ ବିଶ୍ୱକେସନ ସାରଥି ( ଚ, ଘ )
୨୩।୨ ଉମାବସୁଂକର ତନୁ—ଉମାବଇର ତନୁ ପାଠ ଦେଖାଯାଏ ।।

ଅଶ୍ୱତ୍ଥାମାଂକର ରଥେ ସୂକଜଙ୍ଘା ସାରଥି
ଗୋରେଖାଂକର ନନ୍ଦନ ସେ ମହାଇନ୍ଦ୍ରଂକ ପଣେନାନ୍ତି । ୩୪ ।
ଶଲ୍ୟଂକର ରଥେ ଯେ ସାରଥି ମହାଦେବ
କୁଷ୍ମାଣ୍ଡ ଋଷିଂକ ନନ୍ଦନ ସେ ଅନଙ୍ଗ ସଦାଶିବ । ୩୫ ।
ଅନଳ ବସୁଂକ ନନ୍ଦନ ଵିରୋଚନ ନାମେ ବସୁ
ଭୂରିସର୍ବାଂକର ରଥେ ସେ ସାରଥି ପଣେ ଆସୁଂ । ୩୬ ।
ମହ୍ଳାର ଦେଶର ରାଜା ଅଟଇ ବଳକେତୁ
ସୋମଦତ୍ତ ମହାରଥୀଂକର ରଥେ ସେ ଅଟଇ ସାରଥି । ୩୭ ।
ବାହ୍ଲିକ ମହାରଥୀ ସେ କଣସ୍ତୃଷ୍ଟଦେ ରଥେ
ଅସୁକରା ସାରଥି ଯେ ବୃନ୍ଦାଅର୍କ ଦଇବତେ । ୩୮ ।
କୁରୁକୁଳ ମଣ୍ଡନ ରାଜା ମାନଚନ୍ଦ୍ରଗ୍ରୀଷ୍ଠ
ତାହାର ରଥେ ଯେ କୁମୁଦ ସାରଥି । ୩୯ ।
ରାବଣର ରଥ ସେ ବାହଇ ସର୍ବକାଳେ
ଦ୍ରୁଯୋଧନ ରଥେ ସାରଥି ହୋଇଲା ମହାଭାରଥ ଯୁଦ୍ଧ ବେଳେ । ୪୦ ।
ଭୃଥର ନନ୍ଦନ ସେ କୁମାର ମନ୍ମଥ
ଅହନଶି ସାରଥି ମେତ୍ର ଧୁଃଶାସନର ରଥ । ୪୧ ।
ଗାଲବର ନନ୍ଦନ ଯେ ନୃପତି ସଞ୍ଜୟେ
ସେ ସାରଥି ହୋଇଣ ଧୃତରାଷ୍ଟ୍ର ରଥ ବାହେ । ୪୨ ।
ସିନ୍ଧୁ ଦେଶର ରାଜା ଯେ ଅଟଇ ଜୟଦ୍ରଥ
ତାହାଂକର ରଥେ ଅନୁପାମ ମନ୍ମଥ । ୪୩ ।
କର୍ଣ୍ଣାଟ ଦେଶର ରାଜା ହାଦେ କର୍ଣ୍ଣକେଶୀ
ତାହାର ରଥ ବାହଇ କାମାକ୍ଷୀ ନାମେ ଦାସୀ । ୪୪ ।
କାଶୀ ଦେଶର ରାଜା ନାମ କାମେଶ୍ୱର
ଭଇରେବ ସାରଥି ଯେ ତାହାର ରଥର । ୪୫ ।

---

୩୫।୨ କୁମ୍ଭଂକର ନନ୍ଦନ ସେ ଅନଙ୍ଗ ସଦାଶିବ ( ଘ, ଟ )
୩୭।୧ { ମହ୍ଳାର ଦେଶର ରଜା ଅଟଇ ବଳକେତୁ । ( ଙ, ଝ )
{ ମହାର ଦେଶର ରାଜା ଅଟଇ ମହକେଶୀ । ( ଊ, ଥ, ନ )
୪୧।୧ ଭଗଦତ୍ତର ନନ୍ଦନ ଯେ କୁମାର ମନମଥ । ( ଊ, ଝ, ଣ )
୪୩।୨ ତାହାଂକର ରଥେ ଅନୁପମ ମନୁରଥ । ( ଙ, ଛ, ନ )

ମାଳବ ଦେଶର ରାଜା ଅଟଇ କୃତବର୍ମା
ତାହାର ରଥେ ସାରଥି ମଳୟାନିଳ ମହାତମା । ୪୬ ।
ନର୍ମ୍ମର ଦେଶ ରାଜା ଯେ ଅଟଇ ଗଣପତି
ବଜ୍ରାଙ୍ଗ ବୋଲିଣ ଯେ ତାହାର ସାରଥି । ୪୭ ।
ଅଳମ୍ବୁଷା ବୋଲି କରି ଯେ ଯେତକଇ ରାକ୍ଷସ
ଦ୍ରୁଯୋଧନ ମଇତ୍ର ସେ ବଡ଼ାଇ ବିଶ୍ୱାସ । ୪୮ ।
କୁରୁତାନ୍ତେକ ବୋଲିଣ ଯେ ତାହାର ସାରଥି
ଅଳାୟୁଧର ସାରଥି ଯେ ଧାନୁକୀ କୁଶକେତୁ । ୪୯ ।
ଯେମନ୍ତେ ଅନେକ ରଥୀ ଯେ ଅନେକ ସାରଥି
ସଞ୍ଜପି କହିବାକୁ ଲେଖନ୍ତେ ଅପ୍ରମିତ । ୫୦ ।
ଅଛନ୍ତି ମହା ମହା ରଥୀ ମହା ମହା ରାଯେ
ଠିକ ଠିକ କରି ମୁଂ କହିଲି ଥୋକାଯେ । ୫୧ ।
ରଥୀମାନଂକ ଉପରେ ଅର୍ଜ୍ଜୁନ ଶିରୋମଣି
ତାହାର ରଥେ ସାରଥି ଦେବ ଚକ୍ରପାଣି । ୫୨ ।
ବଜାଯେ ପାଣ୍ଡବେ ଯେ ସମର ରଣଭୂମି
ଶ୍ୱେତ ହାଥୀ ଉପରେ ବଜାଯେ ଧର୍ମ ସ୍ୱାମୀ । ୫୩ ।
ବିରାଟର ନନ୍ଦନ ଯେ ବଳବନ୍ତ ମହାରଥୀ ଶ୍ୱେତେ
ପାଣ୍ଡବେ ମୁକୁଟ ନେଇ ବାନ୍ଧିଲେ ତାର ମାଥେ । ୫୪ ।
ସମର ଶବଦ ଯେ ଶୁଣିଲା ଯୁଗତି
ବିରାଟର ନନ୍ଦନ ଯେ ଶ୍ୱେତ ମହାରଥୀ । ୫୫ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମନ ଶଙ୍ଖ ଉତ୍ତର ଚଳଣି
ଓହୋଟିଳ ମଧ୍ୟେ ଶ୍ୱେତ କୁମାର ଅଟିଆଣି । ୫୬ ।
କଉରୋବ ଥାଟେ ଆଟିଆଣି ଭୀଷ୍ମ ମହାରଥୀ
ତାହାଂକର ଗ୍ରାମ୍ଭରେ ଶ୍ୱେତ ମିଳିଲା ତତକ୍ଷଣ । ୫୭ ।
ଭୀଷ୍ମେ ବୋଇଲେ ତୁ କର ବାଳୁତ ଅଗ୍ୟାନ
ତୋହୋର ତଳେ କାହିଂ ମୋ ସମର ବଦ୍ୟମାନ । ୫୮ ।

---

୪୯।୧ କୁରୁଭାଙ୍କ ବୋଲିଣ ଯେ ତାହାର ସାରଥି । ( ଙ, ଡ଼, ଚ,ଝ, ଘ)
୪୯।୨ ଧାନୁକୀ—ଧନୁର୍ଦ୍ଧାରୀ ।

ସାଂଗ୍ରାମେ ତୋତେ ଜିଣିଲେ କିସ ପଉରୁଷ
ସମରେ ସାନ ପୁଅନ୍ତ ମାଇଲେ ବଡ଼ ଦୋଷ । ୫୯ ।
ଶୁଣିଣ କୁମାର ଯେ କୋପରେ ପରଜଳି
ଭୀଷ୍ମଙ୍କଇଂ ନାରାଚ ସେ ବିନ୍ଧିଲା ଜାଳାବଳୀ । ୬୦ ।
ଅଦଭୂତେ ଶର ବୃଷ୍ଟି ଯେ ହୋଇଲା ଗଗନୁଂ
ପ୍ରଶଂସନ୍ତି ପାଣ୍ଡବେ ଯେ ଶାନ୍ତନୁନନ୍ଦନୁ ତନୁ । ୬୧ ।
ସାଧୁ ସାଧୁ ମହାତ୍ମା ରେ ସୁଦେଷ୍ଣାର ସୁତ
କେବଣ ବିଦ୍ୟାଗୁଣେ ତୁ ରେ ପେଲୁଅଛି ସାମରଥ । ୬୨ ।
ଶ୍ୱେତକଙ୍କଇଂ ଆଡ଼ିଜ କରି ଭୀଷ୍ମ ମହାରଥୀ
ଅର୍ଜୁନ ସମ୍ମୁଖରେ ଆସି ମିଳଲେ ତତକ୍ଷଣ । ୬୩ ।
ମାତୁଳା ସାରଥି ଯେ ବାହଇ ତୁରଙ୍ଗ
ରଥ ବାହି କଲା ନେଇ କର୍ଣ୍ଣ ବୀର ଆଗ । ୬୪ ।
ରାଧେୟର ନନ୍ଦନ ଯେ ଭରୋଇମଲ୍ଲି କର୍ଣ୍ଣ
ଶ୍ୱେତକୁମାର ତୁଲେ ସମର କଲାକ ଆଧାନ । ୬୫ ।
ଲୁହାର ଶର ଯେ ଶଙ୍ଖ ଚଳ ପକ୍ଷୀ
ଅପାର କାଳରୁ ସେ ଶର କର୍ଣ୍ଣ ଧନୁରେ ପୂରେଇ ଅଛି । ୬୬ ।
ଅଗ୍ନିଶର ଜାଣିଣ ସେ ପଞ୍ଚଷଠି କୋଟି
ଗତରାଗେ ତାହା କର୍ଣ୍ଣ ପେଲୁକାନ୍ତକେ କଲା ବୃଷ୍ଟି । ୬୭ ।
ମେଦନୀ ଆଲୁଅମୟେ ଦିଶିଲା ମହାଜ୍ୟୋତି
ପଞ୍ଚବାଣେ ଶ୍ୱେତ ସେ ଶରକଇଂ ପକାଇଲା ବିକୋଟି । ୬୮ ।
ପୁଣ ଶତେକ ନାରାଚ ଯେନ ତୀକ୍ଷ୍ଣମୁନା
ଆନ୍ଦେଷି ବିନ୍ଧିଲା କର୍ଣ୍ଣ ଶ୍ୱେତ କୁମାର ବକ୍ରସେହ୍ନା । ୬୯ ।

---

୬୨।୨ ଶ୍ୱେତର ଉପରକୁ ବୀର କର୍ଣ୍ଣ ବିନ୍ଧିଲାକ ଯୋଟ । ( ଙ, ଥ, ନ )
୬୯।୨ "ଆନ୍ଦେଷି ବିନ୍ଧିଲା କର୍ଣ୍ଣ ଶ୍ୱେତ କୁମାର ବକ୍ରସେହ୍ନା"
ପଦପରେ ଙ, ଥ, ନ ପୋଥିରେ ଭିନ୍ନ ପାଠ:—
ପୁଣ ଶତେକ ନାରାଚ ଯେ ବିନ୍ଧିଲାକ ଶ୍ୱେତ
କର୍ଣ୍ଣର ଶରମାନ ସବ ଗଲା ହତ ।
ପୁଣ ସତଷଠି ନାରାଚ ବିନ୍ଧିଲା ବୀର ଶ୍ୱେତ
ରୋମେ ରୋମେ ଭେଦିଲା ଯେ କର୍ଣ୍ଣର ହୃଦଗତେ । ( ଙ, ଥ, ନ )
୬୯।୧ ତୀକ୍ଷ୍ଣମୁନା ସ୍ଥାନରେ ବକ୍ରମୁନା ପାଠ ଦେଖାଯାଏ ।

ଆସନ୍ତେଣ ନାରାଜ ଦେଖିଲା ଶ୍ୱେତ ଦୂରେ
କର୍ଣ୍ଣର ଶତେକବାଣ ଛେଦିଲା ଛାକ୍ଷ ଶରେ । ୭୦ ।
କାମ୍ୟେକ ଶର ସେ ପ୍ରହାର କଲା ଶ୍ୱେତ
ଧାଏଁଣ ଭରେଇମଲ୍ଲି ହୋଇଲା ଅଚେତ । ୭୧ ।
ଯେସନେକେ ପଶନ୍ତି ବମ୍ବରେ ଉଡଙ୍ଗେ
କର୍ଣ୍ଣର ଶରୀରେ ଶର ଭେଦିଲେ ଅତି ବେଗେ । ୭୨ ।
ସମ୍ଭାଳ କର୍ଣ୍ଣ ବୋଲି ଶ୍ୱେତ କରଇ ପୂଛା
ଅସାଷ୍ଟମେ କର୍ଣ୍ଣ ଯେ ପଡଗଲା ମୂର୍ଚ୍ଛା । ୭୩ ।
ସାରଥି ରଥ ଘେନି ଗଲାକ ଅପସରି
ସେହିଷ୍ଣା ପୁଟି କର୍ଣ୍ଣର ଶରୀର ରୁଧିରେ ଜରଜର । ୭୪ ।
କର୍ଣ୍ଣର ପଳାବନ୍ତେ ଭାଜିଲେକ ସଇନ
କର୍ଣ୍ଣକଇଂ ମାର ବୋଲି ଥାଠେ ଶୁଭିଲାକ ଧୁନ । ୭୫ ।
କର୍ଣ୍ଣର ଭୁଲେ ଥିଲେ ଯେ ପଞ୍ଚାଶୋଇ ସହସ୍ର ରଥୀ
ଭାଜିଲେ ସଇନେ କେହି ନ ରହିଲେ କତି । ୭୬ ।
ଜାବନ୍ତେ ଉଠିଲେ ବିରାଟର ତିନି ପୁତ୍ରେ
ସ୍ୱେକମୂଖେ ନାରାଜ ବର୍ଷିଲେ ଅପ୍ରମିତେ । ୭୭ ।
ପଞ୍ଚାଶନ ସହସ୍ର ରଥି ଓଗାଳିଲେ ସ୍ୱେ ତିନି କୁମାରଂକୁ
ଅନର୍ଯାପ ବାଣ ଯେ ବର୍ଷିଲେ ତାହାଂକୁ । ୭୮ ।
ପଡନ୍ତେଣ ଆସି ଶର ଆକାଶ ପନ୍ଥ ଯେ ନ ଦିଶି
ଅମାବଇ ଦିନେ ଯେହ୍ନେ ଅନ୍ଧାର ହୋଏ ନିଶି । ୭୯ ।
ଅନର୍ଯାପ ଶର ଦେଖିଣ ବିରାଟି
ସୂଚିମୁନା ନାରାଜ କୋପେଣ କଲା ବୃଷ୍ଟି । ୮୦ ।
ରଥ ଗଜ ଅଶ୍ୱ ଯେ ଚ୍ଛିନ୍ନିଲେ ସର୍ବଯୋଧୀ
ରୋମେ ରୋମେ ନାରାଜ ପଡଲେ ମର୍ମ ଭେଦି । ୮୧ ।
ପଡନ୍ତେ ଗଳ ରୁଧିର ଝରନ୍ତି ଚର୍ମାବଳୀ
ଶରୀର ଦିଶଇ ମନ୍ଦାର ପୁଷ୍ପ ଭଳି । ୮୨ ।
ରୁଧିର ବୃଷ୍ଟି ହୋଇ ସମସ୍ତେ ପଡିଲେ ନିମଞ୍ଜି
ପାଦାନ୍ତ ବଳ ଦେଖି ପଳାଇଲେ ଭାଜି । ୮୩ ।

---

୭୨।୧ ଉଡଙ୍ଗ—ସର୍ପ ।

ଗୋଡ଼ାଇ ବନ୍ଧନ୍ତ ଯେ ବଗାଡ଼ ତିନ ପୁରେ
ନାରାଜର ଘାୟେ ଲୋଟନ୍ତ ରଥୀ ହାଥୀ ସହିତେ । ୮୪ ।
ଧୃଷ୍ଟଦ୍ୟୁମନ ଶ୍ରୀଖଣ୍ଡୀ ଯେ ବେଗେ ଆସି
ଦେଖିଣ ଦ୍ରୋଣେ ତାହାନ୍ତ ନାରାଜ ବରଷି । ୮୫ ।
ଉତ୍ତର କୁମାର ଭୁଲେ ଧୃଶାସନର ସମର
ଶ୍ରୀଖଣ୍ଡୀ ମିଳଲା ଯାଇ ଅଶସ୍ତମାର ଆଗର । ୮୬ ।
ଦେଖିଣ କୋପଭର ଭାରଦ୍ୱାଦଶଂକର ନାତି
ଶ୍ରୀଖଣ୍ଡୀକ ଧୋଟିଲା ଯେ ମନ୍ଦର ଜାଣି ମୂର୍ତ୍ତି । ୮୭ ।
ଅଶସ୍ତମା ବୋଇଲା ରେ ପଣ୍ଡଲୁ ମୋର ମୁଖ
ତୋତେ ମାଇଲେ ଯିବ ଶାମ୍ବନ୍ତନୁର ଦୁଖ । ୮୮ ।
ପଗୃରୁଂ ପଗୃରୁଂ ସେ ଦ୍ରୋଣଂକର ବଳା
ଆକ୍ଷେପି ନାରାଜ ଯେ ବନ୍ଧିଲା ମହାଖଳା । ୮୯ ।
ପଡ଼ିଲେ ନାରାଜ ଯେ ତଳ ମଞ୍ଜି ବୁଣିଲାର ପ୍ରାୟେ
ସେହ୍ମା ଫୁଟି ଭେଦିଲା ଯେ ଶ୍ରୀଖଣ୍ଡୀର କାୟେ । ୯୦ ।
ଶୁଣ ହୋ ଚଇତନ ଶ୍ରୀଖଣ୍ଡୀର ରଥୀ ପଣ
ବେମେ ବେମେକେ ନାରାଜ ଗୁନ୍ଥି ହୋଇଅଛୁ ଯେଣେ କରଇ ରଣ ।୯୧।
ଗନ୍ଧର୍ବା ନାରାଜ ଯେ ଶ୍ରୀଖଣ୍ଡୀକ ଭୁଲାକର୍ଣ୍ଣ ହେଲା
ସେ ଶର ଘେନଣ ଶ୍ରୀଖଣ୍ଡୀ ଅଶସ୍ତମାକୁ ମାଇଲା । ୯୨ ।
ଯେତେକ ନାରାଜ ଅଶସ୍ଥାମା ଥିଲେ ଯୋଚ
ଗନ୍ଧର୍ବା ଶରେ ତାହା ଛେଦ ଯାଉଅଛୁ । ୯୩ ।
ଅଶସ୍ତମା ଯୋଚଥିଲେ ତିନ ସସ୍ତ ବାଣ
ତାହା ଛେଦଣ ଯେ ଛେଦିଲା ଧନୁ ହୋଣ । ୯୪ ।
ସେଷଣେ ନାରାଜ ଅଶସ୍ତମାର ବାମ ଭୁଜେଣ ଗଲାକ ନିକଳ
ଆପଣାର ଧନୁ ଶର୍ଯ୍ୟ ଅଶସ୍ତମା ନୁଆଣିଲା ସମ୍ଭାଳ । ୯୫ ।
ଅଶସ୍ତମା ବରଥୀ ଦେଖିଣ ସାରଥି
ରଥ ଘେନିଗଲା ଯେ ସମର ଉପେଖି । ୯୬ ।
ଅଶସ୍ତମା ଭଙ୍ଗଲେଣ ଯେ ଚଳାଇଲେ ସର୍ବ ବଳ
ଗୋଡ଼ାଇଣ ଶ୍ରୀଖଣ୍ଡୀ ଯେ ବନ୍ଧଇ ଅଗ୍ରଗଳ । ୯୭ ।

---

୯୪।୨   ଶ୍ରୀଖଣ୍ଡୀ ଚେଦିଲା ତାହା ପାଞ୍ଚଶର ମାରଣ । (ଥ, ଡ଼, ନ)

ଗୋଡ଼ାଇ ପାଦଗଣ୍ଡ ହୋଇଣ ଶ୍ରୀଖଣ୍ଡୀ
ଯୋଦ୍ଧାଙ୍କର ଉପରେ ନେଇ ପିଟିଲା ଭୂଷଣ୍ଡି । ୯୮ ।
ସେନ୍ୟ ପ୍ରହାରକେ ପଡ଼ନ୍ତି ଯେ ଦଶ ବଂଶ ଭରଶ
କରଇ କୁତୂହୋଳ ସେ ପଦ୍ମାବନ୍ତର ଶିଷ । ୯୯ ।
ଗଜ ଅଶ୍ୱ ସାରଥି ପଡ଼ଲେ ଭୂମିଗତେ
ଭାଙ୍ଗିଲେ କୁରୁବଳ ଯେ ନ ରହନ୍ତି କଦାଚିତେ । ୧୦୦ ।
ଭୀଷ୍ମ ଅର୍ଜୁନର ଯେ ସମର ମହାଗୋଳ
ବାଣ ଜାଳାବଳୀ ଜାଣି ଯେ ବରଷାର କାଳ । ୧୦୧ ।
ହାଥକଇଂ ହାଥ ଯେ ଦେଖାବନ୍ତି ବେନ
ଛଳ ପ୍ରମାଣେ ନାଗଜ ବନ୍ଧନ୍ତି ବେଗେ ଘେନ । ୧୦୨ ।
ବିରାଟର ନନ୍ଦନ ଯେ ଶ୍ୱେତ ମହାବଳୀ
ନାଗଜ ବନ୍ଧବାରେ ଧନୁ ତା କୁଣ୍ଡଳୀ । ୧୦୩ ।
ଓହୋବଳ ମଧ୍ୟେ ସେ ବଡ଼ାଇ ବଳବନ୍ତା
ସମରେ ସମସ୍ତଙ୍କ ସେହୁ ଅବଚ୍ଛନ୍ନେ ନ ଯାଇ ଗଣିତା । ୧୦୪ ।
ବାହଇ ତୁରଙ୍ଗମ ସାରଥି ମାଧବ
ଦ୍ରୋଣଙ୍କ ସମ୍ମୁଖରେ ରଥ ଟେକ ବାଣ ପରାଭବ । ୧୦୫ ।
ଭରଦ୍ୱାଜଙ୍କ ନନ୍ଦନ ଅଟନ୍ତି ବିଦ୍ୟାଗୁରୁ
ଇନ୍ଦ୍ର ଶଂକା କରଇଟି ଯାର ଧନୁ ଧରୁ । ୧୦୬ ।
ଶ୍ୱେତକଇଂ ଦେଖି ପୂଜା କରନ୍ତି ଗୁରୁ ଦ୍ରୋଣେ
ସେ ମହୀ ମଣ୍ଡଳେ ଦ୍ରୋଣଗୁରୁ ମହଂ ସେନାଜଣେ । ୧୦୭ ।
ବାଳୁତ ଭାବେ ତୁ ରେ କଣ୍ଟିହିଂ ନ ଜାଣୁଂ
ଦ୍ୱନ୍ଦ ଅନର୍ଥ ତୁ ରେ ସେନ୍ୟକତ ପ୍ରାୟେ ମଣୁଂ । ୧୦୮ ।
ଶ୍ୱେତ ବୋଇଲା ସେବେ ସେମାନ ଗୁଡ଼ ଗୁରୁ
ଗୁଗଲ ପ୍ରାନମେ କ ଟାଳ ହୋଅଇ ମେରୁ । ୧୦୯ ।
କାଳଚନ୍ଦ ପ୍ରାୟେ ଦ୍ରୋଣଙ୍କର ବୁଲଇ ବେନି ଆଖି
ବନ୍ଧିଲେ ନାଗଜ ଗୁରୁ ଉପ୍ରୋଧ ଉପେକ୍ଷି । ୧୧୦ ।
ଶତେମୂନା ଶକତ କାଳାନ୍ତକ ପ୍ରାୟେ
କୋପେଣ ବନ୍ଧିଲେ ଭରଦ୍ୱାଜଙ୍କର ତନୟେ । ୧୧୧ ।

---

୯୯।୨ କଉତୁକ ଯୁଦ୍ଧ କରଇ ସେ ପଦ୍ମାବତୀର ଶିଷ୍ୟ । (ଥ, ଞ, ନ)

ଦେଖିଣ ଶ୍ୱେତ ବୀର ବନ୍ଧିଲା ଶର କୋଟି
ଛଇଗୁଡ଼େ ଦ୍ରୋଣଂକର ରଥ ଗଲା ଫାଟି । ୧୧୨ ।
ପୁଣ ଶ୍ୱେତକୁମାର ବନ୍ଧଇ ଖରବାଣ
ଘାତ୍ୟେଣ ଭେଦିଲା ସେ ଦ୍ରୋଣଂକର ସେହ୍ନା । ୧୧୩ ।
ନାରାଜ ଭେଦନ୍ତେ ଦେଖିଲେ ଦ୍ରୋଣ ସେନାପତି
ସୂର୍ଯ୍ୟାଗ୍ରତେକ ବାଣ ସେ ବନ୍ଧିଲେ ତତକ୍ଷଣାନ୍ତି । ୧୧୪ ।
ନିଦାଘ ଶର ସେ ଯେ କାଳାନଳ ପ୍ରାପ୍ତେ,
ରଥ ଘୋଟି ବ୍ୟାପିଲା ଶ୍ୱେତ କୁମାରର କାୟେ । ୧୧୫ ।
ଅମିତ୍ର ନାରାଜ ଯେ ଶ୍ୱେତ କୁମାର ଧରି କ୍ଷେପି
ତ୍ରିଭୁବନ ବ୍ୟାପିଲା ଯେ ନାରାଜ କାମରୂପୀ । ୧୧୬ ।
ଦେନି ଶର ଭେଟି ମଧ୍ୟେ ପରିତାଳ କରି
ଗୁଣଧ୍ୱଷ୍ଟ ନାଦେ ଯେ ଅବମା ଅସ୍ତ୍ର ପୂରି । ୧୧୭ ।
ଯେସନେ ଗଗନେ ଉଦୟେ ଆଦ୍ରିବଳୀ
ତେସନ ସାଦ୍ୱଶେ ଧନୁର ତେଜ ପରିକଳି । ୧୧୮ ।
ତିରଶି ନାରାଜ ଯେନଣ ବିଦ୍ୟାଗୁରୁ
ଘୋଟିଲା ନାରାଜ ଶ୍ୱେତର ଅଙ୍ଗରୁ । ୧୧୯ ।
ପୁଣ ଶତେକ ନାରାଜ ପୂରୋଇଣ ଦ୍ରୋଣେ
ସାତୁକୀ ସାରଥିକ ବନ୍ଧିଲେ ତତକ୍ଷଣେ । ୧୨୦ ।
ଗୃରି ଅଶ୍ୱକୁହ୍ନଂ ବଶାଶତେ ଶର
କୋପେଣ କୋଡ଼େଯେ ଶର ବନ୍ଧିଲେ ଗୁରୁ ଶ୍ୱେତ ରଥର ଉପର ।୧୨୧।
ଦ୍ରୋଣଂକର ଶର ପଡିଲା ମହାରଣେ
କୋପେଣ ପେଷିଲା ଶ୍ୱେତ କାଳଚନ୍ଦ୍ର ବାଣେ । ୧୨୨ ।
ଅନେକ ନାରାଜ ଯେ ପେଷିଥିଲେ ଦ୍ରୋଣ ଗୁରୁ
ଚନ୍ଦ୍ରର ବଧାତେଣ ସେ ନାଶିଲାକ ଦୂରୁଂ । ୧୨୩ ।
ଖଣ୍ଡି ପିଶାଷ ନାରାଜ ଦ୍ରୋଣ ଗୁରୁ ଯେ ପ୍ରହାରି
ମୁଦୁଗର ଯେନ ତାହା ଶ୍ୱେତ କୁମାର ନିବାରି । ୧୨୪ ।

---

୧୨୪।୧ ଖଣ୍ଡିନିର ନାରାଜ ଦ୍ରୋଣ ଗୁରୁ ଯେ ପ୍ରହାରି । (କ, ଝ, ଢ, ଞ, ଥ, ନ)

ସହସ୍ର ମୁନା ନାରାଜ ବନ୍ଧଲେ ଦ୍ରୋଣ ସେନାପତି
କରଣ ନାରାଜେ ଶ୍ୱେତ କୁମାର ବିକୋତି । ୧୨୫ ।
ଅରୁଣ କରଣ ଜାଣି ଶର ତେଜ ଯେ ବିକାଶି
ଦ୍ରୋଣଂକର ନାରାଜ ଶ୍ୱେତ କୁମାର ବିନାଶି । ୧୨୬ ।
କୋପେ ଶ୍ୱେତ ବନ୍ଧିଲା ହାବୋଡା ଶର ଘେନ
ଦ୍ରୋଣଂକର ରଥେ ପଡି ଝଲକଲା ବହ୍ନ । ୧୨୭ ।
ପୁଣ ଶ୍ୱେତ କୁମାର ଶର ବନ୍ଧିଲା ଗଳଗାଜ
ଶହସ୍ର ବିଘାତେ ଦ୍ରୋଣର ରଥଗଲା ଭାଜି । ୧୨୮ ।
ଆନ ରଥ ଆରୋହିଣ ଭରଦ୍ୱାଦଶଂକର ବଳା
ସମରେ ନାରାଜ ବନ୍ଧଲେ ମୃତ୍ୟୁ ଶହସ୍ର କଳା । ୧୨୯ ।
ଦ୍ରୋଣଂକର ଶ୍ୱେତରେ ଅସଂଖ୍ୟ ସମର
କହନ୍ତେ ନ ସରଇ ଦେବମାନବେ ଅଗୋଚର । ୧୩୦ ।
ଦୁସହ ସମର ଯେ ହୋଇଲା ରଣରଙ୍ଗ
ରୁଧିରେ ବୃଷ୍ଟି ଯେ ହୋଇଲାନ ବେନି ଅଙ୍ଗ । ୧୩୧ ।
ଶରଦ କାଳେ ଯେହ୍ନେ ଗର୍ଜଇଟି ଇନ୍ଦ୍ର
ଉଭୟ ବଳ ଯୋଦ୍ଧାପ୍ରେ ହୋଇଲେ ବିଷାଦ । ୧୩୨ ।
ଶର ବନ୍ଧଇ ଶ୍ରାବଣ ମାସେ ଯେସନେକ ବରଷଇ ପାଣି
ଛତ୍ରୀବର ସୋଦ୍ଧୋଡ ଶ୍ୱେତ କୁମାର ଚୂଡାମଣି । ୧୩୩ ।
ବିଜୟେ ସମରେ ପାଣ୍ଡବ ସାମରଥୀ
କହନ୍ତେ ନ ସରଇ ଭୀମସେନ ପୁନି କଥା । ୧୩୪ ।
କୋଟିଏ ଯୋଦ୍ଧା ଘେନି ହିଡମ୍ବି କାର ଆତ୍ମଜା
ସମରେ ପଶିଲା ସେ ଅସୁର କୁଳ ରାଜା । ୧୩୫ ।
ବିଶେଷେ ଅସୁର ଅଟନ୍ତି କାମରୂପୀ
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଭୁବନ ତିନି ବ୍ୟାପୀ । ୧୩୬ ।
ତର୍ଜନ୍ତି ଗର୍ଜନ୍ତି ଧରି ବୁଲଇଣ ଫିଙ୍ଗି
ତୁଣ୍ଡରେ ଧରଣ ଗିଳନ୍ତି ଅତି ବେଗି । ୧୩୭ ।

---

୧୨୮।୧ ବଜ୍ରାବଳୀ ଶର ଶ୍ୱେତ ମାଇଲା ଗଳଗାଜ (ଡ, ଥ, ନ)
୧୩୭।୨ ଉଦରେ ଧରଣ ଗିଳନ୍ତି ଅତି ବେଗି (ଙ, ଜ)

ଅଶ୍ୱନ୍ତ ଧରଣ ଫିଙ୍ଗନ୍ତ ଶୂନ୍ୟଝଣ୍ଡ
ଉପରକୁ ତଳେ ବସ୍ତାରନ୍ତ ତୁଣ୍ଡ । ୧୩୮ ।

ଅନେକ ନାଗ଼ଜ ଯେ ବନ୍ଧନ୍ତ କଉଡ଼ୋରେ
ତୁଣ୍ଡ ବସ୍ତାରଣ ତାହା ଗିଳନ୍ତ ଦାନବେ । ୧୩୯ ।

ଅସୁର ଦୁରନ୍ତକ ଭଞ୍ଜାଇଲେ ସଇନ
ଦେଖିଣ ଧାଇଁଲ ସେ କୁମାର ଧୂଶାସନ । ୧୪୦ ।

ସତ୍ତୁରି ମତ୍ତୁରି ଭାର ଗଦା ଘେନ ବେନ ହାଥେ
ସନ୍ଧ୍ୟାକାଳେ ଯେସନେ ହଶନ୍ତ ପରବତେ । ୧୪୧ ।

ରେ ରେ କାର ଶବଦ କରଣ ଧୂଶାସନ ଉଠି
ଗଦାବର ବୁଲାଇ ପିଟିଲ ଘଟଉକ୍ରଟର ପିଠି । ୧୪୨ ।

ଗର୍ଜିଣ ଉଠିଲ ସେ ହିଡମ୍ବିକାର ବାଳ
ପଡନ୍ତେଣ ଗଦା ସେ ପାତ୍ତିଲ ବକ୍ଷସ୍ଥଳ । ୧୪୩ ।

ଘଟଉକ୍ରଟ ଉପରେ ଗଦାବର ପଡ
ଅଗ୍ନି ନିର୍ଘାତ କ ପଡୁଅଛି ଝଡ । ୧୪୪ ।

ହିଡମ୍ବିକାର ନନ୍ଦନ ଧୂଶାସନ ଗଦାଘାତ ମେଣ୍ଟି
ବୀରବର କୋଠାର ଘେନଣ ବେଗ କର ପିଟି । ୧୪୫ ।

ଗାନ୍ଧାରୀ ନନ୍ଦନର ପଡିଲ ହୃଦଗତେ
ମୋହଗଲ ଧୂଶାସନ ଘଟଉକ୍ରଟ ହଘାତେ । ୧୪୬ ।

ମୋହେଣ ପଡିଲ ଯହୁଂ ବୀର ଧୂଶାସନ
ଅସିପନ୍ନ ଘେନଣ ସେ ଧାଇଁଲ ବହନ । ୧୪୭ ।

କ୍ଷଣକେ ଚେତିଲ ସେ ଧୃତରାଷ୍ଟ୍ରର ବାଳ
ଅସମ୍ଭାଳ ହୋଇଣ ସେ ସମରୁ ପଳାଇଲ । ୧୪୮ ।

ଆରେ ଆରେ ବୋଲଣ ଧାମଇଁ ଘଟ ଯେ ଉକ୍ରଟ
ରହ ରହ ଧୂଶାସନ ଆରେକ ବାରେ ଭେଉଟ । ୧୪୯ ।

---

୧୪୯।୨ ରହ ରହ ଧୂଶାସନ ଅରେକ ବାରେ ଭେଟ (ଥ, ଞ, ନ)

ଘଟଉତ୍କଚ ବୋଇଲା ତୋତେ ମୂଢ଼ଲକ୍ଷଣି ମାରନ୍ତ ରେ ଧୃଶା
ତୋହୋର ବୋଧିରକଙ୍କ ଦ୍ରୋପଦୀର ବଡ ଆଶା । ୧୫୦ ।
ଦକ୍ଷିଣ ଭୂଜ ତୋର ଓପାଡବେ ଭୀମସେନ
ଦ୍ରୋପଦୀ କେଶ ପଖାଳବେ ଭଦ୍ୟମାନ । ୧୫୧ ।
ପଳା ଯା ଧୃଶାସନ ଲୁଚ ହସ୍ତିନା ପୁରେ
ଆଉବେଳେ ନ ପଶିବୁ ମହାଭାରଥ ଯୁଦ୍ଧରେ ।। ୧୫୨ ।
ଭୀଷ୍ମ ଅର୍ଜୁନର ସମର ଯେ କଥା
ଲାଘବ ଶରମାନ ଯେ ପେଷନ୍ତ ଅପ୍ରମିତା । ୧୫୩ ।
ଶ୍ୱେତର ସମର ଯେ ଦ୍ରୋଣଂକର ଭୁଲେ
ଦିନକର ନାଥ ଆସି ମଧ୍ୟସ୍ଥାନେ ବିଜେ କଲେ । ୧୫୪ ।
ଭରଦ୍ୱାଜଣଂକର ନନ୍ଦନ ଯେ ସମରେ ହୋଇଲେ ବିମୁଖ
ନାଗଜ ବନ୍ଧ ବନ୍ଧ ଗୁରୁ ପାଇଲେନ ବଡ ଦୁଖ ।୧୫୫ ।
ଶ୍ୱେତକଙ୍କ ଗୁରୁ ଜଣି ନୁଆରିଲେ କେବେହେଂ
ଦେବ ଶଦ୍ଧସ୍ତ୍ର ଗୁରୁ ବନ୍ଧିଲେକ ସମର ସନ୍ଦେହେ । ୧୫୬ ।
କୁହୁକା ନାଗଜ ପୂରେଇଂ ବନ୍ଧିଲେ ଦ୍ରୋଣ ଗୁରୁ
ସୂର୍ଯ୍ୟାସ୍ତ୍ରେକ ଶର ମାରି ନିବାରିଲା ଶ୍ୱେତ ଦୂରୁଂ । ୧୫୭ ।
ପୁଣ ଅଗ୍ନି ବାଣେକ ଯେ ପେଷିଲେ ଦ୍ରୋଣ ଗୁରୁ
ଜଳଧାର ବାଣେ ଶ୍ୱେତ ତାହା ନିବାରିଲେକ ଧୂରୁଂ । ୧୫୮ ।
ଅଗ୍ନିର ତେଜ ଯହୁଂ ହୋଇଲା ନିଭନ
ପ୍ରଶଂସନ୍ତ ଦ୍ରୋଣେ ଶ୍ୱେତ ଜୀବନ ତୋର ଧନ୍ୟ । ୧୫୯ ।
ପୁଣି ପର୍ବତା ଶର ବନ୍ଧିଲେ ଗୁରୁ ଦ୍ରୋଣେ ରୋଷେ
ଗର୍ଜିଣ ପଥରେ ଯେ ଆସନ୍ତ ଆକାଶେ । ୧୬୦ ।
ଶ୍ୱେତ ଦେଖିଲା ହେ ପାଷାଣ ଶିଳାବୃଷ୍ଟି
ବଜ୍ର ଶରେ ତାହା ଛେଦିଲା ବିରାଟି । ୧୬୧ ।
ଦ୍ରୋଣେ ପ୍ରଶଂସନ୍ତ ଶ୍ୱେତଂରେ ଜୀବନ ତୋର ଧନି
କେଉଁଣ ଲମ୍ବେ ଜାତକଲା ତୋତେ ତୋହୋର ଜନନୀ । ୧୬୨ ।

ମେଘା ଶରେକ ଯେ ପୁଣ ପେଷିଲେ ଗୁରୁ ଦ୍ରୋଣ
ଶ୍ୱେତ ନିବାରିଲା ତାହା ପବନା ଶରେଣ । ୧୬୩ ।
ପବନର ବଘାତେ ଯେ ଉଡିଲେ ମେଘମାନେ
ଅସମ୍ଭବ ପ୍ରତଗ୍ୟାଂ କଲା ବରାଟର ବାଳେ । ୧୬୪ ।
ପନ୍ନଗା ଶରେକ ସେ ମାଇଲେ ଦ୍ରୋଣ ଗୁରୁ
ପୃଥୀ ପୂରିଲା ଯେ ସର୍ପେ ଧାମନ୍ତ ଧରି ଫେରୁ । ୧୬୫ ।
ଖଗବର ନାରାଜ ଶ୍ୱେତ ମାଇଲା ପରିତାଳି
ଦେଖିଣ ସର୍ପମାନେ ବମ୍ବରେ ଗଲେ ଗଳି । ୧୬୬ ।
ସାଂଗ୍ରାମ କରନ୍ତେ ବେଳ ତିନ ଯେ ପ୍ରହର
ସାଂଗ୍ରାମରେ ବମୁଖ ଯେ ହୋଇଲେ ସର୍ବ ଖର । ୧୬୭ ।
ବହୁତ ପ୍ରଶଂସା ଯହୁଂ ହୋଇଲା ଶ୍ୱେତକୁ
ବାଳୁତ କୁମର ଜିଣୁଅଛି ଯେ ଦ୍ରୋଣଂକୁ । ୧୬୮ ।
ଶୁଣିଣ ଗୁରୁ ସେ କମ୍ପନ୍ତ ଗରୁ କୋପେ
କାଢିଲେ ଦେବଶର ହୋଣୁଂ ଗୁରୁ ମହାଚାପେ । ୧୬୯ ।
ବ୍ରହ୍ମଶର ବୋଲି ଯେ ଅପାଲଟକ ବାଣ
ପାଶୁପତ ବାବଲ ଯେ ମହାକାଳ ଆବର ନାରାୟଣ । ୧୭୦ ।
ରୁଦ୍ରଶର ଅମୋହଶର ବଜ୍ରଶର ଆବର ମନଭେଦା
ଯେତେକ ଶରମାନଟି ଯାହାକୁ ପେଷିବ ଅବଶ୍ୟ ଶିର ଛେଦ୍ଦ । ୧୭୧ ।
ସେ ଶହସ୍ରମାନ ପେଷନ୍ତ କଷ୍ଟୋର ସନ୍ଦେହେ
ଅପାଲଟକ ଶର ସେ ନ ବାହୁଡନ୍ତ କେବେହେଂ । ୧୭୨ ।
କଞ୍ଚିତ ଯୁଦ୍ଧେ ନୁଆରିଲେ ସେ ଶରମାନ ପେଷି
ସାମାନ୍ୟ ତ୍ରଣୀକି ସେ ଶର ନ ଆକ୍ରୋଷି । ୧୭୩ ।
ଅଥବା ସାନ ଓଲ୍ଲ ହୋଇଲେ ଯେବେ ମାତ୍ର
ପ୍ରତଗ୍ୟାଂ ନାଶଯାଇ ଛତ୍ରୀପଣକୁ ଦୂଷଣ ବ୍ରହ୍ମହତ୍ୟା ଦୋଷ ସରି । ୧୭୪ ।
ଜନ ମୁଖେ ଲଜ୍ଜା ଅପସ୍ତୁତି ପାଇଲେ ଯହୁଂ ଦ୍ରୋଣଗୁରୁ
ଆକାଶେ ଦେବେ ...ରି କରନ୍ତି ବ୍ରହ୍ମ ଶହସ୍ର ଧରୁଂ । ୧୭୫ ।
କୋଟିସେ ଅଗ୍ନି ତେଜ ଯେବଣ ବ୍ରହ୍ମଶର
ଭୟେଣ ଶୂନ୍ୟଲୋକେ ତେ ହୋଇଲେ ଅନ୍ତର । ୧୭୬ ।

ଦେଖିଣ ହାସିଲେ ଓଡ୍ରୋବଳ ସଇନ
ତ୍ରିପୁରାନ୍ତକ ପ୍ରାୟେ ହସିଲେ ଦ୍ରୋଣେ ବ୍ରହ୍ମଶର ଘେନି । ୧୭୭ ।
ଗୋବନ୍ଦେ ଡାକଲେ ଯେ ନନ୍ଦଘୋଷେ ଥାଇଂ
ବ୍ରହ୍ମଶର କଲେ ଦ୍ରୋଣେ ରେ ସାତ୍ୟକୀ ଶ୍ୱେତକୁ ଆଣ ବାହୁଡାଇ ।୧୭୮।
ଶୁଣିଣ ସାତ୍ୟକୀ ଯେ ଘୁଞ୍ଚାଇଲା ରଥ
ନାରାୟଣଂକ ଆଜ୍ଞାଂରେ ରଥ ନେଇଂ କଲା ଗଗନଗତ । ୧୭୯ ।
ଶ୍ୱେତ ବୋଇଲା ସାତ୍ୟକୀ କଲୁ ହୀନକର୍ମ
କାହ୍ନୁତ ଅର୍ଥେ ମୋତେ ଛଡାଇଲୁ ସାଂଗ୍ରାମ । ୧୮୦ ।
ଜନମୁଖେ ଅପଗ୍ଲାନ୍ତ ରଣମୁଖେ ଅପଯଶ
ଛତ୍ରୀକୁଳେ ଦୂଷିତ ମୋତେ ବୋଲବେଟି କସ । ୧୮୧ ।
ସାତ୍ୟକୀ ବୋଇଲା ଦ୍ରୋଣ ବ୍ରହ୍ମଶର କଲା
ନାରାୟଣ ଦେବନ୍ତ ଶଂକାହ୍ୱେଂ ଲଗିଲା । ୧୮୨ ।
ଶ୍ୱେତ ବୋଇଲା ଯେକଥା ନୋହୋଇ ସାତ୍ୟକୀ
ବହନ ରଥ ବାହା ମୋହୋର ଦ୍ରୋଣଂକର ତହ୍ନଂକ । ୧୮୩ ।
ମରଣକୁ ନିସତ କ ଛତ୍ରୀପଣ କଲେ
ଯଶ ଅପଯଶ ଛତ୍ରୀର କରମ ମହାଭାରଥ ସମରେ ପଶିଲେ । ୧୮୪ ।
ଶୁଣିଣ ରଥ ବାହୁଡାଇଲା ମାଧବ
ଦ୍ରୋଣକୁ ଓଡ୍ରୋମୁଖେ ଶ୍ୱେତ ନାରାଜ ପ୍ରାଭବା । ୧୮୫ ।
ବ୍ରହ୍ମ ଶହସ୍ର ସେ କୋଟିଏ କରଣ ବହନ୍ତ
ସାତ୍ୟକୀ ରଥୁଂ ଡେଇଂ ପଡଲାକ ଝାନ୍ତ । ୧୮୬ ।
ନାରାଜ ବନ୍ଧୁଥିଲା ରଥରେ ବରାଟି
ତଳ ପ୍ରମାଣେ ନାରାଜ କରୁଥିଲା ବୃଷ୍ଟି । ୧୮୭ ।
ଶ୍ୱେତର ଶରମାନ ଦହ୍ନିଜ ହୋଇଲା ସମସ୍ତ
ବକ୍ଷସ୍ଥଳେ ପଡଲା ଯାଇଂ ମହାବ୍ରହ୍ମ ଅସ୍ତ୍ର । ୧୮୮ ।
କୋଟିଏ କରଣ ନାରାଜ ମହାବ୍ରହ୍ମ ତେଜ
ଶ୍ୱେତର [illegible] ହୋଇଲା ଦହ୍ନିଜ୍ୟ । ୧୮୯ ।

---

୧୮୧।୨ ଛତ୍ରୀକୁଳେ ଶୁଣିଲେ ମୋତେ କରବେ ଉପହାସ । (ଝ,ଚ,ଘ,ଥ,ନ,ଛ)
୧୮୪ ।- ଯଶ ଅପଯଶ ଛତ୍ରିଙ୍କ ସାଂଗ୍ରାମେ ପଶିଲେ । (ଠ, ଞ, ଚ)

ଡେରଧ୍ୱଜ ସମ୍ପୂର୍ଣ୍ଣ ଯେ ଧନକର ନାଥ
ବିରାଟ ନନ୍ଦନ ଶ୍ୱେତ ଯେ ହୋଇଲା ନିପାତ । ୧୯୦ ।
ଆକାଶ ମାର୍ଗରେ ଥିଲେ ଯେ ଦେବଲୋକେ
ଦ୍ରୋଣଂକୁ ଧିକ୍‌କାର ଯେ କଲେ ବ୍ରହ୍ମାଅର୍କେ । ୧୯୧ ।
ଶ୍ୱେତ ନିଧନ ବୋଲି ଶୁଣିଲା ସମରେ
ଜୟେ ଶଙ୍ଖ ବଜାଇ ଚଳିଲେ କୁରୁଣାରେ । ୧୯୨ ।
ସାତ୍ୟକି ଅଗ୍ରତେ ମତ୍ସ୍ୟାଧିପ କରଇ ପୃଚ୍ଛା
ମୋହୋର ଶ୍ୱେତ କୁମାରର କହନ୍ତି ବାରତା । ୧୯୩ ।
ସାତ୍ୟକି ବୋଇଲି ହୋ ତୋହୋର ପୁତ୍ର ଶ୍ୱେତ
ଦ୍ରୋଣେ ତାହାକୁ ସମରେ କଲେକ ନିପାତ । ୧୯୪ ।
ଆହା ନନ୍ଦନ ବୋଲଣ ରାଯ୍ୟେ ପଡିଗଲା ମୂର୍ଚ୍ଛା
ଚେତନା ପାଇ ଯେ କାନ୍ଦଇ ସୁମରି ପୁତ୍ର କଥା । ୧୯୫ ।
ବାବୁ ରେ ସୋହଣ୍ଡ ସୁନ୍ଦର ପୁତ୍ର ତୁ ଅଭୟେ ବଳବନ୍ତା
ବାଇଶି ବରଷରେ ଯେତେକ ଶକତା । ୧୯୬ ।
ମୋତେ ମରଣ କମ୍ପା ନୋହିଲା ତୋହୋର ମୁଖ ଚିହ୍ନ
କେବଣ ସମୁଦ୍ରେ ପଶିବି ଜୀବନେ କାର୍ଯ୍ୟ ନାହିଂ । ୧୯୭ ।
କୁଳର ମଣ୍ଡନ ବାବୁ ଅନାଥର ନାଥ
ଘରଥେ ଅଳପ କଥାରେ ପ୍ରତ୍ୟଗ୍ୟାଂ ରୁହାଇଲୁ ବହୁତ । ୧୯୮ ।
ଅନେକ ଯୋଧ ଯେ ପାଣ୍ଡବ ସଇନ
ଶ୍ୱେତର ଥାଆନ୍ତେ କଉରୋବେ କ ଯାଆନ୍ତେ ପ୍ରାଣ ଦେନ । ୧୯୯ ।
ଶଙ୍ଖ ଉତ୍ତର ଶୋକ କହିତ କ ପାରି
କେଣେ କଣ୍ଟକ ଗଲୁ ଘଇ ଅନାଥ ଆମ୍ଭନ୍ତ କରି । ୨୦୦ ।
ଅନେକ ଯୋଧ ସେ କଲେ ଅନୁସରି
ମୃତ୍ତୁପିଣ୍ଡ ନ ପାଇଲେ ଥାଠେ ଲୋଡ଼ି କରି । ୨୦୧ ।
ବେଳ ଅବହାନେ ଯେ ଦେବ ମଧୂହାଖି
ରହିଲେ ପାଣ୍ଡବେ ବାରୁଣାବନ୍ତ ନଗରୀ । ୨୦୨ ।

---

୨୦୨।୨   ରହିଲେ ପାଣ୍ଡବେ ବାରୁଣାବନ୍ତ ଗିରି ।

ସ୍ନାନ ଭୋଜନ ସେ ନାହିଂ ଜାଣ ଜଚ୍ଛି
ବିରାଟଙ୍କୁ ପ୍ରବୋଧ କରନ୍ତି ଶିଖିବଚ୍ଛୁ । ୨୦୩ ।
ଯେଉଂ ଦେବ ମାୟାଧର ପରମ ପଣ୍ଡିତ ଗୁରୁ
ଯାହାର ବଚନ ଶୁଣନ୍ତେ ସକଳ ଶୋକ ହରୁ । ୨୦୪ ।
ଗୋବିନ୍ଦେ ବୋଇଲେ ବିରାଟ ଶୋକ କିସ ଅର୍ଥେ
ନୃସୀକ କ୍ରୋଧ ହାଦେ କରିବା ନୋହଇ କଦାଚିତେ । ୨୦୫ ।
ନିଶ୍ଚିତ ତୋହୋର ସିନା ଆଜ ପଡିଲାକ ରଣେ
ଦେଖ ପୁଷ୍ପକ ବିମାନେ ବସାଇନେଉଛନ୍ତି ଦେବଗଣେ । ୨୦୬ ।
ଦେବ ଦୁନ୍ଦୁଭି ଯେ ବାଜଇ ତାହାର ଅଗ୍ରତେ
ଖଟନ୍ତି ବିଳାସୁଣୀଯେ ତାଣ୍ଡବ ଯେ ନୃତ୍ୟେ । ୨୦୭ ।
ଅମର ବିଦ୍ୟାଧରୀ ଧାମନ୍ତି ବେଗି ବେଗି
କୁବେର ରତ୍ନମାନ କରିଉଛନ୍ତି ଲାଗି । ୨୦୮ ।
ବିରାଟଙ୍କୁ ରଥରେ ଯେ ବସାଇ ଶ୍ରୀବତ୍ସେ
ଆକାଶରେ ସରୂପ ଦେଖାଇଲେ ପ୍ରତ୍ୟକ୍ଷେ । ୨୦୯ ।
ଦେଖିଣ ସନ୍ତୋଷେ ଯେ ବିରାଟ ନୃପତି
ଛୁଟିଲା ଶୋକ ଅବସ୍ଥା ପିଟିଲା ମନୁଭ୍ରାନ୍ତି । ୨୧୦ ।
ସାଧୁ ସାଧୁ ମହାଭାରଥ ଯୁଦ୍ଧର ମହିମା
ସାଧୁ ରଣଯଜ୍ଞଂ ସେ କରନ୍ତି ଯେଉଂଣ ମହାତମା । ୨୧୧ ।
ଜୀବନହିଂ ବଂଶହିଂ ତାହାଂକର ସାଧୁ
କୋଟିଯେ ତୀର୍ଥର ଫଳ ଲଭନ୍ତି ମହାଭାରଥ ଯୁଦ୍ଧୁଂ । ୨୧୨ ।
ଅନନ୍ତ କୋଟି ତୀର୍ଥ ଗଜ ଅଶ୍ୱ ଦାନ ଯେ ଅଶ୍ୱମେଧି
ନିତ୍ୟକର୍ମ ଉପବାସ ମନ୍ତ୍ର ଜପ ବିଧି । ୨୧୩ ।
ଅନ୍ନଦାନ ବସ୍ତ୍ରଦାନ ତିଳଦାନ ଜଳଦାନ ଗୋଦାନ
ରଣଯଜ୍ଞଂ ଦାନକୁ କେହି ନୋହଇ ସମାନ । ୨୧୪ ।
ନାନା ପାତକ ଯେବେ ହୋଇଥାଇ ବଂଶେ
ଆପଣେ ତରଇ କୋଟିଯେ ପୁରୁଷ ନେଇ ବସଇ ସ୍ୱର୍ଗବାସେ । ୨୧୫

---

୨୧୦।୨ ଛୁଟିଲା କ୍ରୋଧ ଚିନ୍ତା ପିଟିଲା ମନୁ ଭ୍ରାନ୍ତି । (ଘ, ଚ, ଧ)

ଆପଣେ ଉଦ୍ଧରଇ କୋଟିଏ ପୁରୁଷ ଉଦ୍ଧାରଇ
କୁଳରେ କଳଂକ ଥିଲେ ଧମସ୍ତ ଗୁଡଇଂ । ୨୧୬ ।
ଆହୋ ସୂର୍ଯ୍ୟଂଜନେ ତୁମ୍ଭେ ଅଟ ଅସ୍ତ୍ରଧାରୀ
ରଣଯାଗକୁ ଧାମନ୍ତ ଯେତ୍ତୁ ସତ୍ୟ ହାଦେ ଆଚରି । ୨୧୭ ।
ରଣଯାଗକୁ କୋଟି ଅଶ୍ୱମେଧ ଯାଗ ନୋହେ ସମ
ବସଇ ସ୍ୱର୍ଗଥାନ ନ ଦଣ୍ତଇ କାଳଯମ । ୨୧୮ ।
ଶ୍ରେତର ଘରା ହୋଇ ଉପୁଯିବ ଯାହାର ବଂଶେ
କୋଟିଏ ପୁରୁଷ ତାହାର ବସିବେ ସ୍ୱର୍ଗବାସେ । ୨୧୯ ।
କ୍ଷତ୍ରୀ ହୋଇ ଯେବେ ଆନ ଜାତିରେ ଅବତରି
ନାନା ପ୍ରକାରେ ଯେ ଦାନ ଧ୍ୟାନ ଥିବ କରି । ୨୨୦ ।
ବହୁତ ପାପ ଥିଲେ ଦାନରେ କ୍ଷୟ ଯାଇ
ଛତ୍ରୀପଣ ଦାନ ଧ୍ୟାନ ଦୁହିଂନ୍ତ ସରି ହୋଇ । ୨୨୧ ।
ଜୟ ତୁ ଜମଦଗ୍ନି ନନ୍ଦନ ପ୍ରଶୁରାମ
ରେଣୁକାର ଗର୍ଭୁ ଜାତ କାଳ କୃତାନ୍ତେକ ଯାହାର ନାମ । ୨୨୨ ।
ଲଲାଟେ ଚନ୍ଦ୍ରଚୂଡ଼ ମୁକୁଟ ଶିରେଣ ଶୀତାଂଶୁ
ବାମଭୁଜେ ଅଜଙ୍ଗ ଧନୁ ଡାହାଣେ ଯାହାର ପ୍ରଶୁ । ୨୨୩ ।
ସ୍ୱଜେକର୍ଣ୍ଣକଠାର କଉମୁଦ୍ରା ଗନ୍ଧଚନ୍ଦ୍ରା
ଅଜଟ ଦର୍ପ ଗଞ୍ଜନ ନାଥ ବାମ କନ୍ଧେଣ ପଇତା । ୨୨୪ ।
ଆହାରେଣ ଅଗ୍ରବା ମହା ମନ୍ତ୍ରେଣ ଯୋଗୀ
ଅମୃତ ବେନ କୁଣ୍ଡଳ କର୍ଣ୍ଣେ ପରମାନନ୍ଦ ଯୋଗୀ । ୨୨୫ ।
ଙ୍କର ବଦନମେ ଦେଖି ନୁଆରଇ ବେନ ତୋଳେ
କାକୁତ୍‌ସ ବଂଶ ନାଶ ଗଲ ଯାହାର କୋପାନଳେ । ୨୨୬ ।
ଛନ ଭାଇ ମାତାର ଯେ ଶିର କମଳ କାଟି
ଲଲାଟେ ଶୋଭିତ ଯାହାର ଶୋଣିତ ଚିତା ଫୋଟି । ୨୨୭ ।
ସ୍ୱାମୀ ଜମଦଗ୍ନିଙ୍କ ଋନନ୍ଦ୍ୟଭାବେ ପ୍ରୀତି
ଜନନ୍ଦଇ ମାତାନ୍ତ ଜୀବଦାନ ତତକ୍ଷଣାନ୍ତ । ୨୨୮ ।

---

୨୨୪।୨ { ଅଜ୍ଞନ ପାବକ ବାମ କନ୍ଧେଣ ତ୍ରିଗୁଣ ପଇତା । (ଙ, ଚ, ଛ, ନ)
୨୨୪।୨ { ବାମକନ୍ଧେ ଶୋହଇ ଯେ ନବଗୁଣ ପଇତା । (ଖ, ଟ, ତ୍ତ)
୨୨୪।୧ କସ୍ତୁରୀ ଗନ୍ଧ ଚିତା, କଉସ୍ତୁଭ ମଣି ଶିତା, କଉମୁଦୀ ବର୍ଦ୍ଧନ ଚିତା ପାଠ ଦେଖାଯାଏ ।

ଉପାସେ୍ୟଣ ଯାହାର ମନ୍ତ୍ର ଉପାସେ୍ୟଣ ଯାହାର ଶାସ୍ତ୍ର
ଉପାସେ୍ୟଣ ସଚରାଚର ବନ୍ଦନ୍ତି ବିଧାତା । ୨୩୦ ।
ପିତାର ନିମନ୍ତେଣ ସହସ୍ରାର୍ଜୁନ ଶିର ଛେଦି
କିନ୍ତୁ ମନେ ଧରି ରାଜାମାନଙ୍କ ବିବାଦି । ୨୩୧ ।
ମନ୍ତ୍ରଗୁରୁ ଦେବଗୁରୁ ଛତ୍ରୀଗୁରୁ ଶାସ୍ତ୍ରଙ୍କର ଗୁରୁ
ସମସ୍ତ ଆପଦ ଖଣ୍ଡଇ ଶ୍ରୀ ପ୍ରଶୁରାମ ସୁମରୁ । ୨୩୨ ।
ଜାତଗୁରୁ ଅନ୍ତଗୁରୁ ମଧ୍ୟଗୁରୁ ମହାବ୍ରହ୍ମି
ଯେ କୋଇଶ ବାର ପୃଥ୍ୱୀ ନିଛତ୍ରୀ କଲୁ ସଚରାଚର ଭୂମି । ୨୩୩ ।
ଯେତେକ କୋଠାରକେ ଯେ ସମସ୍ତ ପ୍ରାଭବ
ରୋଧିର ତର୍ପଣେ ଯେ ତୋଷିଲୁ ଭଇରବ । ୨୩୪ ।
ସଂସାରର ଠାକୁର ଯେ ଦେବତାଙ୍କର ଦଇବତ
ଅନନ୍ତ କୋଟି ବ୍ରହ୍ମାଣ୍ଡକୁ ଭାରାନ୍ତର ହରନ୍ତା । ୨୩୫ ।
ପରିହରଣ ଯାହାର କୃଷ୍ଣାଞ୍ଜନ ଗିରି ଗୋଟି
ବ୍ୟାଘ୍ର ଚର୍ମ ଲଙ୍ଗୁଳ ଯାହାର କଟିରେ ମେଖଳା କାନ୍ତି । ୨୩୬ ।
ଚନ୍ଦନଧାର ବଳ୍କଳ ଅଦୃଷ୍ଟିକ ଯାର ବୁଦ୍ଧି
ଯେତେକ ନାରଜନକେ ସେ ନବଦ୍ୱୀପ ସପତ ସାଗର ପାରଇ ସାଧି । ୨୩୭ ।
ରକତ କୁମୁଦ ଲୋଚନ ତୋ ରୂପବର୍ଣ୍ଣ ଶ୍ୟାମ କଳା
ବଇଶାଖ ମାସେ ଯେହ୍ନେ ଜଳଦ ମେଘମାଳା । ୨୩୮ ।
ବଶିଷ୍ଠାବସୁନ୍ତ ତାରିଲୁ ଯେ ଗଜ କଚ୍ଛପ ବିବାଦେ
ଛତ୍ରୀପଣ ଲଙ୍ଘିଲ ମୁଂ ଯେ ପ୍ରଶୁରାମଙ୍କ ପ୍ରସାଦେ । ୨୩୯ ।
ଅଭିନବ ଜଳଧର ସୁନ୍ଦର ଦିବ୍ୟ ରୁଚି
ଅଜପା ସାଧନ ନାଥ କଳପ କଳପ ସଞ୍ଚି । ୨୪୦ ।
ଆପୂର ଜ୍ୟୋତିର ଧନୁର ସୁଷୁମ୍ନା
ଶୂନ୍ୟ ରୁଦ୍ରପଦ ଅକଣ୍ଟକ କପଚ ବଜ୍ରସେହ୍ନା । ୨୪୧ ।

---

୨୩୬।୧ ଦୁଷ୍ଟ ନିଶୋଧନ ଯାହାର ନାମ ଗୋଟି । ( ଝ )

୨୩୬।୧ ପରିହରଣ—ପରିଧାନ

୨୪୧।୨ କପଚ କବଚ ।

ସ୍ୱାମୀ ବିସ୍ତାର ଦଶନ ଊର୍ଦ୍ଧ୍ୱ ପିଙ୍ଗଳ ବେନି ଆଖି
ତ୍ରିଭୁବନ ଲୋକେ ହାସିଲେ ତାହା ଦେଖି । ୨୪୨ ।
ସ୍ୱାମୀ କହନ୍ତେ ଅଗୋଚର ପ୍ରଶୁରାମ ଅବତାର
ଦୁଷ୍ଟଙ୍କର ପ୍ରମାଦେ ଖଣ୍ଡିଲ ମନ୍ୱନ୍ତର । ୨୪୩ ।
ତ୍ରଇଲୋକ୍ୟ ସମ୍ମତ ନାଥ ବ୍ରହ୍ମାଣ୍ଡ ଶିରୋମଣି
ପରମଗତି ପ୍ରାର୍ଥନା କଲା ଯେଉଁଣ ମହାମ୍ନାଣୀ । ୨୪୪ ।
ଗଳିତ ସୁଧାରସ ଯାହାର ବଦନ ଗୋଟି
ମମ ପୁଣ୍ୟ ବଳେ ସେ ପାଇଲି ତାହାଙ୍କଇଂ ମୁହିଂ ଭେଟି । ୨୪୫ ।
ଯଶ ସମ୍ପଦ ଦିଅଇ ଯେଉଣ ପିଙ୍ଗଳାକ୍ଷୀ
ମନ ବଚନ କର୍ତ୍ତବ୍ୟ ସେ ମହାବ୍ରହ୍ମ ବାଚ । ୨୪୬ ।
ତାମ୍ର ବଦନ ଯେ ଅମୃତ ଯାର ଦୃଷ୍ଟି
କହିଲ ମହାସାରଥି କୃଷ୍ଣ ଚରଣେ ଭେଟି । ୨୪୭ ।
ପ୍ର ପୂର୍ବଷ୍ଟ ବଲ୍ଲଭ ତୁଳ୍ପସାର ନିଜ ପତି
ଶୂଦ୍ରମୂନ ସାରଳା ଦାସ ପ୍ରଶୁରାମ ଚରଣେ ଭଗତି । ୨୪୮—୩୦୮୦

# ଷଷ୍ଠଦିନ ଯୁଦ୍ଧରେ ଭୀଷ୍ମଙ୍କ ଅମୋଘଶକ୍ତି ପ୍ରେରଣ ଓ ଶ୍ରୀକୃଷ୍ଣଙ୍କର ଚକ୍ର ଦ୍ୱାରା ତାହା ଛେଦନ ଏବଂ ବଳରାମଙ୍କ ତୀର୍ଥ ଭ୍ରମଣ

ଶୁଣ ବଇବସ୍ୱତ ମନୁ ବଦଯୂନ୍ତ ଅଗସ୍ତି
ଯୁଦ୍ଧକୁ ଛଡ ଦିବସ କଥାର ସଙ୍ଗତି । ୧ ।
କଉରବ ପାଣ୍ଡବଂକ ବଡାଇ ମୁରାଠ
ସମ୍ମୁଖରେ ଉଭାଇଲେ ଓଡ୍ଡୋବଳ ଥାଠ । ୨ ।

୨୪୭।୨ କହିଲ ମହାସାରଥ କୃଷ୍ଣ ଚରଣେ ଲେଟି । ( ଙ, ଛ, ଝ, ଢ଼ )
୨୪୮।୧ ଶ୍ରିଯ୍ୱାଦେବୀର ବଲ୍ଲଭ ତୁଳ୍ପସାର ନଜ ପତି । ( ଘ, ଝ )
୨୪୬।୧ ପିଙ୍ଗଳାକ୍ଷୀ—ପିଙ୍ଗଳାକ୍ଷୀ ।

ବଳିଲା ରଣରଙ୍ଗ ଭୀଷ୍ମ ଯେ ଅର୍ଜୁନ
ପଦାତି ଶହସ୍ରମାନ ଯେନ ବାନ୍ଧିଲେ ଅବଛିନ୍ନ । ୩ ।
ଶ୍ୱେତର ପ୍ରାନ୍ତେ ସେ ନୃପନ୍ତ ବିରାଟ
ଶଙ୍ଖ ଉତ୍ତରକଇଂ ଯେନ ଉଦ୍ଧାରିଲେ ଆଠ । ୪ ।
ପଞ୍ଚାଳ ସଇନ ଯେନ ଦ୍ରୁପଦ ମହୀପାଳ
ଶ୍ରୀଖଣ୍ଡୀ ଧୃଷ୍ଟଦ୍ୟୁମନ ଯେନ ବେନି ବାଳ । ୫ ।
ଜାରାସନ୍ଧର ନନ୍ଦନ ମଘ ଦେଶର ନୃପତି
ଚେଇଶି କ୍ଷଉଣୀବଳ ଭୁଲେ ଅଶିମର୍ଭ୍ରୁତ ହାଥୀ । ୬ ।
ଗଜ ଯୋଦ୍ଧା ଭୁଲେଣ ପଚଶ ପାରିପୁଧ
କଳଙ୍ଗସେନ ଭୁଲେ ଲଗିଲା ମହାଯୁଦ୍ଧ । ୭ ।
ଉଦେମଣ୍ଡଳ ରାଜା ଭାନୁମଣ୍ଡଳ ନୃପତି
ନର୍ଦ୍ଦର ଦେଶ ରାଜା ନାମ ଗଣପତି । ୮ ।
ସେହିହାର ଭୁଲେ କଲେ ଅନେକ ସମର
କୃତବର୍ମୀର ଭୁଲେ ନୃପତି କାମେଶ୍ୱର । ୯ ।
ପଞ୍ଚାଣ ଦେଶର ରାଜା ଅନଙ୍ଗ ନୃପତି
ତାହାର ଭୁଲେ ଯୁଦ୍ଧ କଲେ ଭୀମ ଚକ୍ରବର୍ତ୍ତୀ । ୧୦ ।
ମହ୍ଲାର ଦେଶର ଯେ ଅନେକ ନୃପତି
ତାହାର ଭୁଲେ ସମର ପଣ୍ଡୁରାଜାର ନାତି । ୧୧ ।
ହିଡମ୍ବିକାର ନନ୍ଦନ ଘଟ ଯେ ଉତ୍କଟ
ଅଳମ୍ବୁଷାର ଭୁଲେ ସମର ମ୍ବରାଟ । ୧୨ ।
ଅଳାପୃଧ ଅଞ୍ଜନପ୍ରଭାର ସମର
ଲେଖନ୍ତେ ନ ସରଇ ସେ କହନ୍ତ ଅଗୋଚର । ୧୩ ।
ସମରେ ପ୍ରବେଶ ଯେ ପାଣ୍ଡବ ବୀର ଭୀମ
କାଳଦଣ୍ଡ ଯେନ ଯେହ୍ନେ ଆନ୍ଧେଇ ଯମ । ୧୪ ।

---

୪।୧ ଶ୍ୱେତର ପଡନ୍ତେ ସେ ନୃପତି ବିରାଟ । ( ଖ, ଙ୍କ, ଘ, ଢ଼ )
୬।୧ ଜାରାସନ୍ଧର ନନ୍ଦନ ସହଦେବ ନୃପତି । ( ଖ, କ, ଔ, ଛ, ନ )
୯।୨ କୃତବର୍ମୀର ଭୁଲେ ନୃପତି କାଶୀଶ୍ୱର । ( ଖ, ଢ଼, ଣ )

ବାଜନ ବାଜନ ଭୀର ଧେନଣ ଗଦା ହାଥେ
ସମରେ କେ ପଶିବ ବୃକୋଦର ଦେଖନ୍ତେ । ୧୫ ।
ଯେତେକ ଯୋଦ୍ଧାଏ ପଡନ୍ତି ତାର ମୁଖେ
ଦେଖନ୍ତି ଯମଦଣ୍ଡ ସେ ମରନ୍ତି ପ୍ରତକ୍ଷେ । ୧୬ ।
ଦ୍ରୋଣ ମହାରଥୀ ଭରଦ୍ୱାଦଙ୍କର ସୁତ
ତାହାଙ୍କର ତୁଲେ ସମର କରନ୍ତି ଦ୍ରୋପତ । ୧୭ ।
ଧୃଷ୍ଟଦ୍ୟୁମନ ଯେ ଅଶ୍ୱସ୍ତମା ତୁଲେ
ସମର ସମ୍ମୁଖେ ସେ ଆକାଶ ଢୋଡିଲେ । ୧୮ ।
ଭୀଷ୍ମଙ୍କର ସମର କହିବେ କେ ପାର
ଯେମେକେ ଅର୍ଜୁନକଇଂ ଶତେ ବାଣ ମାର । ୧୯ ।
ପଣ୍ଡୁର ନନ୍ଦନ ସେ କଇଛା ଜଗତ୍ଜେଠୀ
ବାଣ ବନ୍ଧୁଅଛି ଭୀଷ୍ମଙ୍କୁ ଶରେ ଶରେ ଯୋଡି । ୨୦ ।
ଅନେକ ସମର ବଢିଲା ମହାରୋଳ
ଦିନକର ଅର୍ଦ୍ଧ ଆସି ହୋଇଲାକ ବେଳ । ୨୧ ।
ମକର ମାସ ଅନନ୍ତ ନାମେ ଆଦିତ୍ୟର ମହାଜ୍ୟୋତି
ଅନଳ କରଣ ଜାଣି ନାରାଜଙ୍କ ତେଜ କାନ୍ତି । ୨୨ ।
ଶରେ ଶରେ ପଣ୍ଡିତାଳ ହୁଅନ୍ତେଣ ବେନି
ଶିଶିର ବୃଷ୍ଟି ଜାଣି ବଲକଇ ବଦନ । ୨୩ ।
ସମରେ ବିମୁଖ ହୋଇ ସେ କୁରୁଦେବ ନାଥ
ତୋଣରୁ କାଢିଲେ ଗାଙ୍ଗେୟ ଅମର୍ଯ୍ୟାଦ ଶକତି । ୨୪ ।
ତୋଣୁ କାଢିଲା ବେଳେ ଶହସ୍ର ଯେକଇ ମୂରତ
ହାଥରେ ଧେନନ୍ତେ ହୋଇଲା ବଂଶ ମୂର୍ତ୍ତି ଶକ୍ତି । ୨୫ ।
ଧନୁ ଗୁଣରେ ଶକତି ବସାଇଲେ ଯେତେବେଳେ
ପଞ୍ଚାଶ ମୂର୍ତ୍ତି ଶକତି ଆସି ହୋଇଲା ତେତେବେଳେ । ୨୬ ।
ଆଚ୍ଛେଦି ଗାଙ୍ଗେୟ ଉଚ୍ଛୁଡନ୍ତେ ମହାରେଖା
ଧନୁଗୁଣେ ପୁରାଇ ଉଚ୍ଛୁଡନ୍ତେ ହୋଇଲା ପଞ୍ଚସ୍ତୋଶ ଶାଖା । ୨୭ ।

---

୧୫।୨ ସମରେ ଅପସରନ୍ତି ବୃକୋଦର ରୂପ ଦେଖନ୍ତେ । ( କ, ଠ )
୨୧।୧ ଅନେକ ସମ୍ମୁଖେ ବଢିଲା ମହାଗୋଳ । ( ଠ, ଡ, ଥ )

ଆକର୍ଷିତ ଗୁଣ୍ଡନ୍ତେ ସେ ହୋଇଲେ ମହା ଭୀଷ୍ମମୂର୍ତ୍ତି
ଧନୁରୁ ବାହାରନ୍ତେ ହୋଇଲା ଶତେକ ଶକତି । ୨୮ ।
ଯଦ୍ୟପି ଦେବତାଙ୍କ ହୋଉ କି ଅସୁରଙ୍କ ହୋଉ
ସେ ଶକତି ବଞ୍ଚାଇବାକୁ ସାମରଥ ଅଛି କେହୁ । ୨୯ ।
ଶତେ କୋଟି ମହାଘ ଆଦିତ୍ୟ ଜ୍ୟୋତି ଜାଣି
ନାରାୟଣ ଘୂର୍ଣ୍ଣିଲେ ସେ ଆକାଶେ ବନମଣି । ୩୦ ।
ଦେଖ ହେ ମହିମାଂ ସେ ଭୀଷ୍ମ ଗଙ୍ଗାର ତନୟେ
କି ପ୍ରବଳକ ପରାୟେ ଭୀଷ୍ମଙ୍କର କାୟେ । ୩୧ ।
ଯେତେବେଳେ ବାହାର ହୋଇଲା ଅନର୍ପାପ ଶକତି
ସେକା ଶହସ୍ର ହୋଇଛି କୋଟିଏ କରଣର ଜ୍ୟୋତି । ୩୨ ।
ଦେଖିଣ ଘୂର୍ଣ୍ଣିଲେ ସେ କଉରବେ ସଇନ
ଛଡ଼ ଯୋଜନେ ମାନଗୋବନ୍ଦ ରହିଲା ସଇନ ସେନ । ୩୩ ।
ପାଣ୍ଡବ ବଳ ସଇନ ପଳାଇଲେ ଘୂର୍ଣ୍ଣି
ସେକା ମାନ ଭରେଇ ମଞ୍ଜି ଅର୍ଜ୍ଜୁନ ରହିଅଛି । ୩୪ ।
ଛଡ଼ ଯୋଜନ ମାତ୍ର ପଳାଇଲେ ସର୍ବ ବଳ
ବେନି ରଥ ମାଝ ରହିଅଛଇ ଅଚଳ । ୩୫ ।
ଗୋବିନ୍ଦେ ବୋଇଲେ ବାବୁ ଶୁଣ ଫାଲଗୁନ
ସଂସାର ଦହନ ଶର ବିନ୍ଧିଲେ ଭୀଷ୍ମ ସେନ । ୩୬ ।
ପାଣ୍ଡବ ବଳ ତୋର ନ ବ୍ରତିବେ କେହି
ସେହିକ୍ଷଣି ସଂସାର ହୋଇବ ହାଦେ ଦହି । ୩୭ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଆଦି କରି
ଆଜର ଯୁଦ୍ଧରେ ସର୍ବେ ହୋଇବେ ଅସଂହାରି । ୩୮ ।
ସେଥିକୁ ପ୍ରତିଶସ୍ତ୍ର ଅଛିଟି କି ପାର୍ଥ
ସମାସ୍ୟା ନ ଦେଇ ପାର୍ଥ ହୋଇଲା ମଳିନ ବ୍ରତ । ୩୯ ।
ଅର୍ଜ୍ଜୁନର ଅଶକ୍ୟ ଯହୁଂ ଜାଣିଲେ ଦେବରାଜ
ସେହିକ୍ଷଣି ନନ୍ଦଘୋଷ ହୋଇବ ଦହିଜ । ୪୦ ।
ହୃଦଗତେ ଚିନ୍ତିଲେ ଦେବ ନାରାୟଣ
ଧାତିକାରେ ପ୍ରବେଶ ହୋଇଲା ଆସି ଚକ୍ର ସୁଦର୍ଶନ । ୪୧ ।

ଧ୍ୟାନେଣ ଆଗ୍ନେୟାଂ ତାକୁ ହଲେ ଚକ୍ରପାଣି
ଭୀଷ୍ମଂକର ଶତେଶର ଶକଟ ପକାଅ ବେଗେ ହାଣି । ୪୨ ।
ଅର୍ଜୁନଂକୁ ଅଗୋଚର ନୋହିଲ ଯୁଗତେ
ନନ୍ଦଘୋଷ ରଥ ଧ୍ୱଜେ ଥାଇ ତାହା ଦେଖିଲେ ହନୁମନ୍ତେ । ୪୩ ।
ହନୁମନ୍ତ ପ୍ରଶଂସଇ ପାଣ୍ଡବେ ଜୀବନ ତୁମ୍ଭ ଧନି ଧନି
ପ୍ରାଣହୁଂ ଅଧିକ କର ନାରାୟଣ ତୁମ୍ଭନ୍ତ ଅଛନ୍ତି ଘେନି । ୪୪ ।
ଅଦୃଶ୍ୟେଣ ଚକ୍ର ପଡିଲା ଶୂନ୍ୟଗତ
ଦହନ ହୋଇଲା ଶତେଶର ଶକଟ । ୪୫ ।
ମାରଣ ଚକ୍ର ସେ ଯହୁଂ ଗଲା ଅନ୍ତର୍ଦ୍ଧାନେ
ଦେଖିଣ ଗାଙ୍ଗେୟ ହାଥରୁ ଯେ ଛାଡିଲେ ଧନୁ ବୋଣେ । ୪୬ ।
ରଥ ଘୁଞ୍ଚାଇ ଭୀଷ୍ମେ ଦୁର୍ଯୋଧନେ ଭେଟି
ପାଣ୍ଡବେ ଶରଣ ଯାଇ ପଶ ହୋ ଧୃତରାଷ୍ଟ୍ରି । ୪୭ ।
ଯଦ୍ୟପି ଶରଣ ନ ପଶିବୁ ଅବା
ରାଜ୍ୟ ଛାଡି ପଳାଇ ଜୀବନ ରଖ ତୋର ବାବା । ୪୮ ।
ମାନଗୋବିନ୍ଦ ବୋଇଲା କମ୍ପ୍ରୁତ କାରଣ କଥା
ପ୍ରସ୍ତାବ ବାକ୍ୟ କହ ବୁଝିବା ସର୍ବଥା । ୪୯ ।
ଶୁଣିଣ ଗାଙ୍ଗେବେ କହନ୍ତେ ସମ୍ବାଦେ
ପାଣ୍ଡବ ବଳ ଦହିଜ କରିବ ବୋଲି ଅନର୍ଘାପ ଶରେକ ପେଷିଲି ହାଦେ ॥
ବ୍ରହ୍ମା ରୁଦ୍ର ଇନ୍ଦ୍ର କୁବେର ଯମ ଆଦି ପବନ
ସେ ଶର କାହାର ବଳେ ନୁହଂଇ ନଶୋଧନ । ୫୧ ।
ପ୍ରଥମେ ଦହନ୍ତା ସେ ନନ୍ଦଘୋଷ ରଥ
ଚାରି ଅଶ୍ୱ ହନୁମନ୍ତ ଆବର କୃଷ୍ଣ ପାଥ । ୫୨ ।
ତଦନ୍ତେ ଦହନ୍ତା ପାଣ୍ଡବ ସଇନ
ଯୁଧିଷ୍ଠିର ଆଦି ଚାରି ଭାଇଂକ ପ୍ରାଣ ଘେନ । ୫୩ ।

---

୪୨।୨ "ଭୀଷ୍ମଂକର ଶତେଶର ଶକଟ ପକାଅ ବେଗେ ହାଣି ପରେ"
(ଥ,ଓ,ନ) ପୋଥିରେ ଅଧିକ ପାଠ ।
ସୁଦର୍ଶନ ଚକ୍ର ହରି ଧରଣ ଶ୍ରୀକରେ
ପ୍ରହାର କଲେ ନେଇ ଭୀଷ୍ମଂକ ଶର ଉପରେ ।

ଅର୍ଜୁନର ବଳେ ସେ ଶକତ ନୋହେ ନିବାରଣ
ଚକ୍ର ଘେନିଣ ତାହା ନେଉଦଲେ ନାରାୟଣ । ୫୪ ।
ଶ୍ରୀକୃଷ୍ଣ ଯେବେ ଶସ୍ତ୍ର ଧରି ପଶିଲେ ସମରେ
କିସ ସମର କରିବୁ ତୁ ପାଣ୍ଡବଂକ ସଙ୍ଗରେ । ୫୫ ।
ଅନନ୍ତ କୋଟି ଅବତାରେ ସେ ଯେ ଅସୁର ନିଶୋଧନ
ତାହାର ତୁଲେ ସମର ତୁମ୍ଭର କିସ ପ୍ରୟୋଜନ । ୫୬ ।
ଶୁଣିଣ ବିରସ ଯେ ରାଜା ମାନଚକ୍ରବର୍ତ୍ତୀ
ବଳରାମକଇଂ ସୁମରଣା କଲାକ ତତକ୍ଷଣ । ୫୭ ।
ଆସନ କମ୍ପନ୍ତେ ତାହା ଜାଣିଲେ ମୂଷଳୀ
ଧାଇକାରେ ବିଜୟେ କଲେ କୁରୁକ୍ଷେତ୍ରେ ଦେବ ହଳୀ । ୫୮ ।
କଉରବେ ପ୍ରଣପତ୍ୟ ହେଲେ ବଳରାମକଇଂ ଦେଖି
ସମସ୍ତ ଯୋଦ୍ଧାଏ ଯାନ ବାହାନ ଉପେକ୍ଷି । ୫୯ ।
କାମପାଳ ଚରଣେ ସମସ୍ତେ ପରଣାମି
ତୋହୋର ଶରଣେ ଆମ୍ଭେ ପାଣ୍ଡବ ହନ୍ତେ ସ୍ୱାମୀ । ୬୦ ।
କୃଷ୍ଣ ଯେ ତୋହୋର ଛୁଇଂଲେ ପାଦ ବେନି
ବୋଇଲେ ଭାରଥ ଯୁଦ୍ଧେ ଶସ୍ତ୍ର ନ ଧରିବ ସ୍ୱାମୀ । ୬୧ ।
ବୋଇଲେ ଯେ ଜଗତ ଦୋଷ ଖଣ୍ଡଣ ନିମନ୍ତେ
ଓହୋବଳ ଥାଠେ ପାତ୍ରପଣେ ଥିବ ନନ୍ଦଘୋଷ ରଥେ । ୬୨ ।
ବୋଇଲେ ସଂଗ୍ରାମେ ଯେବେ ଶସ୍ତ୍ର ମୁଂ ଧରଇ
ଜନ୍ମେ ଜନ୍ମେ ତୋର ପାଦପଦ୍ମରେ ହାରଇଂ । ୬୩ ।
ସେ କଥାମାନ ହରି ସକଳ କଲେ ତେଜ୍ୟା
ଆପଣେ ଚକ୍ର ଧରି ସମରେ ପଶିଲେ ଦେବରାଜା । ୬୪ ।
କେ ଦେବ ପାଣ୍ଡବନ୍ତ ହକାରି ଆଣ ତୁ ଆପଣ
କୃଷ୍ଣଂକୁ ପଞ୍ଚରାଜ୍ୟ ମୁହିଂ କରିବ ସମର୍ପଣ । ୬୫ ।
ସହସ୍ରେ ପାଣ୍ଡବେ ହେଲେ ନାହିଂ ନା ମୋର ଭୀତ
କିମର୍ଥେ ଜଗନ୍ନାଥେ ମୁଂ ହୋଇବ ଅପ୍ରୀତ । ୬୬ ।
ତୁ ଯେ ଗଦାଗୁରୁ ମୋର ମସ୍ତକେ ହାଥ ଦେଲୁ
କାଲେ କାମପାଳ ମୋତେ ରଖି ତ ନୁଆରିଲୁ । ୬୭ ।

ଶ୍ରୀକୃଷ୍ଣ ଆଶ୍ରେକେ ମୋହୋର ପଞ୍ଚୁରାଜ୍ୟ ଯେ ନେଲେ ପଞ୍ଚୁଭ୍ରାଥ
ସ୍ୱେ ରାମ ତୋତେ ଆଶ୍ରେ କରି ମୁଂ ହୋଇଲି ଅନାସ୍ତ । ୬୮ ।
ସମସ୍ତ କଉରବେ ମୁଖେ ହାଥ ଭରି ତ୍ରାହ୍ଵ ତ୍ରାହ୍ଵ ବୋଲି
ଅନାସ୍ତକୁ ଶରଣ ଦିଅ ବୋଲି ଶୁଣିଲେ ଗଡପାଲି । ୬୯ ।
କଉରୋବମାନଙ୍କ ଅନାସ୍ତ ଦୁଖ ଦେଖି
ରକତ କୁମୁଦ ପ୍ରାୟେ ବିରାଜଇ ରାମର ବେନି ଆଖି । ୭୦ ।
ଡାହାଣେ ମୂଷଳ ବାମେ ବଜ୍ରଲଙ୍ଗଳ
ମହା ଯୋଗେଶ୍ଵର ନାଥ ସେ କାଦମ୍ଵରୀ ପାନେ ମତ୍ତ ଯାର ଭୋଳ । ୭୧।
ମେରୁ ତୁଲ୍ୟ ମଣ୍ଡଳ ଯେ ଶୋଭିତ ସପ୍ତଫେଣୀ
କୋପେଣ ଗର୍ଜି ଧାମନ୍ତ ରାମ କୃତାନ୍ତେକ ଜାଣି । ୭୨ ।
ଭୟେଣ ଶୂନ୍ୟଭୁବନ ତେଜିଲେ ଦେବଲୋକେ
ତ୍ରାସେଣ କମ୍ପିଲେ ଯେ ସକଳ ବ୍ରହ୍ମାଅର୍କେ । ୭୩ ।
କାଳଚକ୍ର ଜାଣିଣ ଭ୍ରମଇ ବେନି ଡୋଳ
ଆପଣେ ସମରେ ଦେବ ବିଜୟ୍ କାମପାଳ । ୭୪ ।
ମହା ପ୍ରତାପେ ସ୍ଵାମୀ ହାକନ୍ତି ବଳଦେବେ
ଆରେ ଆରେ କୃଷ୍ଣ ଆରେ ଆରେ ରେ ପାଣ୍ଡବେ । ୭୫ ।
ଯେସନେ ନିର୍ଘାତ ଖସି ପଡ଼ଇ ଆକାଶୁଂ
ପୃଥିବୀ କମ୍ପଇ ବଳଦେବଂକର ଆସୁଂ ଆସୁଂ । ୭୬ ।
ରଥ ଧ୍ଵଜେ ଥାଇଣ ହନୁମନ୍ତ ବୋଇଲା
ସମ୍ଭାଳ ଅର୍ଜୁନରେ ବଳରାମେ ବିଜେ କଲା । ୭୭ ।
ଗୋବିନ୍ଦେ ଦେଖିଲେ ନନ୍ଦିଘୋଷ ରଥେ ଥାଇଂ
ହଳ ମୂଷଳ ଘେନି ରାମ ଆସୁଛନ୍ତି ଧାଇଂ । ୭୮ ।
ଗୋବିନ୍ଦ ମୁଖ ଚାହିଂ ବୋଲଇ ବୃକୋଦର
ସ୍ଵାମୀ କେବଣ ଚରିତ ପ୍ରେ ସମରେ ପଶିଲେ ନୀଳାମ୍ଵର । ୭୯ ।
ଗଦା ବୁଲାଇଣ ସମରେ ପଶିଲେ କାଳଦଣ୍ଡ ପାଣି
ଗର୍ଜଇ ପାଣ୍ଡବ, କେଶରୀ ଦର୍ପ ଜାଣି । ୮୦ ।

---

୭୨।୨ କୋପେଣ ଗର୍ଜି ଧାମନ୍ତ ରାମ କାମ୍ୟେକ ବେ ନ ଜାଣି । (କ,ଙ୍କ,ଥ,ନଟ,)

ଶତ୍ରୁଙ୍କୁ ସପକ୍ଷ ଯେ ତାଙ୍କୁ ମୋର କସ ଭୟେ ।
ରାମର ମୂର୍ତ୍ତି ଦେଖି କୋପିତ ଧନଞ୍ଜୟେ । ୮୧ ।
ନାରାୟଣୀ ଶର ଧରଣ ଫାଲଗୁନ
ଆଗଭରେ ରହିଲ ଧନୁ ଟଂକାର ଜାଣି । ୮୨ ।
ହିଡମ୍ବିଙ୍କ ନନ୍ଦନ ଘଟଉତ୍କଚ ମହାବଳୀ
ଧାମନ୍ତ ଅସୁରେ ଯେ କରେ ଶାଳ ଶିଳ ତୋଳ । ୮୩ ।
ରଥରୁ ଡେଇଂଣ ଯେ ପଡଲେ ଜଗନ୍ନାଥେ
ଭୀମସେନଙ୍କୁ କୋଳାଗ୍ରତ କଲେ ବେନି ହାଥେ । ୮୪ ।
ସୁଭ କ୍ରୋଧ ବୃକୋଦର ରାମଂଙ୍କୁ କ୍ରୋଧ କରିତେ ନୋହଇଂ
ମାଳାମ୍ବରେ ବିବାଧି ଆମ୍ଭନ୍ତ ନ ଯୋଗାଇ । ୮୫ ।
ମୋହୋର ଶପଥଟି ତୁମ୍ଭେ କେହି ଯେ ନ ବଢ
ରଥ ଯାନବାହାନନ୍ତ ତେଜ ସମସ୍ତେ ଶହସ୍ର ସୁଭ । ୮୬ ।
କୋଟି କୋଟି ସିଂହର ଯାହାର ପରାକ୍ରମ
ତାହାଂକର ତୁଲେ ଆମ୍ଭର କସ ଯେ ସାଂଗ୍ରାମ । ୮୭ ।
ଆମ୍ଭର ବଳେ କ ଦ୍ୱନ୍ଦ ବଳରାମଂକର ତୁଲେ
ହସ୍ତିନା ହଳମୁନେ ତାଡଲେ ତାହାଂକର ବାହୁବଳେ । ୮୮ ।
ଯେଉଂ ଦେବ ରଙ୍ଗ ଅବତାରେ କୁତୂହୋଳ
ଜଗୁଜନ ମୋହନ ନାଥ ନାମ ବନମାଳୀ । ୮୯ ।
ସମସ୍ତ ବୋଧ କଲେ ଜଗମୋହନ ରୂପେଣ
ଶାନ୍ତ କରାଇ ବିଜେକଲେ ଦେବ ନାରାୟଣ । ୯୦ ।
ଭୀମ ଅର୍ଜୁନ ଯେ ସୁଭଲେ ସନ୍ଦେ ହିର
ବିଶହସ୍ର ହୋଇ ପ୍ରଳମ୍ବ କଲେ ଦେବ ଡାମୋଦର । ୯୧ ।
ପୁଣି ପୁଣି ପ୍ରଳମ୍ବ ନାରାୟଣ ପାଣ୍ଡବନ୍ତ ଦେଖି
ନଉତୁଲ କର ଦେବ ବିନୟେ ବଇଜି । ୯୨ ।
ଦେଖିଣ କାମପାଳ ବଚନ ପ୍ରକାଶି
ହଳ ମୂଷଳ ବୁଲଇଂ ଜୋଡେଣ ରାମ ହାସି । ୯୩ ।
ମଥାଣ୍ଟେ ବେନି କର ଧଇଲେ ଦେବ ତୋଳି
ବିନୟ ଭାବ ଦେଖି ପୁଛନ୍ତ ବନମାଳୀ । ୯୪ ।

ଗୋବିନ୍ଦେ ବୋଇଲେ ପୁଣ ପୁଣ ପଢ଼ଣାମି
ଅନମିତେ କୋପ କାହାକଇଂ କରୁ ଦେବସ୍ୱାମୀ । ୯୫ ।
ତୁ ଦେବ ଭଗତ ମଙ୍ଗଳ ଯୁଗପତି
ଦୋଷ ଅନରୂପେ ବଗୃର ବହବାନା ଶାସ୍ତି । ୯୬ ।
ବଦପୂନ୍ତ କାମପାଳେ ଶୁଣ ହେ ବାସୁଦେବେ
ତୁ କମ୍ପା ଶହସ୍ତ୍ର ଧଇଲୁ କୁରୁକ୍ଷେତ୍ର ଭୂମି ଠାବେ । ୯୭ ।
ଆଜ ମୁହିଂ କରବି ହରି ପାଣ୍ଡବେ ଶରବୃଷ୍ଟି
କଉରୋବନ୍ତ ହେଉବ ମୁହିଂ ପରମ ଅରଷ୍ଟି । ୯୮ ।
ଦ୍ୱାରକାପେ ତୁ ଯେ ନୟମ କଲୁ ମୋର ଦେହ ଛୁଇଂ
ବୋଇଲୁ ସାଂଗ୍ରାମେ ଶହସ୍ତ୍ର ନ ଧରଇ । ୯୯ ।
ଯେତେବେଳେ କମ୍ପାଇଂ ସାଂଗ୍ରାମ କଲୁ ଶହସ୍ତ୍ର ଧରି
ଖାଷ୍ମଂକୁ ଶହସ୍ତ୍ର କଲୁ ପାଣ୍ଡବନ୍ତ ଆବୋରି । ୧୦୦ ।
ଗୋବିନ୍ଦେ ବୋଇଲେ ଦେବ ବଗୃର କୋପକର
ଖାଷ୍ମଂକର ଭୁଲେ ମୁଂ ନ କଲ ସମର । ୧୦୧ ।
ତୁ ଦେବ ଅପରତେ କଲୁ ମୋତେ ଅବା
ନଚପେ କରି ଯେବେ କଉରୋବନ୍ତ ପଗୃରିବା । ୧୦୨ ।
ମୁହିଂ ଦ୍ୱାରକା ପୁରେ ନୟମ କଲ ଯାହା
ସତ୍ୟ ଲଂଘିଲେ ମୁଂ ହୋଇବି ଦୋରେହା । ୧୦୩ ।
ପାଣ୍ଡବନ୍ତ ତୋର କୋପ କେବଣହିଂ ଅର୍ଥେ
ବଜ୍ର ମୂଷଳ ଘେନ ଦେବ ଶିର ଛେଦ ମୋତେ । ୧୦୪ ।
ଯେତେ ବୋଲ ହରି ରାମ ଚରଣେ ଦଇନ
ତହୁଂ ବାହୁଡ଼ ବଳେ ନୀଳାମ୍ବର କୃଷ୍ଣ ପାଣ୍ଡବନ୍ତ ଘେନ । ୧୦୫ ।
ଦ୍ରୋଣେ ବଜେ କରଅଛନ୍ତ ରଥ ଚଡ
ଗ୍ରମୁରେ କାମପାଳ ଦ୍ରୋଣଂକୁ ପଗୃର । ୧୦୬ ।
ଆହେ ଦ୍ରୋଣେ ଖାଷ୍ମଂକ ଭୁଲେ ସମର କଲେ ଦେଖିଲକ ହରି
ତୁ ଦେଖିଲୁ କ ହେ ଗୁରୁ କହ ସତ୍ୟ କରି । ୧୦୭ ।
ବଳରାମଂକ ଆଗେ କହନ୍ତ ଗୁରୁ ଦ୍ରୋଣେ
ମୁହିଂ ନ ଦେଖିଲ ସମର କଲେ ନାରାୟଣେ । ୧୦୮ ।

ଆହୋ କର୍ଣ୍ଣ ତୁ ଯେ ଥିଲୁ ସମରେ ଆଗିଆଣି
ଦେଖିଲୁ କି ସମର କଲେ ଚକ୍ରପାଣି । ୧୦୯ ।
କର୍ଣ୍ଣ ବୋଇଲା କେମନ୍ତେ କହିବି ଅନମିଚେ
ମୁହିଂ ନ ଦେଖିଲି ଶହସ୍ତ୍ର ନାରାୟଣଂକର ହାଥେ । ୧୧୦ ।
ଚହୁଂ କୃପ ଅଶସ୍ତମା ଶଲ୍ୟଂକୁ ପଚାରିଲେ
ସୋମଦତ୍ତ ଭୂରିସବା ଧୂଶାସନକୁହିଂ ପୁଚ୍ଛାକଲେ । ୧୧୧ ।
ବଳରାମଂକ ଅଗ୍ରତେ କହିଲେ ସଭିଏଁ
ବାସୁଦେବଂକ କରେ ଶହସ୍ତ୍ର ନ ଦେଖିଲୁ କେବେହେଂ । ୧୧୨ ।
ଦ୍ରଯୋଧନ ଅଗ୍ରତେ ପଚାରନ୍ତି ବଳରାମ
ତୁହି ଦେଖିଲୁକି କୃଷ୍ଣ କଲା ଯେ ସାଂଗ୍ରାମ । ୧୧୩ ।
ବଳରାମଂକ ମୁଖ ଗୃହିଂ ବୋଲଇ ମାନଗୋବିନ୍ଦ
ମୁହିଂଏକ ଦୃଷ୍ଟି କରି ଗୃହିଂଥାଇ କୃଷ୍ଣର ନାହିଂ ଦ୍ୱନ୍ଦ । ୧୧୪ ।
ଆମ୍ଭେହେଂ ଦେଖିଲୁ କେବେହେଂ ନାରାୟଣ ସମର ନ କଲା
ଅନମିତେ କେ କହିବ ମାନଗୋବିନ୍ଦ ବୋଇଲା । ୧୧୫ ।
ଏହୁ ମହାଭାରଥ ଯୁଦ୍ଧେ କେ କହିବ ମିଥ୍ୟା ବାଚା
ଗ୍ୟାନ ଥାଉଂ ଥାଉଂ ନରକକୁ କେ କରୁ ଦେବ ବାଞ୍ଛା । ୧୧୬ ।
ଏହେ ଦେବ ପୀଳାମ୍ବର ଦ୍ରୋହ କଲଇଂ ମୁହିଂ ତୋତେ
କୃଷ୍ଣ ହାଥେ ଶହସ୍ତ୍ର ମୁଂ ନ ଦେଖିଲି ଛଅ ଦିବସ ପରିଯନ୍ତେ । ୧୧୭ ।
ଶୁଣିଣ ବସୁଏ ଯେ ହୋଇଲେ ହଳାୟୁଧ
ଆହୋ ଭୀଷ୍ମ ତୁ ଦେଖିଲୁ କି ଶସ୍ତ୍ର ଧରି କେଶବ କଲା ଯୁଦ୍ଧ । ୧୧୮ ।
ଭୀଷ୍ମେ ବୋଇଲେ ତୁ ଦେବ ବିହନ୍ତା ବିଧାତା
ତୋହୋ ଗ୍ରନ୍ଥରେ ଦେବ କେ କହିବ ମିଥ୍ୟା ୧୧୯ ।
ଅନର୍ପୀପ ବାଣ ମୁଂ ଆଣେନ୍ଥି ବନ୍ଧିଲି
କୃଷ୍ଣ ଯୁଦ୍ଧ କରିବା ମୁଂ ନୟନେ ନ ଦେଖିଲି । ୧୨୦ ।
ଏହେ ଦେବ ଯେଉଂଣ ଶକତି ମୁଂ ମାଇଲଇଂ ଅର୍ଜୁନକୁ
ବ୍ରହ୍ମା ଇନ୍ଦ୍ର ରୁଦ୍ର କେହି ସାମରଥ ନୋହି ତାହା ନିବାରିବାକୁ । ୧୨୧ ।
ଶ୍ରୀକୃଷ୍ଣ ବିନକେ କେହି ତାହା ନୁଆରନ୍ତି ନାଶି
ସୁଦ୍ରଶେନ ଚନ୍ନେଣ ସେ ଶହସ୍ରେ ହୁଅଛି ବିଧ୍ୱଂସି । ୧୨୨ ।

ଶୁଣିଣ ବଳଦେବ କୋପେଣ ପରଜଳ
ଭୀଷ୍ମଙ୍କର ମୁଖ କୋପେ ଗୃହ୍ନେଲେ ଦେବ ହଳୀ । ୧୨୩ ।
ମାନବ ଯୁଦ୍ଧେ ଦେବ ଶହସ୍ର କର୍ମେ ତୁ ବାନ୍ଧିଲୁ ବଳେ ବଳୀ
ଏମନ୍ତେ ବୋଲି ବଳଦେବ ଭୀଷ୍ମଙ୍କୁ ପକାଇଲେ ପେଲି ।
ଆରବେଳେ ଏମାନ ଅକର୍ମ କେବେହେଂ
ନ କରିବୁ ଭୀଷ୍ମ ମହାବଳୀ । ୧୨୪ ।
ରାଗେଣ ପରଖର ଦେବଂକର ବହଇ ନିଶ୍ୱାସ
ଆନେଷି କାମପାଳ ଧଇଲେ ଭୀଷ୍ମଙ୍କର କେଶ । ୧୨୫ ।
ବୁଲାଇ କାମପାଳ ପିଠନ୍ତେ ନେଇ ହଳେ
ଧାଡିକାରେ ଗୋବିନ୍ଦେ ଧଇଲେ ତାଂକୁ କୋଳେ । ୧୨୬ ।
ସ୍ୱାମୀ ତ୍ରଇଲୋକ୍ୟର ନାଥ ବ୍ରହ୍ମାଣ୍ଡ ଶିରୋମଣି
ଭୀଷ୍ମଙ୍କୁ ଅନମିତେ କୋପ କେହ୍ନେ କରୁ ଦେବସ୍ୱାମୀ । ୧୨୭ ।
ଦେଖୁଂ ଦେଖୁଂ ଅପୁର୍ବିକ ଅଜାଡିକ ମହା ପାପୀ
ତୋହୋର ହାଥେ ମଲେ ମୁକତି ହୋଇବ ଅଦ୍ୟାପି । ୧୨୮ ।
ଏମ୍ନେ ସ୍ତୁତି କରନ୍ତେଂ କର୍ମେ କୋପ କର କାମପାଳ
ଆପଣେ ଶ୍ରୀକରେ ଛଡାଇ ଦିଲେ ଭୀଷ୍ମଙ୍କର ବାଳ । ୧୨୯ ।
ଦୁର୍ଯୋଧନ ସୁମରିଲା ତୋହୋରେ ଯେ ବେଳେଂ
ସମରେ ମୋଦରନ୍ତ ଯେ ନ ମାଇଲ ଭଲେ । ୧୩୦ ।
ଭୀଷ୍ମଙ୍କୁ ତେଜ୍ୟା କରି ରାମ କୃଷ୍ଣ ବେନି
ତୁଲେଣ ପାଣ୍ଡବ ଯେ ଭୀମ ଫାଲଗୁନି । ୧୩୧ ।
ମାନଗୋବିନ୍ଦ ଅଗ୍ରତେ ବଦଯୁନ୍ତି ଦେବ ହଳୀ
ଏମ୍ଭକଇଂ ସୋଦରେ ତୁମ୍ଭେ ନ କରିବା ଦ୍ୱନ୍ଦ କଳି । ୧୩୨ ।
କୁରୁ ପାଣ୍ଡବେ ଏମ୍ଭବେ କରନ୍ତୁଂ ଏମ୍ଭକ ଭେଟ
ଦୁଇଖଣ୍ଡ ପଡା ଦିଅ ଯୁଝିବି ହୋଉ ତୁଷ୍ଟ । ୧୩୩ ।
ତୁ ତ ପଞ୍ଚ କଟକେ ଲକ୍ଷେ ଯୋଜନେ ଅଛୁ ଆଧିପତି
ହସି କରି ପଡା ଦୁଇଖଣ୍ଡେ ଦେଇ ଯୁଦ୍ଧେଷ୍ଟିଂକ କରିଅ ନିପୁତି । ୧୩୪ ।
ବଳରାମଂକ ବଚନେ ବୋଲନ୍ତ କଉରେବେ
ତୋହୋର ବାହାଲୁ ଆମ୍ଭେ କଲି ବୁଝିଲୁକ ବଳଦେବେ । ୧୩୫ ।

ମଧ୍ୟସ୍ଥ ପଣେ କି ମୁଂ ସୁମରଣା କଲି ତୋତେ
ଯେତେକେ ସ୍ନାନକାର୍ଯ୍ୟ ମଣିଲୁ କି ମୋତେ । ୧୩୬ ।

ଶଙ୍ଖ ଧ୍ୱନି ଶବଦ କରି କଉରବେ ଲେଉଟି
ହସ୍ତିନା ପୁରେ ରାଜା ବିଜୟେ ଧୃତରାଷ୍ଟ୍ର । ୧୩୭ ।
ଶ୍ରୀକୃଷ୍ଣ ଅର୍ଜୁନ ଯେ ଦେବ ବଳରାମେ
ଇନ୍ଦ୍ରପ୍ରସ୍ଥେ ବିଜେ କଲେ ପୁରୁଷ ଉତ୍ତମେ । ୧୩୮ ।

ବଳରାମେ ବୋଇଲେ ଶୁଣ ତୁ ଅଚ୍ୟୁତ
ମହାଭାରଥ ଯୁଦ୍ଧ କରି ସମାପତ । ୧୩୯ ।
ପାଣ୍ଡବେ ରକ୍ଷା ଗଲେନି ନା ତୋହୋର ବୁଦ୍ଧି
ନିଚୟେ ନାଶିବୁ ତୁ କଉରବେ ସମ୍ବୁଧି । ୧୪୦ ।

ଭୀଷ୍ମେ ଯେବଣ ଶର କଲେକ ଆଧ୍ୟାନ
ତୋହୋର ବିଷକେ କେ ନିବାରିବ ଆନ । ୧୪୧ ।

ପାଣ୍ଡବନ୍ତ କଷଣ ପଡ଼ିବ ଯେତେବେଳେ
ତୁ ପୁଣି ଶସ୍ତ୍ର ଧରି ବନ୍ଧିବୁ ଅବହେଳେ । ୧୪୨ ।
ମୋତେ ସୁମରୁଥିବ ମାନ ଯେ ଗୋବିନ୍ଦ

ତୋହୋର ମୋହୋର ପୁଣ ନହୋଇଥିବ ଦ୍ୱନ୍ଦ । ୧୪୩ ।
ସମ୍ଭାଳ ଯେ ସମସ୍ତ ସମର୍ପିଲା ତୁକୁ
ମୁଂ ଯାଉଅଛି ମହାଭାରଥ ଯୁଦ୍ଧ ସରିବା ପରିଯନ୍ତେ ପ୍ରାଗ ଯେ ତୀର୍ଥକୁ ॥
କହିଣ ଚଳନ୍ତି ଯେ ରେବତୀ ରମଣ
ସମସ୍ତ ତେଜ୍ୟା କରିଣ ଗଲେ ପ୍ରୟାଗ ତୀର୍ଥେଣ । ୧୪୫ ।

ଜୟ ତୁ କାମପାଳ ରେବତୀ ପ୍ରାଣନାହା
ସୁରସିଦ୍ଧ ମୁନିମାନେ ବନ୍ଦନ୍ତି ଚରଣେ ଯାହା । ୧୪୬ ।
ପରମାନନ୍ଦ ପୁରୁଷେ ନାଥ ଅଭୟେ ପରମ ଯୋଗୀ
କଉରବ ହବାରେ ତୁ ହସ୍ତିନାପୁର ଭାଙ୍ଗି । ୧୪୭ ।

---

୧୪୭।୧ ପରମ ବୋଧ ପୁରୁଷ ତୁ ସର୍ବ କଳି ପରିତ୍ୟାଗୀ । ( କ୍ର, ଅ, ନ )
୧୪୭।୨ ଦର୍ଭିନଳ ସମରେ ତ୍ର କୁଣ୍ଡଳାପୁର ଭାଙ୍ଗି । ( ଜ, ଙ, ଟ, ଚ )

ଅମ୍ବା କଦମ୍ବା ପ୍ରଲମ୍ବା ଦ ନବ ହାଦେ ତିନି
ସ୍ୱେଦାନ୍ତ ମାରଣ ଦେବ ଉଦ୍ଧରିଲୁ ମେଦିନୀ । ୧୪୮ ।
ଶୁଦ୍ଧ ସଷ୍ଟିକ ଶରୀର ମଣ୍ଡଳ ସପତ ଶ୍ରେଣି
ଗର୍ଜନ୍ତ ଉଡଙ୍ଗେ ଯେ ପବନ ଦର୍ପ ଜାଣି । ୧୪୯ ।
ଶ୍ରୀଭୁଜେ ବଜ୍ର ମୂଷଳ ବାମେ ବଜ୍ର ଲାଙ୍ଗଳ
କାଦମ୍ବରୀ ପାନେ ସ୍ୱାମୀ ସର୍ବଦା ମତ୍ତ ଭୋଳ । ୧୫୦ ।
ବୀରଜନ୍ତ ଚନ୍ଦ୍ରଚୂଡ଼ ମୁକୁଟ କୁଣ୍ଡଳୀ
ଛଡ଼ଦଶ ଲୋଚନ ବୀରଜନ୍ତ ଦେବ ହଳୀ । ୧୫୧ ।
ତ୍ରଇଲୋକ୍ୟେଶ୍ୱର ପୁରୁଷ ତୁ ଅଜପା ମନ୍ତ୍ର ସିଦ୍ଧି
ଅବଧୂତ ମୁଦ୍ରା ମାତାଙ୍ଗୀ ରୂପେଣ ନରୋଧି । ୧୫୨ ।
ସ୍ୱାମୀ ପରମ ପୁରୁଷ ତୁ ଯେ ସାଧିଲୁ ଉଜାଣି
ଟେକ ଛନ୍ଦିଲୁ ଯେ ଅପର୍ତ୍ତା ମୂଳେ ଆଣି । ୧୫୩ ।
କାମିନୀ କନ୍ଦର୍ପ ନାଥ ଅଭୟେ ମେଖଳା
ପ୍ରଳୟ ଉଦ୍ଧାରଣ ନାଥ ପ୍ରସନ୍ନ ଧବଳା । ୧୫୪ ।
ଯୋଗେଶ୍ୱର ପୁରୁଷ ନାଥ ତୁ ସମୂଳ ଜନ ଚିନ୍ତା
କୃତକର୍ମା ଭାବେ ତୁ ବଳଦନ୍ତା ବଧାତା । ୧୫୫ ।
କୋଟିଯେ ତୀର୍ଥକଇଂ ଯେବଣ ସ୍ୱାମୀ ମୂଳ
କୋଟିଯେ ତୀର୍ଥ ଧେନ ପୁଷ୍କର ସଙ୍ଗମ ଯାହାର ପାଦତଳ । ୧୫୬ ।
ମୁହିଂ ହୀନ ଦୁଖୀ ଯେ ଅଟଇ ସାରୋଳା ଦାସ
ଶ୍ରୀବଳରାମ ଚରଣ କମଳେ ଭକତି ବଢ଼ାଇ ମୋର ଆଶ । ୧୫୭ ।
ରୋହିଣୀ ନନ୍ଦନଙ୍କ ପାଦପଦ୍ମ ସେବି
ବଦସ୍ତନ୍ତ ଶୂଦ୍ରମୁନି ସାରଳା ଦାସ କବି । ୧୫୮ — ୩୨୩୮ ।

—

୧୪୮।୨ "ସ୍ୱେଦାନ୍ତ ମାରଣ ଦେବ ଉଦ୍ଧରିଲୁ ମେଦିନୀ" ପାଠପରେ ( ଙ, ଥ, ନ ) ପୋଥିରେ ଅଧିକା ପାଠ:—
ମୁଷ୍ଟିକ ଧେନୁକାସୁର ନାଶିଲୁ ଯେ ତୁହି
ଅନେକ ଦୈତ୍ୟ ମାରି ଉଦ୍ଧରିଲୁ ମହୀ ।
୧୫୧।୨ ( ) ଲୋହଳ ନୟନ ବୀରଜନ୍ତ ପରେ ଜଳୀ ( ଙ, ଥ, ନ )
୧୫୫।୨ କୃତକର୍ମେଣ ଭାବକୁ ମହା ବଳଦନ୍ତା । ( ଝ, ଠ )

# ଭୀଷ୍ମଙ୍କର ସପ୍ତମ ଦିବସ ଯୁଦ୍ଧ

ଯେତୁଅ ଅନନ୍ତରେ ଯେ ବଇବସୁତ ମନୁ
ବ୍ରହ୍ମବେଣ୍ଣ ଅଗସ୍ତି ଯେ କୁମ୍ଭରଧର ତନୁ । ୧ ।

ଛଡ଼ ଦିବସ ଅନ୍ତରେଣ ଘୋର ସମରର କଥା
ଶ୍ରୀ ମହାଭାରଥ ଯେ ଭୀଷ୍ମପର୍ବର ବାରତା । ୨ ।

ଯତ୍ନେ ବଳରାମ ପ୍ରଯାଗ ତୀର୍ଥେ ବିଜେ
ପାଣ୍ଡବନ୍ତ ଘେନି ଜଇନ୍ତାଯେ ବିଜଯେ ଦେବରାଜେ । ୩ ।

ନିତ୍ୟକର୍ମ ବିଧାନ ଦେବାର୍ଚ୍ଚନ ମାଗି କରନ୍ତି ମୂଣୋହ୍ନି
ସମସ୍ତ ଯୋଦ୍ଧାଯେ ଭୀଷ୍ମଙ୍କର ମହିମା ଯେ କହି । ୪ ।

ତମିର ବିଦାରଣ ଉଦଯେ ଦିନମଣି
ପ୍ରଭାତେ ଦୁର୍ଯୋଧନ ଥାଠ ଯେ ଫଳିଣି । ୫ ।

ଭୀଷ୍ମ ମୁକୁଟ ବାନ୍ଧଣ ହୋଇଲେ ସେନାପତି
ଦ୍ରୋଣ କର୍ଣ୍ଣ ଶଲ୍ୟ କୃପ ସାଜିଲେ ସମଦଣ୍ଡ ମହାରଥୀ । ୬ ।

ଢୋଲ ଦମାଲୁ ଝମକ ନିଶାଣ ଭେରୀ ବାଦ୍ୟେ
ସମଦଣ୍ଡ ମାନଗୋବିନ୍ଦ ସମରେଣ ବିଜେ । ୭ ।

ସମୁଦ୍ର ମନ୍ଥନେ ଯେହ୍ନେ ସମସ୍ତ ବୃନ୍ଦାଅର୍କେ
ସମରେ ପ୍ରବେଶ ହୋଇଲେ ଯୋଦ୍ଧାମାନେ ଯେକୁଂ ଯେକେ । ୮ ।

ନନ୍ଦିଘୋଷ ରଥେ ଯେ ବିଜଯେ ବନମାଳୀ
ଅର୍ଜୁନକଇଂ ଘେନି ଦେବ ସମରେ ଯାଇଂ ମିଳି । ୯ ।

ଶ୍ୱେତ ହାଥୀ ଉପରେ ବିଜଯେ ଧର୍ମ ସୁତେ
ଉହ୍ନୋମୁଖ ହୋଇଣ ଉଭିଲେ ଗଜ ଅଶ୍ୱ ରଥେ । ୧୦ ।

କରେ ଅଜଗ ଧନୁ ଧରଣ ଗାଙ୍ଗବେ
ରଥେ ଆରୋହିଣ ପଥେ ଭେଟିଲେ ପାର୍ଥିବେ । ୧୧ ।

ଗୁଣଘୋଷ ଶବଦେ କମ୍ପଇ ମୃଥିବୀ
ବାଜଇ ବିଜଘୋଷ ଦାଉଣ୍ଡି ଦମାଲୁ ଦୁନ୍ଦୁଭି । ୧୨ ।

ଧାମନ୍ତ୍ରେଣ ଯୋଦ୍ଧାୟେ ଗଗନେ ଉଡଇ ଧୂଳି
ଆକାଶେ ଅଦୃଶ୍ୟ ହୋଇଲେ ଅଂଶୁମାଳୀ । ୧୩ ।
ଦେଖ ହୋ ମହାରାଜା ଭୀଷ୍ମଙ୍କର ମହିମା
ବିଶ୍ୱାବସୁ ସାରକ୍ଷେ ଯାହାର ଗରିମା । ୧୪ ।
ଶ୍ରୀଭୀଷ୍ମଙ୍କେ ଶୋଭବନ ଧନୁ ଯେ ଅଜଙ୍ଗ
ଆନେହିଁ ନାରାଜ ଅର୍ଜୁନକୁ ବାନ୍ଧିଲେ ଗାଙ୍ଗେବ । ୧୫ ।
ଲୁହାର ପଞ୍ଚୁଶର ସେ ନାରାଜ ଖରମୁନା
ଆକର୍ଣ୍ଣ ପୂରେଇ ବନ୍ଧନ୍ତେ ଫୁଟିଲା ଅର୍ଜୁନ ବଜ୍ରସେହ୍ନା । ୧୬ ।
ପୁଣ ପଞ୍ଚଦଶ ବଜ୍ରମୁନା ବାଣ ଘେନ
ହାକନ୍ତା ଗାଙ୍ଗେବ ଯେ ପେଷିଲେକ ଫାଲଗୁନ । ୧୭ ।
ପୁଣ ପଞ୍ଚାଶତ ପୂରେଇ ନାରାଜ
ବନ୍ଧନ୍ତେଣ ଭୀଷ୍ମ ଦେଖିଲେ ଦେବରାଜ । ୧୮ ।
ପୁଣ ପୁଣ ଗାଙ୍ଗେବ ପୂରେଇଣ ଶର
ବିଶାଶତେ ନାରାଜ ବାନ୍ଧିଲେ ଅଶ୍ୱଂକ ଉପର । ୧୯ ।
ଆସନ୍ତେ ନାରାଜ ଶୂନ୍ୟ ଭୁବନ ଘୋଟି
ପଞ୍ଚଷଠି ବାଣେ ତାହା ଛେଦିଲା କିରୀଟୀ । ୨୦ ।
ଭୀଷ୍ମଙ୍କର ନାରାଜ ଯେ ଛେଦିଲା ସବ୍ୟସାଚୀ,
ପୁଣ ପୁଣ ଧନୁର୍ଜ୍ୟେ ଗାଣ୍ଡିମ ଆମଞ୍ଚି । ୨୧ ।
ମେଦମା ଦଲଦଲାତ ଧନୁର ଗୁଣଘୋଷେ
ଯେସନେକେ ବଳା କେ ଉଡନ୍ତି ଆକାଶେ । ୨୨ ।
ପୁଣି ଭୀଷ୍ମ ପେଷିଲେ ଯେ କୋଠାର ଆୟୁଧେ
କୋଦାଳ ଶର ପେଷି ପାର୍ଥ ତାହା ଛେଦିଲ ମହାଯୁଦ୍ଧେ । ୨୩ ।
ପୁଣ ଗାଙ୍ଗେବ ଯେ ସହସ୍ରେ ଶର ଧରି
ଅର୍ଜୁନ ଉପରକୁ ଅବଲ୍ଲୁନ୍ତେ ବାଣ ମାରି । ୨୪ ।
କଂକପକ୍ଷୀ ନାରାଜ ପରିଧ ଖରମୁନା
ଭେଦଇ ଫାଲଗୁନ ଗାଙ୍ଗେବର ବଜ୍ରସେହ୍ନା । ୨୫ ।
ଅର୍ଜୁନ ନାରାଜ ଯେ ଛେଦିଲେ ଶାନ୍ତନୁନନ୍ଦନ
ପୁଣ ସହସ୍ରେ ନାରାଜ ପୂରେଇ ବାନ୍ଧିଲ ଫାଲଗୁନ । ୨୬ ।

ଅନିବାରଣ ଶର ଯେ ପେଷିଲେ ଗାଙ୍ଗେୟ
ପେଷିଲେ ଅର୍ଜୁନ ଉପରକୁ ଗୁଡ ମଣ୍ଡଗଙ୍କ । ୨୭ ।
ପୁଣ ପରଘ ନାରାଜ ପେଷି ଭୀଷ୍ମ ମହାରଥୀ
ଅର୍ଜୁନ ଉପରକୁ ବିନ୍ଧିଲେ ତତକ୍ଷଣାନ୍ତ । ୨୮ ।
କଉମୋଦକୀ ଶହସ୍ର ପେଷିଣ ଫାଲଗୁନି
ଭୀଷ୍ମଙ୍କ ଉପରକୁ ବିନ୍ଧିଲା ବେଳ ତିନି । ୨୯ ।
ଗଙ୍ଗାର ନନ୍ଦନ ଯେ ଦେଖିଲେ ତାହା ଦୂରେ
ଛେଦିଲେ ନାରାଜ ଯେ କାର୍ମୁକ ପଞ୍ଚ ଶରେ । ୩୦ ।
ସମରଣେ ବିଜୟୀ କୁମାର ଶ୍ରୀଖଣ୍ଡୀ
ଅଶ୍ୱତ୍ଥମା ଭିଡ଼ିଲେ ରଣରଙ୍ଗେ ମଣ୍ଡି । ୩୧ ।
ବିଶାଶତେ ନାରାଜ ପୂରେଇ ଅଶ୍ୱତ୍ଥମା
ଓହୋବଳ ଭୋଟିଲା ଯେ ଭାରତ କୁଳ ବ୍ରହ୍ମା । ୩୨ ।
ଚଉବଂଶ ନାରାଜ ପେଷିଣ ଦ୍ରୁପଦର ବଳା
ଅଶ୍ୱତ୍ଥମା ଉପରକୁ ବିନ୍ଧିଲା ନାରାଜ ମହାଖଳା । ୩୩ ।
ପୁଣ ପୁଣ ନାରାଜ ପୂରେଇ ଚଉଷଠି
ବିନ୍ଧନ୍ତେଣ ଅଶ୍ୱତ୍ଥମା ଶ୍ରୀଖଣ୍ଡୀ ରଥ ଯୋଚି । ୩୪ ।
ଶ୍ରୀଖଣ୍ଡୀ ବିନ୍ଧିଲା ଯେ ପଶୁପତ ବାଣ
ଯେସନେ ନଦାଘ କାଳେ ଆଦିତ୍ୟ କରଣ । ୩୫ ।
ଦ୍ରୋଣଙ୍କର ନନ୍ଦନ ଦେଖିଲେ ତାହା ଧୂରେ
ଅଶ୍ୱତ୍ଥମା ଛେଦିଲା ତାହା ନିଦ୍ରାଘ ଅନଳ ଶରେ । ୩୬ ।
ବେନି ଶହସ୍ର ଭାଜଣ ଯେ ହୋଇଲା ପଡତାଳ
ଉଠିଲା ବହନ ଯେ ଗଗନେ ମହାଜାଳ । ୩୭ ।
ପଦ୍ମ ଶହସ୍ରେକ ବିନ୍ଧିଲେ ପେଷିଣ ଅଶ୍ୱତ୍ଥମା
ବିନ୍ଧନ୍ତେ କମ୍ପିଲେ ଯେ ଆକାଶେ ବେଦବ୍ରହ୍ମା । ୩୮ ।

---

୨୭ { ଅନିବାରଣ ଶର ଯେ ପେଷିଲେ ଗାଙ୍ଗେୟ ।
ଅର୍ଜୁନ ଉପରକୁ ବିନ୍ଧିଲେ ଶର ମଣ୍ଡଗଙ୍କେ । ( ଙ, ଥ, ନ )

୩୫।୨ ମହାଘୋର ତେଜ ତାର କି କରିବାର କରଣ । ( ଙ, ଥ, ନ )

ପର୍ବତେ ଗର୍ଜିଣ ଯେ ଆସନ୍ତ ପ୍ରଚଣ୍ଡ

ଭାଜିଲେ ପାଣ୍ଡବ ବଳ ଘୋଟିଲା ବ୍ରହ୍ମାଣ୍ଡ । ୩୯ ।

ରଥ ଗଜ ସଇନ ହେଉଛନ୍ତି ମସିଗୁଣ୍ଡି

ସମରେ ଶବଦ ଶୁଭଇ ରକ୍ଷ ରଖ ହେ ଶିଖଣ୍ଡୀ ।୪୦ ।

ଦ୍ରୁପଦ ନନ୍ଦନ ସମରେଣ କଇଛା ଜଗଜ୍ଜେଠୀ

ବଜ୍ର ଶର ପେଷି ପର୍ବତା ଶର କାଟି । ୪୧ ।

ବଜ୍ର ଶର ପଡିଲା ଯେ ନିର୍ଘାତ ପ୍ରାୟେ ଗର୍ଜି

ସମସ୍ତ ପର୍ବତମାନ ପଡିଗଲା ଭାଜି । ୪୨ ।

ଦୁରପଦ ସମର ହୋଇଲା ବେନିଂକର

ମଧ୍ୟ ଥାନେ ଆସି ଭେଟ କଲେ ଦିବାକର । ୪୩ ।

ଅସମ୍ଭବ ସମର ଲାଗିଲା ଗରୁ ବାଧା

ଓହୋବଳ ସଇନକୁ ଲାଗିଲା ବଡ କ୍ଷୁଧା । ୪୪ ।

ଭଜେକର୍ଣ୍ଣିକଠାର ହେନିଣ ଗାଙ୍ଗେବ

ଧନୁରେ ବସାଇଲେ ନାରାଜ ସଦାଶିବ । ୪୫ ।

ସହସ୍ରେ କୋଟି କିରଣ ତେଜନ୍ତ ପରକାଶି

ଦିଗାମ୍ବର ଲୋକେ ଦେଖି ଆକାଶେଣ ତ୍ରାସି । ୪୬ ।

ତେଜ ଦେଖି ନୟନ ଯେ ବୁଜିଲେ ସମସ୍ତ

ରଥେ ଥାଇଂ ଅର୍ଜୁନର କମ୍ପଇ ବେନି ହାଥ । ୪୭ ।

ଭୁଜ କମ୍ପନ୍ତେଣ ଯେ କମ୍ପଇ ତାର କାୟେ

ନନ୍ଦିଘୋଷ ରଥ କମ୍ପଇ ଦେଖନ୍ତି ଦେବରାୟେ । ୪୮ ।

ନନ୍ଦିଘୋଷ ରଥ ଚକ ଲାଗିଲାକ ପୃଥୀ

ଉଲୁକାପାତ ଜାଣି କମ୍ପିଲା ବସୁମତୀ । ୪୯ ।

ପାତାଳେ କମ୍ପିଲେ ଅନନ୍ତ ବାସୁକୀ

ଦେବତାମାନେ ଭୟେ ପଳାଇଲେ ଶଂକି । ୫୦ ।

ଭଜେକର୍ଣ୍ଣିକଠାର ପଡିଲା ଧାଡିକାରେ

ବେନି ଅହିବ୍ରତେ ଯୋଦ୍ଧା ପଡିଲେ ସେହିଠାରେ । ୫୧

ରକତେଣ କର୍ଦ୍ଦମ ହୋଇଲା ବସୁଧା

ରଣ ଜୟ କରି ଭୀଷ୍ମେ ଭାରତ କୁଳସିଦ୍ଧା । ୫୨ ।

୧।

ଜୟେ ଶଙ୍ଖ ଶବଦ କରଣ କଉରୋବ ସଇନ
ବାହୁଡ଼ଇ ମାନଗୋବନ୍ଦ ନଜ ବଳ ଘେନ । ୫୩ ।
ପାଣ୍ଡେବ ପାଞ୍ଚାଳ ଯେ କ୍ରୋଧେଣ ଆକୁଳ
ଶୋକେଣ ଅବସ୍ଥା ଯେ ସମସ୍ତେ ବକଳ । ୫୪ ।
ପ୍ରବେଶ ପାଣ୍ଡବେ ଯାଇଂ ଜୟନ୍ତା ଭୁବନେ
ବସରଇ ଫାଲଗୁନ ବଇକୁଲ୍ୟ ପଞ୍ଚ ମନେ । ୫୫ ।
ସ୍ନାହାନ ଦେବାର୍ଚନ ନତ୍ୟ କର୍ମ ସାର
ସାଧୁ ସାଧୁ ଗାଙ୍ଗେବ ବୋଲ ଥାଠରେ ଅବଧାର । ୫୬ ।
ଅନେକ ରତ୍ନ ଘେନ ମାନଗୋବନ୍ଦ ରାଜା
ଭୀଷ୍ମଂକ ସନ୍ନିଧେ ମିଳ କଲା ପାଦପୂଜା । ୫୭ ।
ସଞ୍ଜୟେ ବୋଇଲା ଶୁଣିମା ଧୃତରାଷ୍ଟ୍ର
ଯେବକା ଭୀଷ୍ମେ ନଶୋଧିଲେ ପାଣ୍ଡବ ବଳଥାଠ । ୫୮ ।
ଜୀବନ ତାଂକ ଧନ ଛତ୍ରୀପଣ ଧନ
ଆକାଶେ ପ୍ରଶଂସା ଯାହାନ୍ତ କରନ୍ତ ପଦ୍ମଯୋନ । ୫୯ ।
ଭୀଷ୍ମ ପ୍ରାୟେ ହୋଇ ଯେବେ ଥିବେ ପାଞ୍ଚ ରଥୀ
ନବଦ୍ୱୀପ ଜଣି ସେ ପାରନ୍ତ ମହାଛତ୍ରୀ । ୬୦ ।
ଆଜର ଯୁଦ୍ଧ ରାଜା ଦେବାନ୍ତ ଆଗୋଚର
ଭୀମିଲା ଭେଳା ତୋର ଭୀଷ୍ମେ କଲେକ ଉଦ୍ଧାର । ୬୧ ।
ଯେବେ ଜାଣିଲୁ ତାଂକର ପାଣ୍ଡବଂକୁ ନାହିଂ ଦୟା
ପାଇଲୁ ପଞ୍ଚ ରାଜ୍ୟ ରାଜା ହୋଇଲୁ ନର୍ଭୟା । ୬୨—୩୩୦୦ ।

# ଭୀଷ୍ମଙ୍କର ଅଷ୍ଟମ ଦନ ଯୁଦ୍ଧ ଓ ଅଗ୍ନିଙ୍କ ଠାରୁ ଶର ପ୍ରାପ୍ତି

ମନ୍ତ୍ରୀର ବଚନେ ରାଜା ଧୃତରାଷ୍ଟ୍ର
ଦଣ୍ଡ ସାଜ ଆଗ୍ୟାଂ ଦଲା ହୋଇ ତୁଷ୍ଟ । ୧ ।

---

୫୯।୨ ଆକାଶେ ପ୍ରଶଂସା କରନ୍ତ ଯାହାକୁ ପଦ୍ମଯୋନ । ( ଙ, ଚ )

ଶ୍ରୀହସ୍ତେ ଅର୍ଘ୍ୟ ଦେନ ରାଜା କୁରୁପତି
ଅନେକ ପୁରୁଷାର୍ଥେ ବିନୟ ଭଗତି । ୨ ।
ସାଜନ୍ତି କଉରବେ ବଳ ରଥ ଗଜ ମୟେମନ୍ତ
ପାଦାନ୍ତି ସଇନ ବଳ ନ ଯାଇ ଗଣିତା । ୩ ।
ମକର ମାସ ଶୁକଳ ପକ୍ଷ ଅଷ୍ଟମୀର ତିଥି
ଦଣ୍ଡ ଦେନ ସମରେ ବିଜୟେ ମାନଚକ୍ରବର୍ତ୍ତୀ । ୪ ।
ନନ୍ଦିଘୋଷ ରଥ ସାଜିଲେ ଦେବ ହରି
ରଥରେ ଯୋଚିଲେ ଆଣି ଶ୍ୱେତ ଅଶ୍ୱ ଗୃର । ୫ ।
ଦେବଦତ୍ତ ଶଙ୍ଖ ପଞ୍ଚଜନ୍ୟ ଶଙ୍ଖ ବାଜେ
ଶୁଭଲଗ୍ନ ବେଳେ ରଣ ମଧ୍ୟେ କଲେ ବିଜେ । ୬ ।
ନିଦାଘ ଆଦିତ୍ୟ ଜାଣି କୃଷ୍ଣଂକର ମୂରତି
ଗଗନେ ବିରାଜନ୍ତି ସହସ୍ରଂକର ଜ୍ୟୋତି । ୭ ।
ଶ୍ରୀଭୁଜେ କୃଷ୍ଣଂକର ନଉସହସ୍ର ବଳ ଧନୁ
ବ୍ରହ୍ମାଣ୍ଡ କମ୍ପୁଅଛି କୃଷ୍ଣଂକର ସହସ୍ର ଆମଞ୍ଜନୁ । ୮ ।
ମେଦିନୀ ଦଳଦଳତି କୃଷ୍ଣଂକର ଧନୁ ଧରୁ
ବ୍ରହ୍ମା ଥରହର ଗୁଣଘୋଷ ଶବଦରୁ । ୯ ।
ସହସ୍ରେକ ନାରାଜ ପୂରେଇ ଗାଙ୍ଗବେ
କୋପେଣ ବିନ୍ଧିଲେ ସହିଂ ପାର୍ଥ ବାସୁଦେବେ । ୧୦ ।
ପୁଣି ଗାଙ୍ଗବେ ସହସ୍ରେ ନାରାଜ ଗୁଣରେ ପୂରେଇ
କପିକେତନ ଧ୍ୱଜକୁ ଯେ ବିନ୍ଧିଲେ ନିଠିଆଇ । ୧୧ ।
ବୋଲନ୍ତି କେଶବ ଯେ ଶୁଣ ଫାଲଗୁନି
ସହସ୍ରେ ନାରାଜ କୃଷ୍ଣେ ବିନ୍ଧିଲେ କରେ ଦେନ । ୧୨ ।
ପୁଣି ବିନ୍ଧିଲେ ଯେ ବେନି ସହସ୍ର ବାଣ
ପୁଣି ହନୁମନ୍ତଙ୍କଇଂ ବିନ୍ଧିଲେ ଶତେ ବାଣ । ୧୩ ।
ହାଥର ବ୍ୟଗ୍ରତା ଯେ କହିତ ନ ପାରି
ଆକାଶେ ଅଦୃଶ୍ୟ ହୋଇଲେ ଗଗନ ବିହାରି । ୧୪ ।
ନାରାୟଣଂକ ଅଗ୍ରତେ ପୁଚ୍ଛଇ କଣ୍ଠୀ
ଦିନକର ନାଥ ଅସ୍ତଗଲେ କି ମହାନିଶା ଘୋଟି । ୧୫ ।

ଶୁଣିଣ କଣ୍ଟ ବଚନ ନ ପୂରଇ ଦେବସଙ୍ଘେ
ବୋଇଲେ ସମରେ ବମୁଖ କଂପେ ହୋଇଲୁ ଧନୁର୍ଜୟେ । ୧୬ ।
ଆହୋ ଅର୍ଜୁନ ଅନିର୍ଯାପ ଶର ଖଣ୍ଡେ ଯେ ବନ୍ଧିଲେ
ତେଣୁ କରି ଆଦିତ୍ୟ ଦେବତା ଅସ୍ତ୍ର ପ୍ରାୟେକ ଦଶିଲେ । ୧୭ ।
କପିକେତନ ଧ୍ୱଜକୁ ବନ୍ଧିଲେ ଶସ୍ତ୍ର ତିନି
ଉପରେ ଉପରେ ତାହା ଛେଦିଲା ବୀର ଫାଲଗୁନ । ୧୮ ।
ଅର୍ଜୁନକୁ ବନ୍ଧିଲେ ନାରାଚ ତିନ ଅହ୍ନବ୍ରତ
ବାବଲ ଶରେ ତାହା ଛେଦିଲାକ ବୀର ପାର୍ଥ । ୧୯ ।
ସମରେ ପଶିଲା ଭୀମ ପାଣ୍ଡବ ସୁନ୍ଦର
ଭୀଷ୍ମରୂପ ପ୍ରକାଶିଲା ଜାଣି ନାଶକର । ୨୦ ।
ଅଧରେ ଦନ୍ତ ଚୃପି ଗଗନେ ଶିର ଲଗି
ଦେଖି କଉରେବ ବଳ ପଳାଇଲେ ଭାଙ୍ଗି । ୨୧ ।
ସଇନ ପଳାବନ୍ତେ ଯେ ଦେଖିଲା ଶକୁନି
ଭୀମସେନକଇଂ ଓଗାଳିଲା ତିନିଲକ୍ଷ ଯୋଦ୍ଧା ଘେନି । ୨୨ ।
ଭୀମସେନ ସାନନ୍ଦ ଯେ ଶକୁନିକ ଦେଖି
ବକପଲ ଦେଖି ଯେହ୍ନେ ଧାଇଁଇଂ ଶେଣାପକ୍ଷୀ । ୨୩ ।
ଗଦାବର ବୁଲାଇ ଯେ ଭୀମସେନ ଉଠି
ବୀର ଦର୍ପମର୍ଦ୍ଦନ ଗଦା ନେଇ ରଥ ଉପରେ ପିଟି । ୨୪ ।
ଆକ୍ଷେପିଣ ପ୍ରହାର ଯେ କଲାକ ମହାବଳୀ
ଭାଙ୍ଗିଣ ରଥମାନ ଯେ ହୋଉଛନ୍ତି ଧୂଳି । ୨୫ ।
ରଥୀ ସାରଥି ଅଶ୍ୱ ଯେ ସହିତେ
ସମସ୍ତ ମସିଗୁଣ୍ଡା ହୋଇଲେ ଗଦାବର ଘାତେ । ୨୬ ।
କୋପେଣ ଧାମଇଂ ଯେ ଦେଖିଣ ଗଜଯୂଥ
ବେନ ହାଥେ ବେନ ଗଦା ଘେନ ପବନର ସୁତ । ୨୭ ।
ଦୁହିଂକ ଦୁଇ ହାଥେ ବୁଲାଇ ପ୍ରଚଣ୍ଡ
ପିଟନ୍ତେଣ ସମସ୍ତେ ହୋଇଲେ ମସିଗୁଣ୍ଡ । ୨୮ ।

---

୨୦।୨ ଭୀଷ୍ମରୂପ ପ୍ରକାଶିଲା ନୃସିଂହ ପ୍ରକାର । ( ଧ, ଠ )

ମାରଣ ସହିନ ଯେ କଲା ସର୍ବ ଶେଷ
ପଳାଇଲା ଶକୁନ ହୋଇଣ ଅର୍ଦ୍ଧ ନିଶ୍ୱାସ । ୨୯ ।
ଭୀମସେନ ଡାକ ଦିଅଇ ମାମୁଂ ରହ ରହ
ବୁଦ୍ଧି ଉପାୟେ ଥିଲେ କହ ପଡ଼ିଛି ସନ୍ଦେହ । ୩୦ ।
ବୁଲାଇ ବୃକୋଦର ଗଦାୟେ ରଥେ ପିଟି
ବଜ୍ର ପ୍ରହାର ଜାଣି ରଥ ଗୁଣ୍ଡା ହୋଇ ଉଠି । ୩୧ ।
ଗାନ୍ଧାର ଦେଶ ନୃପତି ଆରୋହଣ ଗଜେ
ଭୀମସେନକଇଂ ବାନ୍ଧିଲା ପରଧ ନାଗଜେ । ୩୨ ।
ବାମ ଅଙ୍ଗ ପାଡ଼ିଲା ଯେ ପାଣ୍ଡବ କୁଳ ଜେନା
ଭଙ୍ଗିଲା ପରଧ ନାଗଜ ହୋଇଲା ସର୍ବ ଚୂନା । ୩୩ ।
ଗଦା ବୁଲାଇ ସେ ପାଣ୍ଡବ କୋପାନଳେ
ଧାଡ଼କାରେ ପିଟିଲା ସେ ମତ୍ତନାଗ କୁମ୍ଭସ୍ଥଳେ । ୩୪ ।
ଦାରୁଣ ପ୍ରହାରେ ଯେ ପଡ଼ିଲା ମତ୍ତହାଥୀ
ପଳାବଇ ଶକୁନ ଯେ ହୋଇଣ ପାଦଚଡ଼ି । ୩୫ ।
ପାଦକେ କ୍ଷେପିଲା ଯେ ପବନର ବାଳ
ଧାଇଂ ଯାଇ ଧଇଲା ସେ ଶକୁନିର ବାଳ । ୩୬ ।
ଦକ୍ଷିଣ କରେ ଗଦା ବାମ କରେ ଶକୁନିର କେଶ
ଆଣ୍ଠୁ ପାଡ଼ି ବୁକୁରେ ବସି କରଇ ହିଂସାସ । ୩୭ ।
ଭୀମସେନ ବୋଇଲା ମାମୁଂ ତୁ ଯେ ମୋତେ ଖୁଆଇଲୁ ବିଷ ଲଡ଼ୁ
ଜତୁଘରେ ଭରି ଆମ୍ଭନ୍ତ ଦେଇ ପୋଡ଼ି ଲୋଡ଼ୁ । ୩୮ ।
ପୁଣିହିଂ ଭୁଆଇଲୁ ହାଦେ କପଟ ପଶା
ପାଣ୍ଡବଂକ ପାଇଂ ତୋହୋର ଯେତେକ କମା ହିଂସା । ୩୯ ।
ଅନେକ ଅବସ୍ଥା ତୋହୋରେ ପାଇଲୁ ମାମୁଂ ପୂର୍ବେ
ତୋହୋରେ ସେ କଉରେବେ ଯେତେକ ମତ୍ତ ଗର୍ବେ । ୪୦ ।
ହକାର କଉରେବଂକୁ ତୋତେ କେ ଅଛି ରକ୍ଷନ୍ତା
ସୁମର ହୋ ଶକୁନି ତୋର ଇଷ୍ଟ ଯେ ଦେବତା । ୪୧ ।

---

୩୭।୨ ଆଣ୍ଠୁମାଡ଼ି ମୁଖ ଗୃହିଂ କରଇ ହିଂସାସ । ( କ, ଙ )

ଦଶନହ ବକାଶିଣ ଗର୍ଜଇ ମାରୁତି
ଆଜ ତୋର ଶୋଣିତ ପାନ କରିବ ବକ୍ଷସ୍ଥଳ ଭେଦି କୋତି । ୪୨ ।
ଶକୁନି ନିଧନ ବୋଲ ଯହୁଁ ଶୁଭିଲାକ ଧ୍ୱନି
ମାନଗୋବନ୍ଦ ଉଠିଲା ଦୁର୍ଯ୍ୟୋଧନ ବଚନ ଶୁଣି । ୪୩ ।
ସଜୁର ସଜୁର ଭାର କରେ ଗଦାବର
ଧୃଶାସନ ଭେଟିଲା ଆସି ଭୀମସେନର ଆଗର । ୪୬ ।
ଧୃଶାସନ ମିଳଲା ଯହୁଁ ଭୀମର ଅଗ୍ରତ
ଦେଖିଣ ପାଣ୍ଡବେନ୍ଦ୍ର ଦୁଗୁଣ କ୍ରୋଧ ଚିତ୍ତ । ୪୫ ।
ଘୋର ବକ୍ରମ ଧୃଶାସନ କରେ ଗଦା ଦେଖି
ଧାଇଁଲା ବୃକୋଦର ଶକୁନିକି ଉପେକ୍ଷି । ୪୬ ।
ଭୀମସେନ ଗୁଡନ୍ତେ ପଳାଏ ଶକୁନି
ଗୋଳେ ପଶିଲା ଯାଇଁ କଉରବ ସଇନି । ୪୭ ।
ଧୃଶାସନ ଦୁର୍ଜୟ ଯେ ପଳାନ୍ତେ ତରସ୍ତେ
ସମସ୍ତ ଗୋଳ ହୋଇଲା ଗଜ ଅଶ୍ୱ ରଥେ । ୪୮ ।
ଧାଇଁନ୍ତେଣ ଉଡ଼ିଲା ଚରଣର ଧୂଳି
ତିମିର ଘୋର ଅନ୍ଧାର ନ ଦିଶିଲେ ଅଂଶୁମାଳୀ । ୪୯ ।
ବାରଣ ନ ଗଲା କେ ପର ଯେ ଆପଣା
ଗହଳ ଧଡ଼ିହାଳେ ହୋଇଲେ ସର୍ବେ ବଣା । ୫୦ ।
କେଣେ ଇନ୍ଦ୍ରପ୍ରସ୍ଥ କେଣେ ହସ୍ତିନା ଜଇନ୍ତା ବାରୁଣା
ନ ଦିଶଇ ପଥ କେହି ନୋହିଲେ ଗଣନା । ୫୧ ।
ଝଣ ଝଣାନ୍ତ ଶସ୍ତ୍ରମାନେ ଯୋଦ୍ଧାଏ ପିଠାପିଠି
ଶସ୍ତ୍ରଙ୍କ ପଡ଼ିତାଳେ ଅଗ୍ନି ଜଳି ଉଠି । ୫୨ ।
ସୈନ୍ୟକୁ ଆରକେ ପ୍ରହାର କରନ୍ତି ଗଦା
ଭାଙ୍ଗିଣ ଅନେକ ସଇନ ହୋଇଲେକ ପଦା । ୫୩ ।
ରଥଂକର ଆଜ ଭଗ୍ନ ଗଜଂକର ପାଦ ଗ୍ଲେଟ ।
ଅଶ୍ୱମାନଂକର ମୁଖ ବନ୍ଧ ନିଖୁଣ ନାହିଁ ଥାଠ । ୫୪ ।

---

୪୪।୧ ଅନେଶ୍ୱତ ଭ୍ରାଥ ହୋନ୍ତନ୍ତି ଗଦାବର । ( ଖ, ଠ )

ଅଶ୍ୱେ କ ଆରୋହଣ ନକୁଳ କୁମାର
ଶଲ୍ୟଂକର ଭୁଜେ କଲା ସମର ମହାଘୋର । ୫୫ ।
ଅନେକ ଶହସ୍ର ବାଣ୍ଧଲେ ଶଲ୍ୟ ମହାରଥୀ
ନକୁଳ ସେହ୍ନାସ୍ୟେଂ ପଡ ହୋଇଲେ ବକୋଣ୍ଡ । ୫୬ ।
କୋପେଣ ନକୁଳ ଯେ ବାନ୍ଧିଲା ନବନଶି କୋନ୍ତ
ଛହ ପ୍ରାସ୍ୟେ କର ସେ ତୋଳିଲା ଶଲ୍ୟଂକର ରଥ । ୫୭ ।
ରଥୁଂ ଡେଇଂ ପଡଲେ ଯେ ଶାକଲ୍ୟ ଦେଶ ରାଜା
ବହୁତ ସମର ହୋଇଲା ମାତୁଳ ଭଗ୍ନୀଜା । ୫୮ ।
ବୁଲାଇ ରଥ ଫିଙ୍ଗି ପିଟିଲା ହାଦେ ନକୁଳ କୁମାର ତେଜନା
ବେନ ଯୋଜନେ ଦଣ୍ଡ ରଥ ସାରଥୀ ହୋଇଲେକ ଚୂନା । ୫୯ ।
ଶଲ୍ୟକୁ ନକୁଳ କରେ ବହୁତ କନ୍ଦାଳ
ରଣ ଭଗ୍ନ କର ଟଳିଲା ଶଲ୍ୟଂକର ବାଳ । ୬୦ ।
ଦେଖିଣ କହୁ ନ ଫୁରଇ ମହାରଥୀ ଶଲ୍ୟ
ବରଥୀ ହୋଇଲେ ଯେ ଭଗ୍ରେଇ କୁଳ ମଲ୍ଲ । ୬୧ ।
ବାମ କରେ ନକୁଳ ଶଲ୍ୟଂକର କେଶ ଧର
ଡାହାଣ କରେ ଧରନ୍ତୁ ବଜ୍ରେକର୍ଣ୍ଣକଟାରୀ । ୬୨ ।
ନକୁଳ ବୋଇଲା ମାମୁଂ ହୋ ଇଷ୍ଟ ଦେବତା ସୁମର
କରସ୍ୟୁ ଆଜ ତୋତେ ପେଷିବ ଯମପୁର । ୬୩ ।
ତାହା ଦେଖି ଧାଇଂଲା ସହଦେବ ମନ୍ତ୍ରୀ
ମାତାଂକର ସହୋଦର ଭ୍ରାଥ ଯ୍ୟେ ଆମର ମାତୁଳ ଅଟନ୍ତି । ୬୪ ।
ଯ୍ୟେହାନ୍ତ ଉପେକ୍ଷା ସ୍ୱାମୀ କରିବା ନକୁଳେ
ପ୍ରାଣ ଦେନ ଥାଅନ୍ତୁ ଯ୍ୟେ ସମର ଶେଷ କାଳେ । ୬୫ ।
ସହଦେବଂକ ବଚନେ ଗୁଡିଲା ଶଲ୍ୟଂକର କେଶ
ପଳାବନ୍ତ ମହାରଥୀ ଅସମ୍ଭାଳ କେଶବାସ । ୬୬ ।

---

୫୭। ଛତ୍ରାବୃନ୍ଦେ କର ସେ ତୋଳିଲା ଶଲ୍ୟଂକର ରଥ । ( ଙ, ଝ )
୬୦। ରଣରଙ୍ଗେ ଧାଇଂ ଧଇଲା ଶଲ୍ୟଂକର ବାଳ । ( ଘ, ଙ, ଡ, ଠ, ଢ, ଥ )

କଣସୂ ମଣ୍ଡଣି ରଥ ଆରୋହି ସହଦେବ
ଅଶତ୍ଥାମାଂକ ଭୁଲେ ସମର ଘୋର ଯେବ । ୬୭ ।
ମାଦ୍ରୀର ନନ୍ଦନ ସେ ଯେ ମନ୍ତ୍ରୀ ଚୂଡ଼ାମଣି
ଭୂତ ଭବିଷ୍ୟ ବର୍ତ୍ତମାନ ଗ୍ୟାଂତା ସେ ସମସ୍ତ ଅଛି ଜାଣି । ୬୮ ।
ସମରେ ଅନିବାର ସେ ଅଟଇ ଅଶତ୍ଥମା
ଶାସ୍ତ୍ରକୁ ପ୍ରତିଶସ୍ତ୍ର ସେ ଯେ ଜାଣଇ ମହାତମା । ୬୯ ।
ଶରେ ଶର ବନ୍ଧାବନ୍ଧ ହୋଉଛନ୍ତି ବେନି
ବେନି ଶର ହାବୋଡ଼ନ୍ତେ ଝଲକଇ ବହ୍ନି । ୭୦ ।
ନକୁଳ ଧୂଶାସନ ହୋଇଲେକ ଭେଟ
ନକୁଳ ଯେକା ଧୂଶାସନ ଭୁଲେ ବହୁତ ହାଦେ ଥାଠ । ୭୧ ।
ଗାନ୍ଧାରୀ ନନ୍ଦନ କରେ ବେନି ଗଦା
ଓହୋବଳ ମଣ୍ଡିଲେ ସେ ସମରେ ମହାସିଦ୍ଧା ।୭୨ ।
ବେନ ବଳବନ୍ତା ସେ ଛନ୍ଦି ଯୁ ମହାମଲ୍ଲ
ପାଷାଣ ଝଡ଼ଇ ଶୁଣି ଦୁହିଂକର ବୋଲ । ୭୩ ।
ନକୁଳ ବୋଇଲା ସ୍ୱାମୀ ଶୁଣିମା ଧିଶାସନ
ଯେକ ଘୋଦରେ ଆମେ ହୋଇଲୁ ଅନ୍ୟୋଅନ୍ୟ । ୭୪ ।
ଦ୍ରୌପଦୀର କେଶ ଆକର୍ଷିଲୁ କୁରୁସଭା ତଳେ
ଯେତେକାଳ ପର୍ଯ୍ୟନ୍ତେ ଦେବୀର କେଶ ହୋଇଛି ମୁକୁଳେ । ୭୫ ।
ଯେ ତୋର ଦକ୍ଷିଣ ଭୁଜ ଓପାଡ଼ିବେ ବୃକୋଦର
ଶୋଣିତ ନିଉଡ଼ିବେ ନେଇ ଦ୍ରୌପଦୀର ଶିର । ୭୬ ।
ତୋର ରୋଧିରେ ଦ୍ରୌପଦୀ କେଶକୁ ପଖାଳି
ତେବେ ସେ କେଶ ବନ୍ଧନ କରିବେ ପାଞ୍ଚାଳି । ୭୭ ।
ଭୀମସେନ ଠାକୁରଂକର ଯେସନେକ ଦୃଢବ୍ରତ
ତେଣୁ ସେ ମୃତ୍ୟୁ ନାହିଂ ଯେ ମୋହୋର ହାଥ । ୭୮ ।
ଗାନ୍ଧାରୀ ନନ୍ଦନ ଶୁଣି କୋପେଣ ପରଜ୍ୱଳି
ଚଉପଠି ଚଉଷଠି ଭାର ଗଦା ବେନି ବୁଲାଇଲା ତୋଳି । ୭୯ ।

---

୬୭।୨ ଅଶତ୍ଥମାଂକ ଭୁଲେ ସମର ହୋଇବ । ( ଖ, ଗ, ଚ, ଡ )

ଯେସନେକେ ଘୋର ଅନ୍ଧାର ହଣଇ ଉଲୁକାପାତ
ଅନେକ ଦୂରେ ପଡିଲେ ଗଜ ଅଶ୍ୱ ରଥ । ୮୦ ।
ମାଦ୍ରୀର ନନ୍ଦନ ବୁଲାଇ ନବନିଶି କୋନ୍ତ
ଧୃଶାସନର ଉପରେ ଯେ ପିଟିଲା ବଳବନ୍ତ । ୮୧ ।
ନକୁଳକଇଂ ଗଦା ପିଟିଲା ରଣଚଣ୍ଡା
ହଣିଣ ନକୁଳ ରଥ ହୋଇଲା ମସିଗୁଣ୍ଡା । ୮୨ ।
ବିରଥି ହୋଇଲା ସେ ଯେ ମଦ୍ରାର ବଳା
କୋନ୍ତ ଧର ଧାମଇଂ ସେ ଛତ୍ରୀ ଅଗ୍ରର୍ଗଳା । ୮୩ ।
ଧୃଶାସନ ରଥ ଉପରେ ନେଇ କୋନ୍ତ ପିଟି ।
ବେନିଖଣ୍ଡ ହୋଇ ତାର ତମ୍ବା ରଥ ଗଲା ଫାଟି । ୮୪ ।
ଧୃଶାସନ ବିରଥି ଦେଖି ଅଶସ୍ତ୍ରମାସ୍ୟେ ଗଲେ ଘୂଞ୍ଚି
ଦେଖିଣ ସହଦେବ ଯେ ନ ବୋଲଇ କଛି । ୮୫ ।
ନକୁଳ ସହଦେବ ସ୍ୟେକଯୋଗେ ଚଳି
ସମର କରନ୍ତେଣ ସ୍ମୁରେ କେହ୍ନ ତ ନ ମିଳି । ୮୬ ।
ବଡାଇ ଦ୍ରୁପଦ ସମର ମହାଘୋର
ବେଳ ମଧ୍ୟାନେ ଆସି ହଣଇ ଯେହ୍ନେ ନିଶାକାଳ । ୮୭ ।
ଦୁର୍ଦ୍ଧଷର ତୁଲେ ସମର କୃପ ଯେ ଆଚାର୍ଯ୍ୟେ
ବହୁତ ସମର ସେ ହୋଇଲା ବେନିଂକର ମଧ୍ୟେ । ୮୮ ।
ଦ୍ରୋଣ ଦ୍ରୁପଦ ବେନି ହୋଇଲା ସାଂଗ୍ରାମ
ଅଧର୍ମ ସାଂଗ୍ରମ କଲେ ଗ୍ରୁଡ ନିଜ ଧର୍ମ । ୮୯ ।
ଓହୋବଳରେ ପଡିଲେ ଅନେକ ହାଥୀ ରଥୀ
ଅନେକ ପାରଦଣ୍ଡ ରଜା ଅନେକ ପାଦାନ୍ତ । ୯୦ ।
ଭୀଷ୍ମ ଯେ ଅନ୍ଧାର ଶର କଲେ ବୃଷ୍ଟି
ହିବସ ହଣିଲା ଅନ୍ଧାରମୟେ ସୃଷ୍ଟି । ୯୧ ।
ଅପରାପର ଲୋକେ ହୋଇଲେ ଅନ୍ୟୋଅନ୍ୟ
ପର ଆପଣା ବୋଲି ନୁଆରିଲେ ଚହ୍ନି । ୯୨ ।
କେଣେ ଉଦ୍ଧତ କେଣେ ଆଦ୍ଧତ୍ୟ ହୋଇଲା ଅସ୍ତ୍ର
କେହ୍ନ ବାରଣ ନ ଗଲା ସମର ହୋଇଲା ଅପ୍ରମିତ । ୯୩ ।

କାହାର କଣ୍ଠ ଛେଦିଲେ ସେ କେତେ କେତେ ଯୋଧୀ
ବାରଣ ନ ଗଲା ସମର ନୋହିଲା ନିରୋଧ । ୯୪ ।
ଉଭୋବଳକୁ ଯେ ଅଣ୍ଟିଲା ନ ଯୁଦ୍ଧ
ରଥୀ ପଡିଲେକ ବଡଶ ପରଯୁଧ । ୯୫ ।
ଅଣି ସାଗର ଯେ ପଡିଲେ ଗଜ ସେନା
ଅଶ୍ୱ ଯୋଦ୍ଧାମାନ ନ ଗଲା ଗଣନା । ୯୬ ।
କେ ତାହା ଗଣିମ ପାଦାନ୍ତ କେତେ କେତେ
ରୁଧିର ବହିଲା ପଞ୍ଚାଳ ଉଚ୍ଛର୍ଗ ଭିନ୍ନ ପୂଣ ପର୍ଯ୍ୟନ୍ତେ । ୯୭ ।
କ୍ଷୁଧା ପିପାସା ହୋଇଲା ସମରେ ହୋଇଲା ଅର୍ଦ୍ଧ ରାତ୍ର
ଚନ୍ଦ୍ର ଦେବତାହିଂ ଅସ୍ତଗଲା ସମରେ ଅଶାନ୍ତ । ୯୮ ।
ଯୁଗତେ ମାଘ ମାସ ଘୋଟିଲାନ କୁହୁଡି
ଶୀତେ ଥର ଥର ଯୋଦ୍ଧାଏ ନୁଆରନ୍ତି ଅସ୍ତ୍ର ଧରି । ୯୯ ।
ସଇନର କଷ୍ଟ ସେ ଦେଖିଣ ମହାପଦ୍ମ
ଅର୍ଜୁନକୁ ବୋଇଲେ ହୋ ସମର ଆଜ ରହୁ । ୧୦୦ ।
ଶଙ୍ଖ ଧୁନି ଶବଦ ସେ କଲେ ସହୁଂ ବାଣୀ
ରହିଲା ସମର ଯେ ଅଢାଇ ପ୍ରହର ରଜନୀ । ୧୦୧ ।
ରଥୀମାନେ ସେ ଯେ ରଥରେ ନିଦ୍ରା ଯାନ୍ତି
ହାଥୀଙ୍କର ଉପରେ ଯୋଦ୍ଧାଏ ଲେଟନ୍ତି । ୧୦୨ ।
କେବଣ ଯୋଦ୍ଧାଏ ଶୁତିଲେ ମଡାନ୍ତ ଆବୋର
ଅଶ୍ୱଙ୍କର କାଠିଆଣି ରାଜତେ ଘୁମାନ୍ତି କୋଳ କରି । ୧୦୩ ।
ଯେସନ ସମୟେ ସଞ୍ଜୟକୁ ପୁଚ୍ଛଇ ରାଜା ଧୃତରାଷ୍ଟ୍ର
ଯେତେ ରଣ ହୋଇଲା କମ୍ପେ ନ ବାହୁଡିଲେ ଥାଠ । ୧୦୪ ।
ସଞ୍ଜୟେ ବୋଇଲେ ଶୁଣ ଅମ୍ବିକାର ସୁତ
ଉଭୟ ବଳକୁ ସମର ନ ଅଣ୍ଟିଲା ସଇନ ପଡିଲେ ବହୁତ । ୧୦୫
ସ୍ୱଷ୍ଟେ ସେ ମାଇଲେ ଘୋର ଅନ୍ଧାର ଶର
ହବସେ ଦିଶିଲା ଯେ ବଡାଇ ଅନ୍ଧକାର । ୧୦୬ ।

୧୦୨।୧ ରଥୀମାନେ ଯେ ରଣରେ ନିଦ୍ରାଯାନ୍ତି । (ଥ, ଓ, ନ)
୧୦୩।୨ ଅଶ୍ୱଙ୍କର ଜନ ଧରି ରାଜତେ ଘୁମାନ୍ତି କୋଳ କରି । (ଥ, ଓ, ଲ)

ଉଭୟ ବଳ ସଇନ୍ୟ ହୋଇଲେ ସର୍ବେ ବଣା
ବାରଣ ନ ଗଲା କେ ପର କେ ଆପଣା । ୧୦୭ ।
ବଢାଇ ଗୋଳ ଆଜ ହୋଇଲା ସମର
ଅନେକ ରଥ ଗଜ ପଡିଲେ କେନ୍ତେ ଯେ ଥାଠର । ୧୦୮ ।
ଭୀଷ୍ମେ ଯେ ଅଭିମାନ ପାଇଲେ ବହୁତ
ସମରେ ମାରି ନୁଆଁଇଲେ ଦଶ ସହସ୍ର ରଥ । ୧୦୯ ।
ମାରି ନୁଆଁରି ଭୀଷ୍ମ ସମର ନ ଗ୍ଲାଡଇ
ଦିନ ଅର୍ଦ୍ଧ ହୋଇଲା ରଣରଙ୍ଗ ନ ବଢଇ । ୧୧୦ ।
ସଞ୍ଜୟ ଅଗ୍ରତେ କହଇ ଧୃତରାଷ୍ଟ୍ର ନୃପତି
ସାଧୁ ସାଧୁ ରେ ଅର୍ଜୁନ ତୋହର ଜୀବନ୍ତି । ୧୧୧ ।
ସେହି ଦ୍ରୋଣ ଗୁରୁ ଠାରୁଂ ଶିଖିଲେ ସର୍ବେ ବିଦ୍ୟା
କେବଣ ଲକ୍ଷଣରେ ତୁ ହୋଇଲୁ ବିଦ୍ୟାରେ ଶ୍ରେଷ୍ଠ ସିଦ୍ଧା । ୧୧୨ ।
ସଞ୍ଜୟେ ବୋଇଲେ ଶୁଣ ହୋ ଶାନ୍ତନୁ ନାତି
ଦ୍ରୋଣଂକର ବିଦ୍ୟାରେ କାହିଂ ଅର୍ଜୁନ ଶ୍ରେଷ୍ଠ ଛନ୍ତି । ୧୧୩ ।
ସତ୍ୟ ଯୁଗରେ ଯେ ଶ୍ୱେତ ରାଜା ଯାଗ କଲା
ଆଚାର୍ଯ୍ୟପଣେ ଯତେ୍ୟଂ ବଶିଷ୍ଠଂକୁ ବରିଲା । ୧୧୪ ।
ସେ ବଶିଷ୍ଠଂକର ସମ୍ବର୍ତ୍ତିକ ଦ୍ରୋଣ ଦୁଇ ମେଘେ ସ୍ରୁବ ଯେ ପ୍ରୋକ୍ଷଣୀ
ଘୃତ ସମୋଦ୍ରୁଂ ମୂଷଳ ଧାରା ପ୍ରମାଣେ ଘୃତ ବରଷିଲେ ଆଣି । ୧୧୫ ।
ସେ ବାର୍ଷି ଚଉବଂଶ ବରଷ ବରଷିଲେ ମହାଯାଗେ
ବଇଶ୍ୟାନର ଦେବତା ଘୃତ ଖାଇଲା ଅତ୍ୟନ୍ତ ସରାଗେ । ୧୧୬ ।
ମନ୍ଦାଅଗ୍ନି ହୋଇଲେ ସେ ଲୁ ଦୁରୁଦୁ ବ୍ୟାଧି
ଇନ୍ଦ୍ରଂକୁ ମାଗିଲେ ସେ ନ ଦିଲେ ମଉଷଧି । ୧୧୭ ।
ବ୍ରହ୍ମା ଇନ୍ଦ୍ର ରୁଦ୍ର କୁବେର ଚନ୍ଦ୍ର ସୂର୍ଯ୍ୟଂକୁ ତୋଳାଇଲା
ସତ୍ୟ ତ୍ରେତା ଦ୍ୱାପର ଯୁଗହିଂ ହୋଇଲା । ୧୧୮ ।

---

୧୧୫।୧ ଆବର୍ତ୍ତିକ ସମ୍ବର୍ତ୍ତିକ ଦ୍ରୋଣ ପୁଷ୍କର ଗୃଶମେଘେ
ସ୍ରୁବ ଯେ ପ୍ରୋକ୍ଷଣୀ । (ଘ, ଛ, ଝ)

୧୧୬।୨ ବଇଶ୍ୟାନର ଦେବତା ଘୃତ ଖାଇଲା ଅତ୍ୟନ୍ତ ଲୋଭେ । (ଖ,ଙ,ଘ,ଝ,ଟ,ଢ)

୧୧୮।୧ ତୋଳାଇଲା—ପ୍ରାର୍ଥନା କଲା ।

ଯେତେକାଳ ପର୍ଯ୍ୟନ୍ତେ ଔଷଧି ମାଗିଲେ ନ ଦିଲେ ଅମୃକନ୍ଦ
ଅଗ୍ନି ·ଦେବତା ଶରୀରୁ ନ ଗଲା ଲୁଦ୍ଦୂବ୍ଦ । ୧୧୯ ।
ଧୃପ ବ୍ରାହ୍ମଣେକ ହୋଇ ଦରିଦ୍ର ଅବସ୍ଥା
ଅର୍ଜୁନକୁ ବୋଇଲା ମୁଂ ଭକ୍ଷକ ଅଶକତା । ୧୨୦ ।
ମୋ ତହୁଂ ଦରିଦ୍ର ନାହିଂ ଆଉ ଆନ ଜଣ
ମାତା ପିତା ବନ୍ଧୁ ସୋଦର ନାହିଂ କନ୍ତୁ ଆନ । ୧୨୧ ।
ଜନ୍ମହୁଂ ଦରିଦ୍ର ଆବର ଅପାର କାଳହୁଂ ରୋଗୀ
ଆହାର ମଇଥୁନ ନିଦ୍ରାହିଂ ସମସ୍ତ ପରିତ୍ୟାଗୀ । ୧୨୨ ।
ତୁ ଯେ କଇଛା ଜଗଜ୍ଜେଠୀ ଭରଥେ ଭରେଇ ମଲ୍ଲ
ତୋହୋର ପ୍ରସନ୍ନେ ବ୍ୟାଧି ହୋଇବ ମୋହୋର ଭଲ । ୧୨୩ ।
ତ୍ରିବଳ୍ଲ ସୁନ୍ଦର ତୁ କଇଛା ଜଗଜ୍ଜେଠୀ
ନଇଲୋକ୍ୟେ ସାର୍ଥକ ବାବୁ ତୋହୋର ନାମ ଗୋଟି । ୧୨୪ ।
ତୋହୋର ପ୍ରସନ୍ନେ ମୋର ସମସ୍ତ କଷ୍ଟ ସରୁ
ପରମ ଗତ ପାଇବ ମୁଂ ତୁ ମୋର ପ୍ରାଣଗୁରୁ । ୧୨୫ ।
ଅର୍ଜୁନ ବୋଇଲା ହେ ମାଗ ଦ୍ୱିଜବର
ଯେମନ୍ତେ ଆରୋଗ୍ୟ ହୋଇବ ତୋହୋର ଶରୀର । ୧୨୬ ।
ସତ୍ୟେ ମନାଇଣ ମାଗିଲେ ବଇଶ୍ୟାନର ବହ୍ନି
ଉପର ହାଥ କରି ଜଳ ଦିଲା ବଚନବୀର୍ଯ୍ୟର ନାତି । ୧୨୭ ।
ବାବୁ ଖାଣ୍ଡବ ବନେ ଅଛି ଆରୋଗ୍ୟ ମହଉଷଧି
ତାହା ଖାଇ ଭଲ ହୋଇବ ମୋର ଅପାର କାଳର ବ୍ୟାଧ । ୧୨୮ ।
ଅର୍ଜୁନ ବୋଇଲେ ତୁମ୍ଭେ ଶୁଣ ହେ ବ୍ରାହ୍ମଣ
ତୁ ମୋତେ ଆସି ତ କଲୁ ଦୁସହ କଷଣ । ୧୨୯ ।
ନିରଞ୍ଜନ ସଞ୍ଚିଲା ଖାଣ୍ଡବ ବନ କଳ୍ପତରୁ
ଉଣେଇଶ ଶତ ଯୋଜନ ତା ବାସେବ ରକ୍ଷାକରୁ । ୧୩୦ ।
ଅପାର ସାଂଗ୍ରାମ ଯେ କରିବେ ମୋହୋର ପିତା
ମୁହିଂ ନ ଜାଣି ସତ୍ୟ କଲି ତୁମ୍ଭେ ତ ବଇଶ୍ୟାନର ଦେବତା । ୧୩୧ ।

---

୧୨୩।୧ ତୁ ବାବୁ ଜଗମୋହନ ଭରଥେ ଭରେଇ ମଲ୍ଲ । (କ, ଛ)

କପଟ ରୂପେ ମୁଁ ଯେ ବୁଲଇ ଘୋର ବନେ
ବାସବେ ସମର ମୁଁ କରିବ କେମନ୍ତେ ଶସ୍ତ୍ର ବିହୁନେ । ୧୩୨ ।
ଅଗ୍ନି ଦେବତା ବୋଇଲେ ହୋ ଥାଅ ଯେ ବନର
ଆଜ ଗ୍ରହକ ମଧ୍ୟେ ଆଣିଦେବି ଦେବତାଂକର ଶସ୍ତ୍ର ସାର । ୧୩୩ ।
ଅର୍ଜୁନ ଚୁହାଇ ଚଳଲେ ବହନ୍ତି
ବ୍ରହ୍ମାଣ୍ଡ ଭେଦ ଯାଇଂ ମିଳଲେ ବଇକୁଣ୍ଠ ବାରଦ୍ୱାରି । ୧୩୪ ।
ବିଷ୍ଣୁଂକୁ ମାଗିଲେ ନନ୍ଦଘୋଷ ରଥ
ଶଙ୍ଖ ଶ୍ୱେତ ଗୋକ୍ଷୀର କାମପାଳ ଗୃର ଅଶ୍ୱାନ୍ତ । ୧୩୫ ।
ନନଭେଦ୍ୟ ନାଗଫୁଣ ଶସ୍ତ୍ର ଆଦି କରି
ନୀଳଚକ୍ର ସହିତେ ଯେ ଦିଲେ ଦେବ ହରି । ୧୩୬ ।
ପ୍ରବେଶ ହୋଇଲେ ଯାଇଂ ନିଶବଦ କପିଳାବାସ
ରୁଦ୍ରଂକୁ ମନାଇ ମାଗିଲେ ଶସ୍ତ୍ର ଯେ ଆରୋଗ୍ୟ ବିଶୁଆସେ । ୧୩୭ ।
ପାଶୁପତ ରୁଦ୍ର ଶର ପିନାକ ନାମେ ଧନୁ
ପ୍ରସନ୍ନେ ଅଗ୍ନିକି ସମର୍ପି ଦିଲେ ପଞ୍ଚମନୁ । ୧୩୮ ।
ପାର୍ବତୀଂକି ମାଗିଲେ ଅକ୍ଷୟ ତୋଣ ବେନି
କପିଳାସୁଂ ବାହାର ହୋଇଲେ ସ୍ୱେତକ ଶସ୍ତ୍ର ଘେନି । ୧୩୯ ।
ବ୍ରହ୍ମାଂକୁ ମାଗିଲେ ସେ ବ୍ରହ୍ମ ଯେ ଶକତି
ବ୍ରହ୍ମ ଶର ସହିତ ଦିଲେକ ବେଦପତି । ୧୪୦ ।
ବିଜୟେ ବଇଶ୍ୱାନର ନନ୍ଦଘୋଷ ରଥରେ
ସପତ ବ୍ରହ୍ମାଣ୍ଡ ବୁଲଇ ସେ କ୍ଷଣମାକେ ଅଷ୍ଟାୟୁ ପରଖରେ । ୧୪୧ ।
ଇନ୍ଦ୍ରକୁ ମାଗିଲେ ଇନ୍ଦ୍ର ଶର ବଜ୍ର ଯେ ଶକତି
ପଙ୍କତା ଶର ଦିଲେ ହେମବନ୍ତ ନୃପତି । ୧୪୨ ।
ନିର୍ଘାତକୁ ମାଗିଲେ ମେଘାଶର ବାଣ
ବଜ୍ରସୂଚ ଅଗ୍ନି ଶର ଦିଲେ ତତକ୍ଷଣ । ୧୪୩ ।

---

୧୩୩।୧ ଅଗ୍ନି ଦେବତା ବୋଇଲେ ହୋ ଥାଅ ଯେ ପର୍ବତର । (ଟ,ଛ,କ,ଙ)
୧୩୭।୨ ବଇକୁଣ୍ଠରୁ ସ୍ୱେତେକ ଘେନ ବାହାର ହରମୂର୍ତ୍ତି । (କ,ଘ,ଢ,ଝ,ଟ)
୧୪୩।୧ ଗୃର ମେଘକୁ ମାଗିଲେ ମେଘାଶର ବାଣ । ( ଡ, ଥ, ନ )

ଆଦିତ୍ୟଂକୁ ମାଗିଲେ ଯେ ଚନ୍ଦ୍ର ସୂର୍ଯ୍ୟାବର୍ତ୍ତ
ହେମଶର ବାଣ ଦେଲେ ଚନ୍ଦ୍ର ଦଇବତ । ୧୪୪ ।
କୁବେର ଠାରୁ ରତ୍ନାବଳୀ ଗଦା ମାଗି
ଯେକବାଣେ ସପତ ବ୍ରହ୍ମାଣ୍ଡ ବୁଲନ୍ତ ବେଗି ବେଗି । ୧୪୫ ।
ପବନା ଶର ମାଗିଲେ ପବନ ଦେବତାଂକୁ
କାଳ ଫାଶ ମାଗିଆଣିଲେ ଯମ ଦେବତାଂକୁ । । ୧୪୬ ।
ବରୁଣ ଦେବତାନ୍ତ ମାଗି ନେଲେ ଜଳଫାଶି
ଅନନ୍ତ ନାଗଠାରୁ ଆଣିଲେ ନାଗଫାଶି । ୧୪୭ ।
କଉଶିକ ଶର ଦେଲେ ଅଶ୍ୱିନୀ କୁମାରେ
ପୃଥୀଭେଦୀ ଶର ଦେଲେ ପୁରୁଷ ଅସ୍ତୁକାରେ । ୧୪୮ ।
ସଞ୍ଜୟେ କହିଲ ରାଜା ଶୁଣିମା ଧୃତରାଷ୍ଟ୍ର
ତ୍ରିଦଶ ଦେବତାଯେ ଜାଣନ୍ତ ଅଗ୍ନିଂକର କଷ୍ଟ । ୧୪୯ ।
ଦେବତାନ୍ତ ମାଗିଲେ ଆରୋଗ୍ୟ ନିମନ୍ତକୁ
ସାନନ୍ଦେଣ ଦେବତାଯେ ଶସ୍ତ୍ର ଦେଲେ ବଇଶ୍ୟାନର ଦେବତାଂକୁ ।୧୫୦
କଉତୁକେ ଦଉକର ମଧେ ମାଗି ଆଣିଲେ ଶରମାନ
ଗ୍ରୁମ୍ବରେ ପ୍ରବେଶ ଆସି ହୋଇଲେ ଫାଲଗୁନ୍ୟ । ୧୫୧ ।
ପରମ କଲ୍ୟାଣ ହେବ ଆରୋଗ୍ୟ ହୁଅସି ବୀର ପାଥ
ଯେ ଶସ୍ତ୍ରମାନ ତୋତେ ହୋଉ ଯେ ପରାପତ । ୧୫୨ ।
ଅର୍ଜୁନ ଆରୋହିଲ ନନ୍ଦଘୋଷ ରଥେ
ଖାଣ୍ଡବ ବନ ଦହନ କଲ ପାର୍ଥ ଅଗ୍ନିଂକ ନିମନ୍ତେ । ୧୫୩ ।
ତେଶେଇଶ ଶତ ଯୋଜନ ଖାଣ୍ଡବ ବନ ସ୍ଥଳୀ
ଅଶୀ ସହସ୍ର ଗୁରୁଶତ ବୃକ୍ଷ ଯେ ଉଗୁଳ । ୧୫୪ ।
କ୍ଷୁଦ୍ର କ୍ଷୁଦ୍ର ବୃକ୍ଷମାନ କେ କରୁଂ ଗଣିତା
ସମସ୍ତ ଦହନ କଲେ ଅଗ୍ନି ଯେ ଦେବତା । ୧୫୫ ।
ଅନେକ ସାଂଗ୍ରାମ କରିଲେ ମଘବାନେ
ସମର ନ ସହିଲ ତନ ରାହ ତନ ଦନେ । ୧୫୬ ।

୧୫୧ { ଅର୍ଜୁନକୁ ସମର୍ପିଲେ ଦେବଶସ୍ତ୍ରମାନ
{ ଅଗ୍ନିଂକ ପ୍ରଣମ୍ୟ କଲେ ଯେ ବୀର ଫାଲଗୁନ୍ୟ । ( ଓ, ଅ, ନ )
୧୫୨।୧ ପରମ କଲ୍ୟାଣ ହୋଉ ତୋତେ ଉଜ୍ଜ୍ୱଳ ହୁଅ ପାଥ । ( ଓ, ଅ, ଘ)

ଗନ୍ଧର୍ବ ଯକ୍ଷ କିନ୍ନର ସୁରଗଣଙ୍କ ସଙ୍ଗେ ଦେଖ
ଅର୍ଜୁନଙ୍କୁ ସମରେ ହାରିଲେ ସସୈନ୍ୟ । ୧୫୭ ।
ସୁଖେଣ ଅଗ୍ନି ଦେବତା ଆପ୍ୟାନ କଲେ ମଣ୍ଡଧେ
ନିକଳଂକ ହୋଇଲା ଯେ ଲୂଦୁବୁଦୁ ବ୍ୟାଧି । ୧୫୮ ।
ଶୋଷକ କାଳସର୍ପ ବମ୍ବରେ ଗୋପ୍ୟ ଥିଲ
ଦହନ କାଳରେ ସେ ଚଳାଇଣ ଗଲେ । ୧୫୯ ।
ଆକାଶେ ରହିଲ ତାକ୍ଷ୍ଣୀ ନାମେ ପକ୍ଷୀ
ଅଗ୍ନିରାଜ ବୃକ୍ଷମାତ୍ର ସେ ତୋହାରେ ରହିଅଛୁ । ୧୬୦ ।
ଭୁଞ୍ଜିଣ ସନ୍ତୋଷ ହୋଇଲେ ବଇଶ୍ୟାନର
ଅର୍ଜୁନଙ୍କଇଂ ବୋଇଲେ ମାଗସି ବେଗେ ବର । ୧୬୧ ।
ତୋହୋରେ ଶାନ୍ତ ହୋଇଲା ମୋହୋର ତିନ ଯୁଗର ବ୍ୟାଧି
ବାଞ୍ଛିତ ଦେବା ହୋଇବ ତୋହୋର ସର୍ବ କାର୍ଯ୍ୟ ସିଦ୍ଧି । ୧୬୨ ।
ଅର୍ଜୁନ ବୋଇଲେ ସ୍ୱାମୀ କିସ ମାଗିବିଇଂ ତୋତେ
ଜାଣିଣ ଅନୁଗ୍ରହ କରସି ଦେବ ମୋତେ । ୧୬୩।
ଅନେକ ସାନନ୍ଦ ଯେ ହୋଇଲେ ବହ୍ନିତ
ଯେତେ ଶସ୍ତ୍ର ଦିଲ ତୋତେ ହୋଇ ପରାପତ୍ତ । ୧୬୪ ।
ତଳ ହାଥ କରଣ ପାତିଲା ଫାଲଗୁନ
ଉପର ହାଥ କର ଦିଲେକ ବଇଶ୍ୟାନର ବହନ । ୧୬୫ ।
ଶସ୍ତ୍ରମନ୍ତ୍ର ଦେଇ ଅଗ୍ନି ଦେବତା ସନ୍ତୋଷେ ବୋଇଲେ
ବ୍ରହ୍ମା ବିଷ୍ଣୁ ରୁଦ୍ର ଇନ୍ଦ୍ର ହେଲେ ନ ଜିଣୁଂ ବୋଇଲେ । ୧୬୬ ।
ପୁତ୍ର ଯେ ଅନେକ କାଳର ବ୍ୟାଧି ଶାନ୍ତ ହୋଇଲା ତୋହୋରେ
କୋଟି ବ୍ରହ୍ମାଣ୍ଡ ଜିଣିମାକୁ ସାମର୍ଥ ହୋଅ ତୁ ସମରେ । ୧୬୭ ।

---

୧୬୦।୨ "ଅଗ୍ନିରାଜ ବୃକ୍ଷମାତ୍ର ସେ ତୋହାରେ ରହିଅଛୁ ।" ପରେ
( ଙ, ଥ, ନ ) ରେ ଅଧିକା ପାଠ:—
ଅଶ୍ୱତ୍ଥ ପଲାଶ ଯେ ତାମ୍ରଚୂଡ ତହିଁରେ
ଦେବଦାରୁ କଳ୍ପବଟ ଆବର ବ୍ରତଇ ।
ପାଲଧୁଆ ବୃକ୍ଷ ଯେ ଆବର ଶାହାଡା
ଅଷ୍ଟ ପଦାର୍ଥ ରହିଲେ ଅଗ୍ନିଦେବତା ନ କଲେ ପୀଡା ।

ସଞ୍ଜୟେ ବୋଇଲେ ହୋ ଶୁଣିମା ଧୃତରାଷ୍ଟ୍ର ନୃପତି
ତେଣୁ କରି ଅର୍ଜୁନ ହାଦେ ଜଣାଇ ସବୁନ୍ତି । ୧୬୮ ।
ତୁ ଯେ ବୋଇଲୁ ଯେତେ ଦ୍ରୋଣଂକର ବଦ୍ୟା
ଅଗ୍ନିଂକର ପ୍ରସାଦୁଂ ଅର୍ଜୁନ ଯେତେବଡ଼ ଯୋଦ୍ଧା । ୧୬୯ ।
ଅଷ୍ଟ ଦିବସ ଆସି ସମର ହୋଇଲା
ଖଣ୍ଡୁଂକର ପ୍ରତଗ୍ୟାଂ ତ ନଷ୍ଟଲେଣ ଗଲା । ୧୭୦ ।
ଆଉର ସାଂଗ୍ରାମ ତ ଅଛଇ ବେନି ଯେ ଦିବସ
ଯେତେକେ ଧୃତରାଷ୍ଟ୍ର ତୋତେ ହୋଇବ କ ଯଶ । ୧୭୧ ।
ସଂଜୟ କହନ୍ତେ ଯେ ପ୍ରସର ହୋଇଲାକ ରାତି
ଦଣ୍ଡ ସାଜ ବୋଲି ଆଗ୍ୟାଂ ଦିଲେକ କୁରୁପତି । ୧୭୨ ।
ରାଜାର ଆଗ୍ୟାଂଯେ ଯେ ସାଜଲେ ସମଦଣ୍ଡ
ଘୋର ନାଦ ଶବଦେ କମ୍ପଇ ଭୂଅଖଣ୍ଡ । ୧୭୩ ।
ସାଜନ୍ତି ଯୋଦ୍ଧାଯେ ରଥ ଗଜ ଯେ ତୁରଙ୍ଗ
ମଣ୍ଡନ୍ତି କଣଯୁମଯୁ ରଥ ଅଶ୍ୱନ୍ତ ଯୋଚନ୍ତି ବେଗ ବେଗ । ୧୭୪ ।
ଦିନକର ନାଥ ଯେ ଉଦଯେ ଈଶାନେ
ଅରୁଣ ସାରଥି ଯେନ ବିକାଶଇ ଲୋହିତ ବର୍ଣ୍ଣେ । ୧୭୫ ।
ସଂଗ୍ରାଂର ବଳ୍କଭ ଯେ ସଯୂଳ ଜନ ଚନ୍ତା
ଅର୍କ ଦଇତ ନଶୋଧନ ନାଥ ବହନ୍ତା ବିଧାତା । ୧୭୬ ।
ମେଘନାଦ ମହାନାଦ କାଳମେଘ ଗର୍ଜନା
ଭୂରିଶ୍ରବା ବୃଦ୍ଧଶ୍ରବା ଉଚ୍ଚୈଶ୍ରବା ଯେ ସପ୍ତ ଅଶ୍ୱସହ୍ନା । ୧୭୭ ।
ଯେ ସପ୍ତଅଶ୍ୱେ ତୋହୋର ରଥ ଯେକ ଚକେ
କୋଟିଯେ ବ୍ରହ୍ମାଣ୍ଡ ଭ୍ରମଣି ଯେକା ଦିବସକେ । । ୧୭୮ ।
ଶନ୍ୟ ସଭଭ ନାଥ ସୁରୁଭ କଣଯୁ ହସ୍ତା
ଦିଗମ୍ବର ପୁ ରୁଷ ହୋଇ ସଯୂଳ ଜନ ଚନ୍ତା । ୧୭୯ ।
ମାଗଇ ଅଭ୍ୟର୍ଥୀ ମୁଂ ବିନଯୁ ମୋର ନିତ୍ୟେ
ଭଗତମହ୍ଳ ସ୍ୱାମୀ ପ୍ରାର୍ଥନା କରଇ ତୋତେ । ୧୮୦ ।

---

୧୭୮।୨ କୋଟିଯେ ବ୍ରହ୍ମାଣ୍ଡ ଘୋଟନ୍ତି ଯେକା ଦିବସେ । ( ଛ, ଟ )

ପ୍ରଭାତେ ଉଦୟେ ନାଥ ଉଦେଗିରି ପର୍ବତେ
ମେରୁ ପ୍ରଦକ୍ଷିଣ ପଶ୍ଚିମେ ଦେବ ଅସ୍ତେ । ୧୮୧ ।
ପରମାନନ୍ଦ ପୁରୁଷ ଜଗତ ଜନ ଗୁରୁ
ଆଦ୍ୟ ଅନ୍ତ ମଧ୍ୟ ଦେବ ତୁହି ସେ ଚିନ୍ତାକରୁ । ୧୮୨ ।
ଜୟେ ଜୟେ ଦେବ ଅଭୟେ ବର ଦାତା
ସୁରସିଦ୍ଧ ମୁନିଗଣେ ଯାହାକୁ ଭଗତା । ୧୮୩ ।
ସ୍ୱେଦଜ ଅଣ୍ଡଜ ଜରାୟୁଜ ଉଦ୍ଭିଜ ଗୃହଖାନି
ତୃନ୍ୟେଣ ଜାତ କରି ସମସ୍ତ ଜୀବବାଣୀ । ୧୮୪ ।
ସ୍ୱାମୀ ଭଜିଲି ଅହନିଶି ମୁଁ ତୁମ୍ଭର ପଦ୍ମପାଦେ
ମୁକତି ଇଚ୍ଛିଲି ନାଥ ତୋହୋର ପରସାଦେ । ୧୮୫ ।
ଶ୍ରୀ ଭାସ୍କର ଦେବତାଂକର ଚରଣେ ଦଇନି
ପରମ ଗତି ଇଚ୍ଛିଲି ଶ୍ରୀ ସାରଳା ଦାସ ମୁନି । ୧୮୬—୩୪୮୬ ।



## ଭୀଷ୍ମଙ୍କର ନବମ ଦିନ ଯୁଦ୍ଧ ଓ ଦୁର୍ଯ୍ୟୋଧନ ନିକଟରୁ ଅର୍ଜୁନ ଦ୍ୱାରା ଅନର୍ଘ ମଣି ମୁକୁଟ ଆନୟନ

ବିଳଙ୍କା ଦେଶର ରାଜା ବଇବସ୍ୱତ ମନୁ
ଅଗସ୍ତିଂକ ପଦ୍ମପାଦେ ବିନୟେ ଦଇନୁ । ୧ ।
ଅନୁଚିଦ ନାଥ ସ୍ୱାମୀ ପ୍ରତକ୍ଷ ବ୍ରହ୍ମବେତ୍ତା
ପ୍ରଳୟ ବଞ୍ଚାଇତେ ଯେବଣ ମହର୍ଷି ଶକତା । ୨ ।
ବାଳୁତ କାଳେ ସ୍ୱାମୀ ଖେଳର କୁତୂହଳେ
ବାରାନିଧି ଗଣ୍ଡୁଷ କଲୁ ତୋହୋର ଯୋଗମନ୍ତ୍ର ବଳେ । ୩ ।
ଅସଂକ୍ଷେପ ମହାଭାରଥ ଯେ ଅଦୃଷ୍ଟି ଅଶ୍ରୁତି
ଯେ ସଂସାର ଜନନ୍ତ ଦିଲୁ ମୁକତି ହାଦେ ଗତି । ।୪ ।
ଦିଶ ସମର ହୋଇଲା ଭୀଷ୍ମଂକର ନବଦିନେ
ସେହା ସଞ୍ଚପି ମୋତେ କହିବା ମହାମୁନେ । ୫ ।
ବଦସ୍ୱନ୍ତ ମହାତମା ମହା ବ୍ରହ୍ମବେତ୍ତା
ସାର୍ଥକ ଜୀବନ ରାଜା ବଇବସ୍ୱତ ମନୁ ଶ୍ରୋତା । ୬ ।

ଅଷ୍ଟମ ଦିବସ ଅନ୍ତରେଣ ପାଣ୍ଡବ ସଇନ
ଭୀଷ୍ମଙ୍କୁ ଜିଣିମାକୁ ଶୁଭଇ ଥାଟରେ ଶଙ୍ଖଧ୍ୱନି । ୭ ।
ସାଜନ୍ତି ନନ୍ଦିଘୋଷ ରଥ ତ୍ରଇଲୋକ୍ୟର ନାହା
ଧାତୁବାଦ ପୁରୁଷ ସେ ତ୍ରଇଲୋକ୍ୟେ ଚଳୁଛନ୍ତି ଯାହା । ୮ ।
ସେ ସ୍ୱାମୀ ରଥେ ବିଜେ ସାରଥି ପଣେ ଶଙ୍ଖଚକ୍ରଧାରୀ
ଆକାଶେ ଖେପନ୍ତି ଶଙ୍ଖ ଗୋଷ୍ଠୀର ହସ୍ତେ ଗୃହି । ୯ ।
ଦିବ୍ୟ ଅବତାରେ ବିଜେ ବିଚିତ୍ରବୀର୍ଯ୍ୟର ନାତି
ଚଳନ୍ତି ପାଣ୍ଡବବଳ ପଶ୍ଚିମ ମୂରତି । ୧୦ ।
ବାଜଇ ବିଜୟଘୋଷ ଖର ଯେ ଦାଉଣ୍ଡି
ଅନେକ ରତ୍ନ ସେ ଯୋଦ୍ଧାଙ୍କେ ରଥେ ଛନ୍ତି ମଣ୍ଡି । ୧୧ ।
ପୂର୍ବେଣ ପାଣ୍ଡବ ବଳ ପଶ୍ଚିମେ କଉରବେ
ଆଟିଆଣି ଥାଟରେ ବିଜୟେ ଗାଙ୍ଗବେ । ୧୨ ।
ଚଉରାଶିସହସ୍ର ବଳ ଶ୍ରୀଭୀଷ୍ମଙ୍କେ ଅଜଙ୍ଗ ନାମେ ଧନୁ
ସମରେ ସହସ୍ରାର୍ଜୁନର ପ୍ରାପ୍ତେ ଦିଶନ୍ତି ଶାପ୍ତେନ୍ତନୁର ତନୁ । ୧୩ ।
ଖାଣ୍ଡବ ବନ ଦହନେ ଯେସନ୍ତେ ଅଗ୍ନିଦେବତା ତେଜ ଦିଶି
ସେହି ସାରଥେ ଅର୍ଜୁନର ତେଜ ଯେ ପ୍ରକାଶି । ୧୪ ।
ପ୍ରତଗ୍ୟାଂ ସାମରଥ ସେ ଗୁଡିଲେ ଉପ୍ରୋଧ
ଛତ୍ରୀବୃତ୍ତି ରଖିବାରେ ଆରମ୍ଭିଲେ ଯୁଦ୍ଧ । ୧୫ ।
ଓହୋବଳ ସାଂଗ୍ରାମେ ଯେ ଅର୍ଜୁନକଙ୍କ ଦେଖି
ବିନ୍ଧିଲେ ନାରାଚ ଭୀଷ୍ମେ ଉପ୍ରୋଧ ଉପେଖି । ୧୬ ।
ଲୋହାର ପଞ୍ଚୁଶର ଶଙ୍ଖଚଳ ପକ୍ଷୀ ହାଡେ ତୀକ୍ଷମୁନା
ଆକ୍ରୋଷି ବିନ୍ଧିଲେ ଭୀଷ୍ମେ ଅର୍ଜୁନର ଭେଦିଲାକ ସେହ୍ନା । ୧୭ ।
ବାସବର ନନ୍ଦନ ଯେ କଇଞ୍ଚ ଜଗଜେଠୀ
ବିସ୍ତାର ପଞ୍ଚ ନାରାଚ ଯେ ସେହୁ କଲା ବୃଷ୍ଟି । ୧୮ ।
ଶହସ୍ରକୁ ଶହସ୍ର ଯେ ହୋଇ ଚଉତାଳ
ମହାଅଗ୍ନି ଝଲକଲା ଜାଣି ବଡବା ଅନଳ । ୧୯ ।

---

୧୯।୨ ମହାନଳ ଝଲକଲା ଜାଣି ବନାନଳ । (ଛ, ନ)

ପୁଣିହିଂ ଭୀଷ୍ମ ଯେ ବିନ୍ଧିଲେ ଦଶବାଣ
ଯେସନେ ବଳାହକେ ଝେପନ୍ତି ଗଗନ । ୨୦ ।
ବାସବର ନନ୍ଦନ ବିନ୍ଧିଲା ଦଶ ଶର
ଭୀଷ୍ମଙ୍କର ନାରାଚ ସମସ୍ତ ହୋଇଲାକ ଚୂର । ୨୧ ।
ଗଙ୍ଗାର ନନ୍ଦନ ଯେ ସହସ୍ରେ ଶର ପେଷି
ଆକାଶ ଘୋଟିଲା ଯେହ୍ନେ ନାରାଚ ବରଷି । ୨୨ ।
ଅର୍ଦ୍ଧଚନ୍ଦ୍ରେ ନାରାଚ ଯେ ବିନ୍ଧିଲେ ପୁଣ ପୁଣି
ହାଥର ବ୍ୟଗ୍ରେ ଯେ ଅର୍ଜୁନ ତାହା ହାଣି । ୨୩ ।
ବେନି ଯୋଦ୍ଧାୟେ ନୋହନ୍ତି କେ କାହାରେ ଊଣ
ଓହୋବଳ ସାଂଗ୍ରାମେ ଦୁହେଂ ଅଟନ୍ତି ସମକଣ । ୨୪ ।
ଦ୍ରୋଣେ ଦ୍ରୁପଦେ ଯେ ବଢିଲା ସମର
ଧୃଶାସନ ଦୁର୍ଦ୍ଧର ସମର ମହାଘୋର । ୨୫ ।
ସହଦେବ ଶକୁନି ଯେ ସାଂଗ୍ରାମେ ଓହୋଭେଟ
ଜାଣନ୍ତି ଗତ ଆଗତ ଯେ ସମରେ ଗରିଷ୍ଠ । ୨୬ ।
ଲକ୍ଷ୍ମଣ କୁମାର ଭିଡିଲେ ଯେ ସମରେ ଅଭିମନ୍ୟୁ
ଆହୋ ବଢିଲା ରଣରଙ୍ଗ ବାଳୁତ ବେନି ତନୁ । ୨୭ ।
ନକୁଳର ଭିଡିଲେ ସମର କରଇ ଦୁର୍ଜୟେ
ଅସଂକ୍ଷେପ ସମର ଯେ ଅଭେଦ ବେନି କାୟେ । ୨୮ ।
କର୍ଣ୍ଣସୁ ରଥ ଆରୋହି ଧୃଷ୍ଟ ଯେ ଦ୍ୟୁମନ
ଅଶ୍ୱତ୍ଥମାର ଭିଡିଲେ କରଇ ସାଂଗ୍ରାମ । ୨୯ ।
ସୋମଦତ୍ତର ଭିଡିଲେ ସମର ଶ୍ରୀଖଣ୍ଡୀ
ବାଳ ଆଦିତ୍ୟ ପ୍ରାୟେ ଦୁହିଂକର ରଥ ମଣ୍ଡି । ୩୦ ।
ଆଦ୍ରାବଳୀ ସାରିକ୍ଷେ ଧନୁ ଦୁହିଂକର ହାଥେ
ପୃଥୀ ଅନ୍ଧାରମୟେ ହୋଇଲା ଦୁହିଂଙ୍କର ଶହସ୍ର ଘାତେ । ୩୧ ।

---

୨୬।୨ ଜାଣନ୍ତି ଗତ ଆଗତ ଯେ ସମର ପସ୍ତେଠ । ( ଙ, ଡ଼ )
୩୧।୨ ଜଗ ଅନ୍ଧାର ହୋଇଲେ ଦୁହିଂକର ଶର ଯେ ବରଷନ୍ତେ । ( ଙ,ଚ,ଟ,ଥକ),

ପଞ୍ଚଷଠି ନାରାଚ ଯେନଣ ସୋମଦତ୍ତେ
ବାନ୍ଧନ୍ତେ ଘୋଟିଲା ଯାଇଂ ଶ୍ରୀଖଣ୍ଡୀର ରଥେ । ୩୨ ।
ଶତେକ ନାରାଚନ୍ତ ଯେନ ଦ୍ରୁପଦର ବଳା
ସୋମଦତ୍ତର ଶସ୍ତ୍ରମାନ ଛେଦ ପକାଇଲା । ୩୩ ।
ଜାଲାବଳୀ ନାରାଚ ଯେନଣ ସେ ବୀରସେନର ସୁତ
ଶ୍ରୀଖଣ୍ଡୀକ ବାନ୍ଧଲା ଯେନ ନାରାଚ ଅଦ୍ଭୁତ । ୩୪ ।
ପ୍ରତିକକ୍ଷ ନାରାଚ ଯେନଣ ପୁଣ ପେଷି
ସୋମଦତ୍ତ ଉପରେ ନାରାଚ ଖରେଣ ବରଷି । ୩୫ ।
ବଜ୍ରମୂନା ଶର ଯେ ବାନ୍ଧଲା ସୋମଦତ୍ତ
ସେହା ଫୁଟି ଭେଦଲା ସେ ଶ୍ରୀଖଣ୍ଡୀର ଗାତ୍ର । ୩୬ ।

ଯେସନେକେ ଉତ୍ତଙ୍ଗେ ପଶନ୍ତ ବାମ୍ବରେ
ଅଭେଦ ଭେଦଲା ଯେ ଶ୍ରୀଖଣ୍ଡୀ ଶରୀରେ । ୩୭ ।

ପୀଡନ୍ତ ନାରାଚେ ଦ୍ରୋପଦ କୁମାର ରୋମାବଳୀ
ଶରୀର ଫୁଟିଣ ଯେ ଶୋଣିତ ନକଳ । ୩୮ ।

ଢାଫ୍ୟୁଣ ଅସାଷ୍ଟମ ପଡଲା ସେ ପଦ୍ମାବତୀର ବସ୍ତ୍ର
ହାକନ୍ତ ସୋମଦତ୍ତେ ତୋତେ କେ ଆଜ କରୁ ରକ୍ଷି । ୩୯ ।

ଯଦ୍ୟପି ପ୍ରାଙ୍ଗମେ ରେ ହୋଇବୁ ମତ୍ତହାଥୀ
କେଶରୀ ଗ୍ରମୁରେ କ ଥାଇ ତାହାର ଜୀବନ୍ତ । ୪୦ ।

ଅନେକ ପ୍ରତର୍ଗ୍ୟାଂ ଯେ କଲେକ ସୋମଦତ୍ତ
ମୋହ ତେଜ ପାଞ୍ଚାଳେଶ୍ୱର ହୋଇଲା ସଚେତ । ୪୧ ।

ସମରେ ଜାଣି ସୋମଦତ୍ତ ମନେ କରେ ହେଳ
ଗର୍ଜିଣ ଶ୍ରୀଖଣ୍ଡୀ ଯେ ଉଠିଲା ମହାବଳ । ୪୨ ।

ଗନ୍ଧର୍ବା ଶସ୍ତ୍ର ଯେ ଦେଲାକ ତୁଳାକର୍ଣ୍ଣୀ
ରାଗେଣ ଶ୍ରୀଖଣ୍ଡୀ ତାହା କଲାକ ଆଧାନ । ୪୩ ।

---

୩୮।୧ ଦୀଢନ୍ତ ନାରାଚେ ଦ୍ରୋପଦ କୁମାର ରୋମାବଳୀ । (କ,ଙ,ଛ,ଙ,ଝ,ନ)
୪୦।୨ ଜୀବନ୍ତ—ଜୀବନ ଅର୍ଥରେ ।

ପ୍ରାଣତେଜ ବହନ ପ୍ରାୟେ ତେଜ ତା ବକାଶି
ଯେବଣ ଶହସ୍ର ଛେଜେ ପ୍ରଭ୍ରାନ୍ତ ହୋଏ ନଶି । ୪୪ ।
ଆକାଶ କମ୍ପଇ ଯେବଣ ଶହସ୍ର ହାନ୍ତେ
ବୃନ୍ଦାଅର୍କ ଲୋକେ କମ୍ପନ୍ତ ଗଗନଗତେ । ୪୫ ।
ଆକାଶେ ଅଦୃଶ୍ୟ ହୋଇଲେ କରତାର
ଧନୁରୁ ଗନ୍ଧର୍ବା ଶହସ୍ର ହୋଇଲା ବାହାର । ୪୬ ।
ଶହସ୍ରକଇଂ ଆଗ୍ୟାଂ ଦେଲେକ ବୀର ଯେ ଶ୍ରୀଖଣ୍ଡୀ
ସୋମଦତ୍ତ ରାଜାର ଶିର ପକାଅ ବେଗେ ଖଣ୍ଡି । ୪୭ ।
ଆଗ୍ୟାଂ ପ୍ରମାଣେ ସେ ନାରାଜ ବେଗେ ଘୋଟି
ଦେଖି ଲକ୍ଷେକ ନାରାଜ ସୋମଦତ୍ତ କଲା ଛନ୍ନଂ ବୃଷ୍ଟି । ୪୮ ।
ଓହୋବଳ ଥାଠକୁ ବକାଶିଲା ଦେବ ଶହସ୍ର ତେଜ
ସୋମଦତ୍ତ ଶହସ୍ରମାନ ହୋଇଲା ଦହ୍‌ନ । ୪୯ ।
ସୋମଦତ୍ତ ଅଗ୍ରତେ ଗନ୍ଧର୍ବା ଶହସ୍ର ଘୋଟି
ରଥ ହୟ ସାରଥି ଦହ୍‌ନ ହୋଇଲା ଦେବଶର ବୃଷ୍ଟି । ୫୦ ।
ମହାଭୟ ପାଇଲା ଯେ ସୋମଦତ୍ତ ଦେଖି
କଦଳୀ ପତ୍ର ପ୍ରାୟେ ଶରୀର କମ୍ପିଲା ବୁଜିଣ ବେନ ଆଖି । ୫୧ ।
ଗନ୍ଧର୍ବା ଶହସ୍ର ଯାଇଂ ପଡିଲା ହୃଦରତେ
ପିଠି କଣ୍ଟକ ନକଳଲା ସେ ପଡିଲା ଅନ୍ତରେ । ୫୨ ।
ଜମ୍ବୁଦନ୍ତ୍ୟ ନାଶ ଗଲା ଯେବଣ ଗନ୍ଧର୍ବା ଶରେ
ମାନବ ମାନଙ୍କ କାହିଂ ବର୍ତ୍ତିବେ ନିର୍ଭରେ । ୫୩ ।
ଶ୍ରୀଖଣ୍ଡୀର ବଧାତେ ସୋମଦତ୍ତ ନାଶଗଲା
ପାଞ୍ଚସହସ୍ର ରଥୀ ଆସି ଶ୍ରୀଖଣ୍ଡୀକ ବେଢିଲା । ୫୪ ।
ଅବକ୍ରନ୍ତେ ନାରାଜ ସବୁଂକର ହାଥେ
ଧର୍ମ ଉପେକ୍ଷା କର ବାନ୍ଧଲେ ଏକ ରଥେ । ୫୫ ।
ନକ୍ଷତ୍ରଂକ ମଧ୍ୟେ ଯେହ୍ନେ ଦଶଇ ନିଶାପତି
ତେସନ ସାରକ୍ଷେ ଦଶେ ଶ୍ରୀଖଣ୍ଡୀର ଜ୍ୟୋତି । ୫୬ ।

---

୫୦।୨ ରଥ ହୟ ସାରଥି ଦହ୍‌ନ ହୋଇଲା ଅଗ୍ନି ବୃଷ୍ଟି । ( ଛ, ଝ )
୫୫।୨ ଧର୍ମ ଉପେକ୍ଷା କର ବାନ୍ଧଲେ କୋପଚଢେ । ( ଙ, ଛ )
୫୬।୨ { ଯେକାଯେ ଶ୍ରୀଖଣ୍ଡୀ ତହିଂ ଦଶଇ ସେହିମତ । ( ଝ, ଟ )
{ ଯେତେ ସଇନ ମଧ୍ୟରେ ଶ୍ରୀଖଣ୍ଡୀ ତେସନେକ ଜ୍ୟୋତ । ( ଓ, ଠ )

ନାଗପୂଣ ଶୋଭା ଯେସନେ ସମୁଦ୍ର ମନ୍ଥନେ
ସେହ୍ନି ସାଦୃଶେ ଦିଶଇ ପଦ୍ମାବଷ୍ଟର ନାଗେନ । ୫୭
ଶୁଖିଲ କାଠ ଯେହ୍ନେ ପ୍ରଜ୍ୱଳିତ ହୋନ୍ତି
ଥାଟେ ବିକାଶିଲ ଯେକା ଶ୍ରୀଖଣ୍ଡୀର ଜ୍ୟୋତି କାନ୍ତି । ୫୮ ।
ଶ୍ରୀଭୁଜେ ଶୋଭା ଯାହାର ଧନୁ ଅଜଙ୍ଗ ସାଚକ୍ଷେ
ଯୋଦ୍ଧା ହୋଇ କେ ରହିବ ସମର ପରିକକ୍ଷେ । ୫୯ ।
ଯଦ୍ୟପି ବେଢିଲେ ଯେ ପଞ୍ଚାଶସହସ୍ର ରଥେ
ଶ୍ରୀଖଣ୍ଡୀକି ଦିଶିଲେ ସେ ଅଜାଯୂଥ ପ୍ରାୟେ । ୬୦ ।
ବିଚିତ୍ର ନାରାଜ ଯେ ଘେନିଣ ପଞ୍ଚାଳ
କଡ଼ରିବ ଥାଟକୁ ସେ ଧୂମକେତୁ ଷପ୍ରେ କାଳ । ୬୧ ।
ଯେକ ଶର ବିନ୍ଧନ୍ତେଣ ପଞ୍ଚଶର ପୃଷ୍ଠି
ଅହ୍ନବ୍ରତେକ ନାରାଜ ଯେକାଧାନ୍ତକେ କରଇ ବୃଷ୍ଟି । ୬୨ ।
ଓହ୍ନୋବଳ ଥାଟେ ସମସ୍ତେ କହନ୍ତି ଯେ ଶ୍ରୀଖଣ୍ଡୀର ମହିଂମା
ସାଧୁ ବିଦ୍ୟାଗୁରୁ ସେ ଛୁଲାକର୍ଣ୍ଣ ମହାତମା
ମେରୁ ତତ୍ତୁଲ୍ୟରେ ଯାହାର ଗାରିମା । ୬୩ ।
ଅନେକ ପ୍ରସନ୍ନ ହୋଇ ଶ୍ରୀଖଣ୍ଡୀକି ଦେଲେ ବର
ଶହସ୍ର ମନ୍ତ୍ର କହିଲ ସେ ଶ୍ରୀଖଣ୍ଡୀକି ଅପାର । ୬୪ ।
ଛୁଲାକର୍ଣ୍ଣ ପ୍ରସାଦେଣ ଶ୍ରୀଖଣ୍ଡୀ ମହାଯୋଧୀ
ସାଂଗ୍ରାମେ ଯୋଦ୍ଧାପ୍ରେ କେହି ନୁଆରନ୍ତି ସାଧି । ୬୫ ।
ନାରାଜ ବିନ୍ଧନ୍ତେଣ ନ ଯାଇ ଯାର ଶୂନ୍ୟ
ସାଂଗ୍ରାମ ବିମୁଖେ ପଡିଲେ ଅନେକ ରଥୀ ହାଥୀ ସୈନେ । ୬୬ ।
ଅନେକ ନାରାଜ ଯେ ବିନ୍ଧନ୍ତି ଛନ୍ଦୀମାନେ
ଅଭେଦ କପଟେ ଯେହ୍ନେ ନ ଭେଦନ୍ତି ଝାଷମୁନେ । ୬୭ ।

---

୫୮ { ଶୁଖିଲ କାଠ ଯେହ୍ନେ ଦହଇ ବହ୍ନି
ଥାଟରେ ବିକାଶିଲ ଶ୍ରୀଖଣ୍ଡୀ ତେସନେକେ ଜାଣି । ( କ, ନ )

୬୭।୧ ଅନେକ ଶହସ୍ର ମନ୍ତ୍ର ଜାଣନ୍ତି ଛନ୍ଦୀମାନେ । ( ଙ, ଥ, ନ )

୫୯।୨ ପରିକକ୍ଷ—ସମକକ୍ଷ, ପ୍ରତିକକ୍ଷ ।

ଶହସ୍ର ଅମୃତ ଜାଣଇଂ ସେ କୁଳାକର୍ଣ୍ଣର ଋଦ୍ୟା
ତେଣୁ କରି ଶ୍ରୀଖଣ୍ଡୀ ଯେ ସମରେ ମହାଯୋଦ୍ଧା । ୬୮
ଅନିବାରଣ ଶହସ୍ର ଜାଣଇ ସେ ଦ୍ରୋପଦର ବଳା
ଅପାଲଟଙ୍କ ଶହସ୍ର ତାର ସମରେ ରୁଦ୍ରକଳା । ୬୯ ।
ଯେସନେକେ ଚୂତଫଳ ଝଡ଼ଇ ବାତଘାତେ
ପଡ଼ଲେ ଅନେକ ରଥୀ ଶ୍ରୀଖଣ୍ଡୀ ଋଘାତେ । ୭୦ ।
ଶ୍ରୋଣିତ ନଦୀ ବହିଲ ଶ୍ରୀଖଣ୍ଡୀର ଯୁଦ୍ଧେ
ପଞ୍ଚାଶସହସ୍ର ରଥୀ ପଡ଼ଲେ ଯାତ ଘଡ଼ର ମଧ୍ୟେ । ୭୧ ।
ରଣ ଭଗ୍ନ ହୋଇ କଉରବେ ବଳ ଭାଙ୍ଗି
ଯେଉଁକାଯେ ଯେ ଶ୍ରୀଖଣ୍ଡୀ ଧାମଇଂ ଗଳଗାଜି । ୭୨ ।
ରଣରଙ୍ଗେ ଋଜୟେ କ କାଳ ଯମ ଦେବତା
ଛନ୍ଦୀ ହୋଇ ଛାମୁରେ କେ ନାହିଂନା ରହନ୍ତା । ୭୩ ।
ଭୀଷ୍ମଙ୍କର ଅଗ୍ରତେ ଯାଇଂ କହିଲେ ଗୃରଗଣେ
କଉରବେ ବଳ ନଶୋଧନ ହୋଇଲେ ତୋହୋର ଶରଣେ । ୭୪ ।
ଶୁଣିଣ କୋପାନଳ ସେ ଭରଥ କୁଳ ମହାମଲ୍ଲ
ସଞ୍ଚୟେ ହୋଇଲ ମୋତେ କୃତବର୍ମାଂକର ବୋଲ । ୭୫ ।
କୋପେଣ ଗାଙ୍ଗେବ ଯେ ଗୁଡ଼ଲେ ଧର୍ମବାଟ
ଆଜ ନଚଯେ ଦହିବ ପାଣ୍ଡବ ବଳ ଥାଠ । ୭୬ ।
ମାଳବାଣ ଭୁଜବାଣ ସେ ଗଙ୍ଗା ଦେବୀର ବାଲ
ସେ ଦୁଇ ଶର ଯେ ଭୀଷ୍ମ ତ୍ରୋଣରୁ କାଢିଲ । ୭୭ ।
ମହାବୃଷ୍ଟି କାଳେ ଯେହ୍ନେ ଗର୍ଜଇ ଦେବ ଇନ୍ଦ୍ର
ନର୍ଘାତ ଶବଦ ପ୍ରାୟେ ଶୁଭିଲ ଭୀଷ୍ମଙ୍କର ଗୁଣନାଦ । ୭୮ ।
କାଳ ଅନ୍ତକାଳେ ଯେସହ୍ନେ ଋକାଶଇ ବହନ୍ତ
ତେସନେକ ଶିଖା ଯେ ଦୁଇ ଶହସ୍ରଂକର ଜ୍ୟୋତ । ୭୯ ।
ମାଳବାଣ ଯେ ସେ ପ୍ରତକ୍ଷେ ଦେବ ହରି
ଭୁଜବାଣ ସେହୁ ସେ ପ୍ରତକ୍ଷେ ରୁଦ୍ର ଅବତରି । ୮୦ ।

---

୬୯।୨ ଅପାଲଟକ ଶର ସେ ଯେ ସମରେ ଆଧ୍ୟାନ କଲ । (ଙ, ଘ, ଛ )
୭୯।୧ କାଳ ଅନ୍ତକାଳେ ଯେହ୍ନେ ଋଜଇ ଋବର ଜ୍ୟୋଢ । ( ଙ, ଝ )
୭୯।୨ ଦୁଇ ଶହସ୍ରଂକର ଶିଖା ଲଗିଲ ଆକାଶେ ମହାଜ୍ୟୋଢ । (ଓ,ଅ,ଚ)

ଯୁଗରେ ହରହରର ଅଟନ୍ତି ସେକ ଆତ୍ମା
କଉତୁକେ ନାରାଜ ରୂପ ଧଇଲେ ସେ ବେନି ମହାତ୍ମା । ୮୧ ।
ସଂସାର ପ୍ରଳୟ ସେ କରିବାର ନିମନ୍ତେ
ମାଳବାଣ ଭୃଜବାଣ ହୋଇଲେ ବେନି ଅସ୍ତ୍ର । ୮୨ ।
ଯଦ୍ୟପି ବ୍ରହ୍ମା ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଦିଗପାଳ
ସେ ଶର ପେଷିଲେ ଅବଶ୍ୟ ପ୍ରହରଇ ତାଂକ କାଳ । ୮୩ ।
ସେ ଶହସ୍ତ୍ରକୁ ପ୍ରତିଶର ନ ଜାଣେ ଫାଲଗୁନ
ଧର୍ମ ଲଙ୍ଘିଲେ ଖାଇବେ ସେ ବେନି ଶହସ୍ତ୍ର ଘେନ । । ୮୪ ।
ଶହସ୍ତ୍ରଂକ ତେଜ ଯେ ଉଲ୍‌କାପାତ ଜାଣି
ଆକାଶେ ଗୋପ୍ୟ ଗଲେ ଗଗନ ଚୂଡ଼ାମଣି । ୮୫ ।
ହାସେଣ ଦୁଷ୍ଟିଲେ ଯେ ପାଣ୍ଡବ ସଇନି
ଖଡ୍ଗେ ରଖ ରଖ ବୋଲ ଶୁଭିଲ ମୁଖ ଧ୍ୱନି । ୮୬ ।
ନନ୍ଦିଘୋଷ ରଥକୁ ବିକାଶିଲ ଶହସଂକର ତେଜ
କ୍ଷଣକ ମାତ୍ରକେ ରଥ ନକ ହୋଇବ ଦହିଜ । ୮୭ ।
ଅର୍ଜୁନ ବୋଇଲେ ସ୍ୱାମୀ ଶୁଣିମା ବାସୁଦେବ
ଖଡ୍ଗଂକର ଶହସ୍ତ୍ର ମୋତେ ବଡ଼ାଇ ଅସମ୍ଭବ । ୮୮ ।
ନବ ଦିବସ ପରଯନ୍ତେ ହୋଇଲା ସାଂଗ୍ରାମ
ଯେମନ୍ତ ଶର ମୁହିଂ ନ ଦେଖିଲା ଶ୍ରୀପୁରୁଷୋତ୍ତମ । ୮୯ ।
ସ୍ୱାମୀ ପ୍ରଳୟାନ୍ତ ଜାଣି ଖଡ୍ଗଂକର ଶର ଦେଖି
ଯେଉଁମାନ୍ତ ପାଣ୍ଡବନ୍ତ ରଖି ନୁଆଁରେ ପଦ୍ମଆଖି । ୯୦ ।
ଅର୍ଜୁନ ମୁଖରୁ ଯେତେହେନେକ ଦୁରୀପଦ ବାଣୀ ଶୁଣି
ମନେ ମନେ ବିଗୁରଲେ ଦେବ ଚକ୍ରପାଣି । ୯୧ ।
ବିଗୁରନ୍ତି ଗୋବିନ୍ଦେ ଅର୍ଜୁନ ଭୟେ କଲା
ସାଂଗ୍ରାମ ସରିଲା ତ ପାଣ୍ଡବ ବଳ ନାଶ ଗଲା । ୯୨ ।

---

୮୪।୧ ସେ ଶହସ୍ତ୍ରକୁ ସମାନ ସେ ନୋହଇ ଅରଜୁନ । ( ତ, ଟ, ଥ, ଦ )
୮୬।୨ ହର ଅର୍ଜୁନ ରଖ ବୋଲି ଶୁଭିଲା ମୁଖ ଧ ନି । ( ତ, ଥ, ଦ)

ସେହୁ ଶରହସ୍ତ ବଞ୍ଚାଇବାକୁ କାହାର ନାହିଂ ବୁଦ୍ଧି
କଟଇଲୁ ଦୁର୍ଯୋଧନ ରାଜାକୁ ପ୍ରାପତ ସେହୁ ଧର୍ମ୍ମଧି । ୯୩ ।
ମୋହୋର ଶରହସ୍ତ ନ ଧଇଲେ ଯେତେବେଳେ
ପାଣ୍ଡବେତ ନାଶ ଯିବେ ଖିଷ୍ମୁଙ୍କର କୋପାନଳେ । ୯୪ ।
ମାଲବାଣ ଭୁଜବାଣ ଦେଖି ପାଣ୍ଡବ ବଳ ଦୁଃଖି
ତିନ ଯୋଜନ ଅନ୍ତରେ ଯାଇଂ ରହିଲେ ସେହୁକା ନନ୍ଦଘୋଷ ରଥ
ରହିଅଛୁ । ୯୫ ।
କଉରବେ ସଇନ ଯେ ଗଲେ ଅପସରି
ତିନ ଯୋଜନ ଅନ୍ତରେ ରହିଲେ କଉରବେ ଦଣ୍ଡଧାରି । ୯୬ ।
ସେହୁକା ଖିଷ୍ମ ଅର୍ଜ୍ଜୁନ ରହିଲେ ଦୁହିଂକର ରଥେ
ସୁଦ୍ରିଶେଣ ଚକ୍ର କରେ ଧଇଲେ ଜଗନ୍ନାଥେ । ୯୭ ।
ନନ୍ଦଘୋଷ ରଥରୁ ଗୋବିନ୍ଦେ ଅବତରି
ମାଲବାଣ ଭୁଜବାଣ ରହିଲେ କୃଷ୍ଣ ଦ୍ରୋହନାସେ କରି । ୯୮ ।
ଅପରେ ଦନ୍ତଗୁପ୍ତି ଚକ୍ର ଧରିଣ ଶ୍ରୀହସ୍ତେ
ଧାଇଁକାରେ ଉଠିଲେ ଯାଇଂ ଖିଷ୍ମୁଙ୍କର ରଥେ । ୯୯ ।
ଦେଖିଣ ହାସିଲେ ଶାନ୍ତନୁନୁର ଆତ୍ମଜା
ଶ୍ରୀହରିଂକ ଦେଖି ଖିଷ୍ମେ ଶରହସ୍ତ କଲେ ତେଜ୍ୟା । ୧୦୦ ।
ରଥରେ ଥାଇଂଣ ଗାଙ୍ଗେବେ ହୋଇଲେ ପରଣାମି
ଜଗତଭୂତ ନାଥ କମର୍ଥେ କୋପ କଲ ସ୍ୱାମୀ । ୧୦୧ ।

---

୯୩।୧ ସେହୁ ଶରହସ୍ତ ମେଣ୍ଟିବାକୁ ନାହିଂ କାହାର ବୁଦ୍ଧି । ( ଘ, ଙ, ଥ, ନ )
୯୫।୧ ମାଲବାଣ ଭୁଜବାଣ ଦେଖି ପାଣ୍ଡବ ବଳ ଦୁଃଖି ।
ତିନ ଯୋଜନ ଅନ୍ତରେ ଯେ ହୋଇଲେ ସେହୁକଲେତ ।
ସେହୁକା ହୋଇଣ ଯେ ନନ୍ଦଘୋଷ ରହିଅଛୁ
ସେ ରଥରେ ବସିଛନ୍ତି ଜଗନ୍ନାଥ ଶ୍ରୀହରି । ( ଘ , ଙ, ଙ, ଥ, ନ )
୧୦୧।୨ "ଜଗତଭୂତ ନାଥ କମର୍ଥେ କୋପକଲ ସ୍ୱାମୀ ।" ପରେ
'ଝ,ଛ' ରେ ଅଧିକା ପାଠ: —
ଯଦ୍ୟର୍ଥେ ଦେବ ଶରହସ କଲି ମୁଁ ପ୍ରହାର
ଚକ୍ର ଧରି ପ୍ରଭୁ ଛେଦ ହାଦେ ମୋହୋର ଶିର ।
(ଅବଶିଷ୍ଟ) ପରପୃଷ୍ଠାରେ

ତୁ ଯେବେ ସାଂଗ୍ରାମକଇଁ ଇଚ୍ଛାକଲୁ ଦେବ ପ୍ରଭୁ
ତୋହୋର ସାଂଗ୍ରାମ କଲେ କଉଗୋବେ ବ୍ରୁଡିବେ ଆର କାହୁଂ ।୧୦୨।
ଗଗେଣ ଚନ୍ଦ୍ର ଧର ଯେ ଆଚେଷ୍ଟିଲେ ଚକ୍ରପାଣି
ସଞ୍ଚଯ୍ଯେ ଖ୍ରିଷ୍ଟୁ ତୋତେ ଆଜ ପକାଇବ ହାଣି । ୧୦୩ ।
ମାଲବାଣ ଭୁଜବାଣ ଯେ ହରିହର ଯେକ ଆମ୍ଭା
ଯେ ଶର ପେଷନ୍ତେ ଆକାଶେ କମ୍ପଇ ବେଦବ୍ରହ୍ମା । ୧୦୪ ।
ସ୍ୱର୍ଗ ତେଜ ପଳାବନ୍ତ ସମସ୍ତ ବୃନ୍ଦାଅର୍କେ
କ୍ଷୀରୋଦ୍ରଶାୟୀ ହୋଇଲେ ସକଳ ଦେବଲୋକେ । ୧୦୫ ।
ଯମ ଦେବତା ସଞ୍ଜୀବନୀ ପୁର ତେଜ ରହିଲ ଛଉଦଶ ଯୋଜନେ
ପାତାଳେ ଗୋପ୍ୟଗଲେ ସେ ବହ୍ନ୍ତା ପୁରୁଷମାନେ । ୧୦୬ ।
ନବଦ୍ୱନ ପରିପକ୍ବେ ହୋଇଲା ସାଂଗ୍ରାମ
ଯେତେବେଳେ ଆସି ତୁ ଗ୍ଭଡଲୁ କର୍ମେ ଧର୍ମ । ୧୦୭ ।
କଳିକାଳ ଅନ୍ତରେ ଯେ କଲଂକୀ ଅବତାର
କଲଂକୀ ନାରାୟଣ ଯେ ବାଣ ବହଇ ନଜ କର । ୧୦୮ ।
ସତ୍ୟଯୁଗହୁଂ ଯେହା ଯେ ବ୍ରହ୍ମା କ୍ଷୀରୋଦ୍ରେ ଥିଲେ ଥୋଇ
ଜାହ୍ନବୀ ଯେ ଶହସ୍ର ତୋତେ ଦଳିକ ଗେରାଇ । ୧୦୯ ।

---

୧୦୧।୨ ପୂର୍ବପୃଷ୍ଠାର ଅବଶିଷ୍ଟାଂଶ—

ଯେ ତୋହୋର ଚକ୍ର ପାଇବାର ଅର୍ଥେ
ମାଲବାଣ ଭୁଜବାଣ ବାନ୍ଧିଲ ଜଗନ୍ନାଥେ ।
ଛେଦ ଛେଦ ଶିର ମୋର ନ କରସି ହେଳ
ଯେ ତୋହୋର ସଦଯ୍ୟେ କଲେ ଦେଖିବଇଂ ବଇକୁଣ୍ଠ ଆଳ।
ପୁଣ ପୁଣ ଗାଙ୍ଗବେ ଚରଣେ ପରଣାମି
ଲଭଇ ପରମଗତି ଚକ୍ରେ ଛେଦ ଦେବ ସ୍ୱାମୀ ।
ଖ୍ରିଷ୍ଟଂକର ମୁଖରୁ କରୁଣ ବାଣୀ ଶୁଣି
ଦୟା ବସିଲ ହୃଦେ ଦେବ ଚକ୍ରପାଣି ।

୧୦୩ { ଖ୍ରିଷଂକର ମୁଖ ଶୁଣି ବୋଲନ୍ତି ଚକ୍ରପାଣି
ତୋହୋର ଶିର କମଳ ଛେଦିବ ଯେହିକ୍ଷଣି । ( ଝ, ଥ, ନ )

ଯେ ଦେବ ଶହସ୍ରକୁ ତୁ କମ୍ପାଇଂ ଭରସ୍ତ
ମାନବ ଯୁଦ୍ଧେ କମ୍ପେ ଦେବ ଶହସ୍ର ପେଷ୍ଟ । ୧୧୦ ।
ଖ୍ରିଷ୍ଟେ ବୋଇଲେ ହର କୋପ ସଂହରିବା ମୋତେ
ତେବେ ସେ ସତ୍ୟ ବଚନ କହିବଇଂ ତୋତେ । ୧୧୧ ।
ଗୋବିନ୍ଦେ ବୋଇଲେ ତୁ ଯେ ଦେବ ଶହସ୍ର ବାହୁଡା
ମନ୍ତ୍ରବଳେ ଖ୍ରିଷ୍ଟେ ବାହୁଡାଇଲେ ଶହସ୍ର ଯୋଡା । ୧୧୨ ।
ନାରାୟଣଂକ ବଚନେ ଖ୍ରିଷ୍ଟେ ଶହସ୍ରକୁ ଧାଯେ ଚନ୍ତ
ବାହୁଡାଇ ସଂହରିଲେ ମାଳବାଣ ଭୁଜବାଣ ଦୁହନ୍ତ । ୧୧୩ ।
ଖ୍ରିଷ୍ଟେ ବୋଇଲେ ହର ତୁ ମୋତେ ନ କଲୁ ପ୍ରତିକାର
ଚକ୍ରେ କମ୍ପେ ଛେଦନ ନ କଲୁ ମୋର ଶିର । ୧୧୪ ।
ଆହ୍ମଂ ବଇକୁଣ୍ଠ ଭୁବନକୁ କଲଇଂ ମୁହିଂ ଇଚ୍ଛା
ମାଳବାଣ ଭୁଜବାଣ ମାଇଲ ତୋହୋର ଚନ୍ଦ୍ରକୁ କରି ବାଞ୍ଛା । ୧୧୫ ।
ମୁକତି ଚନ୍ତାମଣି ତୁ ମୋତେ ସଦୟେ ନ କଲୁ
ମୋତେ ନ ମାରଣ କମ୍ପେ ଚନ୍ଦ୍ର ସଂହରିଲୁ । ୧୧୬ ।
ଶ୍ରୀକୃଷ୍ଣେ ବୋଇଲେ ତୁ ଅଟୁ ମହାଗ୍ୟାମ୍ମା
ବଇକୁଣ୍ଠ ଭୁବନକୁ ତୋତେ ଯୁଧିଷ୍ଠିରଂକ ଯିବା ବେଳା । ୧୧୭ ।
ଖ୍ରିଷ୍ଟେ ବୋଇଲେ ହରି ତୋହୋର ମୋତେ ଯେତେକ ସଦୟେ
ଯୁଗତେ ଭଗତି ତୋତେ ନୋହିଲ ଦେବରାୟେ । ୧୧୮ ।
ଖ୍ରିଷ୍ଟଂକୁ ସଦୟେ କରି ବଦନ୍ତି ଦେବରାଜ
ତୋହୋରେଣ ଖ୍ରିଷ୍ଟେ ହୋ ଅଛି ମୋତେ ଅନେକ କାର୍ଯ୍ୟ । ୧୧୯ ।
ଖ୍ରିଷ୍ଟେ ବୋଇଲେ ତୁ ଭଗତବତ୍ସଳ ବଶ୍ୟବାସ
ମୁହିଂ ଘେନନ୍ତ ତୋତେ କରିବ କାର୍ଯ୍ୟ କସ । ୧୨୦ ।
ଗୋବିନ୍ଦେ ବୋଇଲେ ପାଣ୍ଡବେ ମୋହୋର ପଞ୍ଚଭୂତ ଆତ୍ମା
ତାହାଂକରେ ବିବାଦ ତୁ ନୁହସି ମହାତ୍ମା । ୧୨୧ ।
ଖ୍ରିଷ୍ଟେ ବୋଇଲେ ହରି ତୋହୋର ଚରଣେ ଧଇଲ
ଆଜ ରଣେ ବିଜେକର ମୋହୋର ତହିଂକ ପାଣ୍ଡବନ୍ତ ଦେଳ । ୧୨୨

---

୧୧୫।୨ ମାଳବାଣ ଭୁଜବାଣ ପେଷି ସମରେ ଜେଷ୍ଟ ଜାଲ କଷା । ( ଖ,ଗ )

ଯେବେ ପାଣ୍ଡବନ୍ତ ତୁ ଇଚ୍ଛିଲୁ ପରମ ଯେ ପଦ
କାଲି ପ୍ରଭାତେ ମୁଂ କହିବି ମୋହୋର ମୃତ୍ୟୁଭେଦ । ୧୨୩ ।
ଭୀଷ୍ମେ ବୋଇଲେ ହରି ଆଜହୁଂ ତ ମୋହୋର ସରିଲା ସମର
ଦଶ ସହସ୍ର ରଥୀ ପାଡିବି ଆଜ ମୋତେ
କୋପ ନ କରିବୁ ଦାମୋଦର । ୧୨୪ ।
ଗୋବିନ୍ଦେ ବୋଇଲେ ଯେ ତୋହୋର ଇଚ୍ଛା
କର ଆଜ ସମର ତୋର ପୂରୁ ମନୋବାଞ୍ଛା । ୧୨୫ ।
ଭୀଷ୍ମଂକୁ ଦୃଢ କରାଇ ଚଳନ୍ତ ଅଚ୍ୟୁତେ
ବିଜେ ଜଗନ୍ନାଥ ଯାଇଂ ନନ୍ଦିଘୋଷ ରଥେ । ୧୨୬ ।
ଶାହସ୍ର ଝଂପନ ଦେଖି ଧାଇଂଲେ ଦୁଇବଳ
ପୁଣି ରଣରଙ୍ଗ ଲାଗିଲା ଯେ ମହାଗୋଳ । ୧୨୭ ।
ଚତୁର୍ଦ୍ଦଶ ଘଡି ଆସି ହୋଇଲାକ ଦିନ
ସମରେ ମହାଶ୍ରମ ପାଇଲେକ ଓହୋବଳ ସଇନ । ୧୨୮
ଭୀଷ୍ମଂକ କଥା ହରି କହନ୍ତେ ଅର୍ଜୁନକୁ
ସମର ଛାଡି ଅର୍ଜୁନ ଚାହିଂଲା ଜଗନ୍ନାଥଂକ ମୁଖକୁ । ୧୨୯ ।
ଏଣେହେନେକ ସମୟେ କୋଟିଏ କରଣ ବାଣ ବିନ୍ଧିଲେ ଭୀଷ୍ମ ମହାରଥୀ
ଦଶସହସ୍ର ରଥୀ ପାଡିଲେ ତତକ୍ଷଣାନ୍ତ । ୧୩୦ ।
ସମର କରନ୍ତେ ଯେ ଆଦିତ୍ୟ ଅସ୍ତଗଲେ
ଓହୋବଳ ଥାଠ ସେହି କୁରୁକ୍ଷେତ୍ର ମଣ୍ଡଳେ ରହିଲେ । ୧୩୧ ।
ସ୍ନାହାନ ସନ୍ଧ୍ୟା ନିତ୍ୟକର୍ମ ସେ ସାରଣ କୁରୁପତି
ଅନେକ ଅଳଂକାର ଘେନି ଭୀଷ୍ମନ୍ତ ବିନୟେ ଭଗତି । ୧୩୨ ।
ମକର ଶୁକ୍ଳପକ୍ଷ ନବମୀର ଦିନ
ବୃହସ୍ପତି ବାର ପୁଷ୍ୟା ନକ୍ଷତ୍ର ବିଦ୍ୟମାନ । ୧୩୩ ।
ତଇତିଳ ନାମେ କରଣ ଆୟୁଷ୍ମାନ ନାମେ ଯୋଗ
ନବମୀ ଦଶଦଣ୍ଡ ଭୋଗ ଉତ୍ତରେଣ ଦଶମୀ ତିଥି ଭୋଗ । ୧୩୪ ।
ପାଣ୍ଡବନ୍ତ ଘେନଣ ଦେବ ଚକ୍ରପାଣି
ସହଦେବର ଭୁଲେ କରନ୍ତ ଭାଲେଣି । ୧୩୫ ।

---

୧୨୯।୨ ସମର କରୁଅଛୁ ପାଥ ସାବଧାନ ଶ୍ରୀକୃଷ୍ଣର କଥାକୁ । (କ, ଛ, ଝ, ଟ,)

ଗୋବର୍ଦ୍ଧନେ ବୋଇଲେ ମୋହୋର ଆଗେ କହିଲେଟି ବିଶ୍ରାମ
ବୋଇଲେ ମୁଁ କାଲି ସମରେ ଶର ଗ୍ରୁଡ଼ିବି ଅବଶ୍ୟ । ୧୩୬ ।
ଭୀଷ୍ମେ ବୋଇଲେ ଦେବ ଆଜର ରଯଣୀ
ମୋହୋର ତହୁଁକା ଭଜେକର ଦେବ ପାଣ୍ଡବନ୍ତ ଘେନି । ୧୩୭ ।
ଗଲେ ସହଦେବ ଯେବେ ଭୀଷ୍ମଙ୍କ ବସାକୁ
ଯେକାଳେ ମୃତ୍ୟୁଭେଦ ସେ କହିବେ ଆମ୍ଭଙ୍କୁ । ୧୩୮ ।
ସହଦେବ ବୋଇଲେ ସ୍ୱାମୀ ଭୀଷ୍ମ ଭଣ୍ଡିଲେଟି ତୋତେ
ଯେମନ୍ତେ ମୃତ୍ୟୁଭେଦ ସେ ନ କହିବ କଦାଚିତେ । ୧୩୯ ।
ଦୁର୍ଯୋଧନ ସଭାକୁ ସେ ଯାଆନ୍ତୁ କଣ୍ଠୀ
ମାନଗୋବର୍ଦ୍ଧନନ୍ତ ମାଗନ୍ତୁ ଅନର୍ଘ ମଣି ମୁକୁଟ ଗୋଟି । ୧୪୦ ।
ସହଦେବ ବଚନେ କହନ୍ତି ବାସୁଦେବ
ଯମ୍ଭଗା ଅଭିଷେକ ମୁକୁଟ ସେ ଅର୍ଜୁନକୁ କେମେ ଦେବ । ୧୪୧ ।
କରପତ୍ର ଯୋଡ଼ଣ ବୋଲଇ ସର୍ବସାରୀ
ମୁକୁଟ ଦେବାକୁ ସ୍ୱାମୀ ପ୍ରସ୍ତାବେକ ଅଛି । ୧୪୨ ।
ମାନଗୋବର୍ଦ୍ଧନ ରାଜାର ଘୋଷଯାତ୍ରା କାଳେ
ଚିତ୍ରସେନ ଗନ୍ଧର୍ବ ଯେ ଦୁର୍ଯୋଧନକୁ ବାନ୍ଧନେମା ବେଳେ । ୧୪୩ ।
ମୁଁ ପୁଣି ବିବାଦ ହୋଇଲି ଚିତ୍ରସେନେ
ବନ୍ଧନୁ ମୁକ୍ତ କରି ଆଣିଲି ଦୁର୍ଯୋଧନେ । ୧୪୪ ।
ବେଗେ ଲକ୍ଷେ ଯୋଜନକୁ ଗ୍ରୁଡ଼ିଦିଲି ଚିତ୍ରରଥ
ଆକାଶ ଭୁବନୁଁ ମୁଁ ବାନ୍ଧିଲି ଶରପନ୍ଥ । ୧୪୫ ।
ସେ ଶରପନ୍ଥେ ଯେ ମାନଗୋବର୍ଦ୍ଧନ ଗଡ଼ି ଗଡ଼ି ଆସି
କଣପୁ ଗିରି ପର୍ବତ ତଳେ ପଡ଼ିଲା ନିଗ୍ରଶୀ । ୧୪୬ ।
ଅନେକ ବିନୋଦୀ ମୋତେ କଲା ଅନୁରାଗ
ବୋଇଲା ଅର୍ଜୁନ ରେ ବର ମୋତେ ମାଗ । ୧୪୭ ।
ମୁହିଁ ବୋଇଲି ଦୁର୍ଯୋଧନ ଚରଣେ ପରଣାମି
ଅନର୍ଘମଣି ମୁକୁଟ କାର୍ଯ୍ୟ ବେଳେ ଦେବାକ ମୋତେ ସ୍ୱାମୀ । ୧୪୮ ।

---

୧୪୩।୧   ଘୋଷଯାତ୍ରା କାଳେ—ଗୋପାଳ ମାନଙ୍କର ସ୍ନେକ ଯାତ୍ରା ବର୍ଣ୍ଣନ ସମୟରେ ।

ସ୍ୱାମୀ ଅନୁଗ୍ରହ କରଣ ମୋତେ ବୋଇଲା କୁରୁ ସ୍ୱଜନ
ମାଗିଲେ ମୁକୁଟ ତୋତେ ଦେବଇଂ ରେ ଅରଜୁନ । ୧୪୯ ।
ସେ କାଳେ ସତ୍ୟ ମୋତେ କଲା ଦୁଯୋଧନ
ମହନ୍ତଂକର ବାକ୍ୟ ଲଙ୍ଘିତ ହୋଇବ କେସନ । ୧୫୦ ।
ଗୋବିନ୍ଦ ଅରଜୁନ ସହଦେବ ତିନ
ଆସ୍ଥାନେ ବଜେ ନାରାୟଣ ପାଣ୍ଡବନ୍ତ ଘେନ । ୧୫୧ ।
ବାରୁଣାବନ୍ତ ନାମେ ଯେବଣ ଶଇଳ
ତ୍ରିବେଣୀ ସଙ୍ଗମ ତହିଂ ବଜସ୍ତେ ମହୀପାଳ । ୧୫୨ ।
ଆସ୍ଥାନେ ବଜସ୍ତେ ମାନଗୋବିନ୍ଦ ଯୁଦ୍ଧେଷ୍ଟି
ଆସ୍ଥାନର ତଳେ ପ୍ରଲମ୍ବିତ ହୋଇଲା କଣ୍ଠୀ । ୧୫୩ ।
ଦେଖିଣ ପରମ ହରଷ ହେଲା ରାଜା ମାନ ଯେ ଗୋବିନ୍ଦେ
ବାବୁ ଭରେଇ ମଲ୍ଲ କମ୍ଭୁତେ କଲୁ ବଜେ । ୧୫୪ ।
ଅର୍ଜୁନ ପ୍ରଣିପତ୍ୟ କରଣ ପାଦେ ବେଗେ ଉଠି
ଧାଇଂ ଯାଇଂ କୋଳ ତାକୁ କଲା ଧୃତରାଷ୍ଟ୍ରି । ୧୫୫ ।
ମାନଗୋବିନ୍ଦ ବୋଇଲା ଶୁଣିମା ଅର୍ଜୁନ
କମର୍ଥେ ପ୍ରାର୍ଥନା କହସି ବଚନ । ୧୫୬ ।
ମାନଗୋବିନ୍ଦ ବୋଇଲା ମାଗ ଯେ ତୋହୋର ମନଇଚ୍ଛା
ସତ୍ୟ ସତ୍ୟ ମୋହୋର ଦେବ ତୁ କରବୁ ଯାହା ବାଞ୍ଛା । ୧୫୭ ।
କରପଦ୍ମ ଯୋଡ଼ଣ ଯେ ବୋଲଇ ଫାଲଗୁନ
ଅନର୍ଘ ମଣି ମୁକୁଟ ଦେବା ଆଜର ରପୂଣୀ । ୧୫୮ ।
ରପୂଣୀ ପ୍ରଭାତେ ଆମ୍ଭେ ଦେବାକ ବାହୁଡାଇ
ସ୍ୱେ ମୋହୋର ସତ୍ୟ ତିବାର ସ୍ୱାମୀ ହୋଇ । ୧୫୯ ।
ଶୁଣିଣ ଉପହାସ କଲେ ଶଲ୍ୟ କର୍ଣ୍ଣ ଦ୍ରୋଣ ଅଶ୍ୱତ୍ଥମା
ବାହ୍ଲିକ ଦୁର୍ମୁଖ ଦୁର୍ଜୟେ ଧୁଶାସନ କୃପବ୍ରହ୍ମା । ୧୬୦ ।
ଶକୁନି ବୋଇଲା ହୋ ନ ଜାଣ ତୁମ୍ଭେ କଛୁ
ଅର୍ଜୁନ ମାଗିଲା ଯେ ପ୍ରସ୍ତାବେକ ଅଛୁ । ୧୬୧ ।

---

୧୫୩। ଆସ୍ଥାନେ ବଜସ୍ତେ ଯେ ରାଜା ଧୃତରାଷ୍ଟ୍ର । ( ଖ, ଘ, ଠ, ଢ, ଡ )

ଶଲ୍ୟେ ବୋଇଲେ ମନ୍ତ୍ରୀ ପୂର୍ବର ସତ୍ୟ ଥିଲେ
ଜୀବନ ଅକୀର୍ତ୍ତି ପୁରୁଷ ବାଗ୍‌ବିଚଳିତ ହୋଇଲେ । ୧୬୨ ।
ଯେ ଯେ ଲକ୍ଷେ ରଜାର ମଧ୍ୟେ ଅଛଇ ମାନଗୋବିନ୍ଦ ମହାପ୍ରଭୁ
ବାଗ୍‌ବିଚଳିତ ଯେଥେ ସାମର୍ଥ ଅଛୁ କେହୁ । ୧୬୩ ।
ମାନଗୋବିନ୍ଦ ବୋଇଲା ଶୁଣସି କର୍ଣ୍ଣଙ୍ଗୀ
ଗୁଣସାଗର ଭାଇ ମୋର ବନ୍ଧୁ ପ୍ରାଣର ସାଖୀଗୋଟି । ୧୬୪ ।
ଦୁର୍ଯୋଧନ ବୋଇଲା ବାବୁ ଘୋଷଯାତ୍ରା କାଳେ
ଚିତ୍ରସେନ ଗନ୍ଧର୍ବ ଯେ ବାନ୍ଧିନେଲା ବଳେ । ୧୬୫ ।
ଥିଲେ ଭୀଷ୍ମ ଦ୍ରୋଣ କର୍ଣ୍ଣ ଶଲ୍ୟ ଭୂରିସର୍ବା ମହାରଥୀ
ସମସ୍ତେ ପଳାଇଲେ କେହି ମୋତେ ନୋହିଲେ ରଖନ୍ତା । ୧୬୬ ।
ସହୋଦରଙ୍କୁ ଗୁଡିଲା ପାର୍ଥ ମୋହୋର ନିମନ୍ତେ
ଯେହୁ ହାକଇଂ ଭସ୍ମ କରି ମୋତେ ଗୁଡିଲା ଚିତ୍ରରଥେ । ୧୬୭ ।
କଲା ଉପକାର ଯେ ନ ସୁମରନ୍ତି ହୃଦେ
ସଞ୍ଜୟେ ସେ ପ୍ରାଣୀ ନରକଗର୍ତ୍ତ ପାଇ ହାଦେ । ୧୬୮ ।
ଯଦ୍ୟପି ଅର୍ଜ୍ଜୁନ ମୋତେ ମାଗିବାକ ତୋଟି
ଯେହୁ ହିକ୍ଷଣି ଛେଦିଦେବି ମୋହୋର ଶିର କମଳ ଗୋଟି । ୧୬୯ ।
ପନ୍ନଗା ନାଗପୃଣ ସେ ମାନଚନ୍ଦ୍ରବୀଜ
ଅନର୍ଘ ମଣି ମୁକୁଟ କାଢ଼ି ଦିଲାକ ତତକ୍ଷଣାନ୍ତ । ୧୭୦ ।
କୋଟିଏ ମାଣିକ୍ୟ ଯେଉଣ ମୁକୁଟେ ଅଛି ଲାଗି
କୋଟିଏ ପାଦେ ଲକ୍ଷ୍ମୀ ତହିଂ ବଜ୍ରଯେ ସତ୍ତଭାଗୀ । ୧୭୧ ।
ସେ ମଣିର ତେଜେ ରଯୁଣୀ ନାହିଂ ଯୋଗ
ଯେଉଣ ପାଣ୍ଡବେ ଯେ ଚଳିଲେ ଅତି ବେଗ । ୧୭୨ ।

---

୧୬୨।୨ ଯେ ଜନ୍ମେ ବିଅର୍ଥ ବାଗ୍ ବିଚଳିତ ହୋଇଲେ । ( ଘ, ଡ, ଥ, ନ )

୧୬୩।୨ { ବାଗ୍ ବିଚଳିବାକୁ ଯେଥେ ସମାନ ଅଛୁ କେହୁ । ( କ, ଙ )
ବାଗ୍ ବିଚଳିତ ହୋଇଲେ ସତ୍ୟ ଲକ୍ଷ୍ମୀ ଥିବ କାହିଂ । ( ଝ, ଗ ) }

୧୬୫।୨ ଚିତ୍ରସେନ ଗନ୍ଧର୍ବ ଯେ ବାନ୍ଧିନେଲା ଯେତେବେଳେ । (ଙ,ଝ,ଝ,ଥ,ନ)

୧୭୦।୨ ଅନର୍ଘ ମଣି ମୁକୁଟ ସେ ଅର୍ଜ୍ଜୁନ ଶିରେ ବାନ୍ଧିଲା ନେଇ ତତକ୍ଷଣାନ୍ତ
( ଘ, ଡ, ଥ, ନ )

୧୭୧।୨ କୋଟିଏ ପାଦେ ଲକ୍ଷ୍ମୀ ତହିଂ ବଜ୍ରଯେ ଶ୍ରୀହରି ସତ୍ତଭାଗୀ । (ଡଥନ,

ସହଦେବ ବୋଇଲେ ଦେବ ଆଜର ପାହାନ୍ତ
ଭୀଷ୍ମଙ୍କ ତହିଂକ ଯିବା ପ୍ରସର ନୋହୁ ରାତ୍ର । ୧୭୩ ।
ଓହୋବଳ ଥାଏ ନ ମାଡଇ ନିଦ
ସମରକୁହିଂ ଇଚ୍ଛା ସେ ଅନୁବ୍ରତେ ଖେଦ । ୧୭୪ ।
ରାତ୍ର ଥାଉଂ ଭୀଷ୍ମେ ଯେ ନିତ୍ୟକର୍ମ ସାରି
ଦେବଘରେ ପଶି ନିରାକାର ଶାସ୍ତ୍ର ପଢି । ୧୭୫ ।
ଅନର୍ଘ ମଣି ମୁକୁଟ ଯେ ଅର୍ଜୁନ ଶିରେ ବାନ୍ଧ
ଦଅଂଘର ଦ୍ୱାରେ ଭୀଷ୍ମନ୍ତ ପ୍ରଣିପତ୍ୟ ପାର୍ଥ ମହାଯୋଧୀ । ୧୭୬ ।
ଗୋବିନ୍ଦ ସହଦେବେ ଲଗିଛନ୍ତ କାଛେ
ନାସାରେ ସୂତାଲଇ ଛିଂକଲେ ଶ୍ରୀବଛେ । ୧୭୭ ।
ଲେଉଟିଣ ଗାଙ୍ଗେବ ଯେ ଗୃହିଂଲେ ଦ୍ୱାରକୁ
ମୁକୁଟ ଦେଖି ବୋଇଲେ ଚିରଆୟୁ ହୋଉ ତୁକୁ । ୧୭୮ ।
ପୁଣିହିଂ ଛିଂକଲେ ଦେବ ଯେ ଶ୍ରୀପତି
ମୋ ଆଇଷ ହେନ ବ୍ରତ ବୋଇଲେ ଭୀଷ୍ମ ମହାରଥୀ । ୧୭୯ ।
ପୁଣିହିଂ ଛିଂକନ୍ତ ଦେବ ଯେ ଅଚ୍ୟୁତେ
ଭୀଷ୍ମେ ବୋଇଲେ ପଞ୍ଚ ରାଜ୍ୟ ପ୍ରାପତ ହୋଉ ତୋତେ । ୧୮୦ ।
ଭୀଷ୍ମଙ୍କ ମୁଖରୁ ହରି ଯେସନକ ଦୃଢବାକ୍ୟ ଶୁଣି
ପାଣ୍ଡବନ୍ତ ହେନି ଭିତରେ ବିଜୟେ ଚକ୍ରପାଣି । ୧୮୧ ।
କୃଷ୍ଣଙ୍କ ବଦନ ଗୃହିଂ ବୋଲନ୍ତ ଗାଙ୍ଗେବ
ମାୟାଧର ପୁରୁଷ ତୁ ଯେହା କଲୁକ ବାସୁଦେବ । ୧୮୨ ।
ସ୍ୱାମୀ ଅନର୍ଘ ମଣି ମୁକୁଟ ଦେଖି ଅଭୟେ ବାଞ୍ଛିଲ
ଦୁଯୋଧନ ପ୍ରାୟେ ମଣି କଲ୍ୟାଣ ମୁହିଂ କଲି । ୧୮୩ ।
ଗୋବିନ୍ଦେ ବୋଇଲେ ତୁମ୍ଭେ ମହତ ଧାର୍ମିକ
ବାଞ୍ଛାସିଦ୍ଧ ହୋଇବନା ଷତିଂକର ବାକ୍ୟ । ୧୮୪ ।

---

୧୭୭। ନାସିକାରେ କୁଶଭର ଛିଂକଲେ ଜଗନ୍ନାଥେ । ( ଘ, ଛ )
୧୮୪। ସିଦ୍ଧ ହୋଇ ଅର୍ଜୁନଙ୍କ ତୋହୋର ଦୃଢବାକ୍ୟ । ( ଡ, ଥ, ନ )

ଅର୍ଜୁନ ବୋଇଲେ ତୁମ୍ଭେ ଯେ ବୋଲିଲ ପଞ୍ଚ କଣ୍ଠକରେ
ଜୁଅ ପ୍ରେକ ଛନ୍ଦି
ଭୀଷ୍ମର ହାଥେ ଶସ୍ତ୍ର ଥିଲେ ପାଣ୍ଡବଂକର କସ ଯେ ଜୀବନ୍ତି । ୧୮୫ ।
ଭୀଷ୍ମ ବୋଇଲେ ବାବୁ ତୋତେ ପୂର୍ବର କଥା କହୁଂ
ସୋମବଂଶେ ଆଧିପନ୍ତ ଶାନ୍ତନୁ ମହାପ୍ରଭୁ । ୧୮୬ ।
ଗଙ୍ଗାକଇଂ ପ୍ରୀତି ସେ ବଢାଇଲେ କୂଟେ
ଲକ୍ଷେ ବତିଶ ସହସ୍ର ବରଷ ପର୍ଯ୍ୟନ୍ତେ ଘର କଲେ କପଟେ । ୧୮୭ ।
ଗଙ୍ଗା ବୋଇଲେ ଥିବ ଶାନ୍ତନୁ ତୋର ଘର
ଗାର୍ଗୀ ବୋଇଲେ ବ୍ରତ ପୂରିବ ମୋହୋର । ୧୮୮ ।
ଈଶ୍ୱର ପ୍ରାପ୍ତେ ମଣି ମାଳା ଦେଇ ବରିଲ ତୁମ୍ଭଂକୁ
ପଶ୍ଚାତ୍ତେ ରାଜର୍ଷି ବୋଲି ମୁଂ ଜାଣିଲଇଂ ତୁକୁ । ୧୮୯ ।
ଶିବର ଘରଣୀ ମୁଂ ନ ଦେଖିଲ ଶିବଂକୁ
ଈଶ୍ୱର ବୋଲି କରି ଭଣ୍ଡିଲୁ ଆମ୍ଭଂକୁ । ୧୯୦ ।
କପଟେ ରାଜର୍ଷି ତୁ ଘରକଲୁ ଯେନି ମୋତେ
ଗାର୍ଗୀ ବୋଲି ଭର୍ତ୍ସନା ତୁ ନ ବୋଲିବୁ କଦାଚତେ । ୧୯୧ ।
ଶାନ୍ତନୁର ବୀର୍ଯ୍ୟେ ଗଙ୍ଗା ଦେବୀର ଉଦରେ
ଗଙ୍ଗାତହୁଂ ଜାତ ହେଲେ ଛଅ ଯେ ଆମ୍ଭରେ । ୧୯୨ ।
ଗଙ୍ଗା ବୋଇଲେ ଶିବନ୍ତ ଭେଟିବି ଆଉ କାହିଂ
ଶାନ୍ତନୁ ଋଷିଂକୁ ମୁଂ ଖଣ୍ଡିତ କରାଇ । ୧୯୩ ।
ସୁଷେଣ ମହର୍ଷି ଯେ ଗାର୍ଗୀ ବୋଲୁ ମୋତେ
ସେହାନ୍ତ ତେଜ ଶିବନ୍ତ ମୁଂ ଭେଟିବି ଯେମନ୍ତେ । ୧୯୪ ।
ସେତେକ ବଚନେ ଗଙ୍ଗା ଅନାଦି ସିଦ୍ଧନାରୀ
ଶାନ୍ତନୁ ଆଗେ ନେଇ ପ୍ରଥମ ପୁତ୍ର ମାରି । ୧୯୫ ।
ଗର୍ଭରୁ ଗଙ୍ଗା ଯେବଣ ପୁତ୍ର କରଇ ଜନମ
ଶାନ୍ତନୁ ଆଗେ ନେଇ ଶିର କରଇ ଛେଦନ । ୧୯୬ ।
ଛଅଗୋଟି ପୁତ୍ର ଯେ ଜନମ କଲେ ଧବଳମୁଖୀ
ଶାନ୍ତନୁ ଆଗେ ନେଇ କାଟିଲେ ଶିରଗୋଟି । ୧୯୭ ।

୧୮୫।୨ ଭୀଷ୍ମର ହାଥେ ଶସ୍ତ୍ର ଥିଲେ ପାଣ୍ଡବେ କାହିଂ ବ୍ରଞ୍ଚ । (କ, ଘ, ଢ଼)

ତଥାପି ଗାଙ୍ଗୀ ବୋଲି ନ ବୋଇଲେ ଶାନ୍ତନୁ
ବେଦନ କରନ୍ତି ଦୁଖେ ବ୍ୟାକୁଳେ ସଞ୍ଚୁମନୁ । ୧୯୮ ।
ଗାଙ୍ଗୀ ନ ବୋଲନ୍ତି ଗଙ୍ଗାଙ୍କୁ କରଣ ମହାଂସ
ମାୟା ମୋହ ଲାଗି ଛାଡିଲେ ଗଙ୍ଗାର ସକଳ ଦୋଷ । ୧୯୯ ।
ରାତ୍ର ଦିବା ରମଣ କରନ୍ତି ଗଙ୍ଗାଙ୍କୁ ଶାନ୍ତନୁ ମହର୍ଷି
ଭୋଜନେ ଶୟନେ ସ୍ନାହାନେ ସନ୍ଧ୍ୟାକାଳେ ଗଙ୍ଗାଙ୍କୁ
କୋଳାଗତ କରି ବସି । ୨୦୦ ।
ଶାନ୍ତନୁର ବୀର୍ଯ୍ୟେ ଗଙ୍ଗା ଦେବୀର ଉଦରେ
ସପ୍ତମ ଗର୍ଭେ ଯେ ଉପୁଜିଲେ ଆତ୍ମଜେ । ୨୦୧ ।
ସପ୍ତମ ପୁତ୍ରର ଶିରକମଳ ଛେଦନ୍ତେ
ଦେଖିଣ କୋପ କଲେ ଶାନ୍ତନୁ ଅପ୍ରମିତେ । ୨୦୨ ।
ଆରେ ଆରେ ଗାଙ୍ଗି ପାପିଷ୍ଠୀ ହୀନଜନ ପାମର
ଛଅପୁତ୍ର ନାଶିଲୁ ଲୋ ବାଳକ ହତ୍ୟା କରି । ୨୦୩ ।
ସାତ ଗର୍ଭର ପୁତ୍ର ଗୋଟି ଯେ ପ୍ରାଣର ସାଖୀ ମୋର
ସୋମବଂଶ ରକ୍ଷା ହୋଇଥାଉ କନା ମେଦନୀର । ୨୦୪ ।

---

୨୦୦।୨ "ଭୋଜନ ଶୟନେ ସ୍ନାହାନେ ସନ୍ଧ୍ୟାକାଳେ ଗଙ୍ଗାଙ୍କୁ କୋଳାଗତ କରି ବସି ।" ଏହି ପଦ ପରେ ଅଧିକା ପାଠ:—
ଆହୋ ସ୍ନେହପର ଅନେକ ଅବସ୍ଥା ହଳକ ଶାନ୍ତନୁଙ୍କୁ ଜାହ୍ନବୀ
ଭୃତ୍ୟର ପ୍ରାୟେ ଖଟିଥାନ୍ତି ଶାନ୍ତନୁ ଗଙ୍ଗାରେ ପ୍ରିୟ ଭାବ ।
ଛଅପୁତ୍ର ସନ୍ତୁଂ ମାରି ପକାଇଲେ ହୋଇଣ ଗର୍ଭଧାରୀ
ଦେଖି କରି କିଛି ନ ବୋଇଲେ ଶାନ୍ତନୁ ସତ୍ୟ ଯେ ଆଚରି ।
ସପତମେ ଜନମ ମୁଂ ହୋଇଲି ଯେତେବେଳେ
ଶାନ୍ତନୁର ଦେଖନ୍ତେ ଛେଦଇ ମୋ ଶିରକମଳ ।
ଦେଖିଣ ରାଗ ସଂହରି ନୁଆରିଲେ ଶାନ୍ତନୁ
ଅଲେ ଗାଙ୍ଗୀ କେତେ ପୁତ୍ରଙ୍କର ହତ୍ୟା ଘେନୁ ।
୨୦୧।୨ ସଂସ୍କୃତ ମହାଭାରତରେ ଭୀଷ୍ମ ଅଷ୍ଟମ ଗର୍ଭ କଥା ଲେଖାଅଛି କିନ୍ତୁ ସାରଳା ଦାସ ସପ୍ତମ ଗର୍ଭ ବୋଲି ଲେଖିଛନ୍ତି ।
୨୦୪।୨ "ସୋମବଂଶ ରକ୍ଷା ହୋଇଥାଉ କନା ମେଦନୀର" ଏହି ପଦ ପରେ ଖ ଓ ଟ ପୋଥିର ଅଧିକା ପାଠ:—
ଗଙ୍ଗା ବୋଲନ୍ତେଣ ଥିଲେ ଶାନ୍ତନୁ ଘରେ
ଗାଙ୍ଗୀ ବୋଇଲାକୁ ବ୍ରତ ଧରିଲା ତାଂକରେ ।

ଧାଡିକାରେ ଗଙ୍ଗା ମୋତେ ପକାଇଲେ କୋଳରୁ
ସ୍ତଗେଣ ବୋଇଲେ ଗଳଇଲେ ଗଙ୍ଗାଙ୍କ ମଲେହେଂ ସେ ମରୁ । ୨୦୫ ।
ହେ କୃଷ୍ଣ ! ମହନ୍ତ ବଚନ କି ହୋଇବ ଅନମିତ୍ତୁ
ତହୁଂ ହାତେ ମୋହୋର ଯେ ହୋଇଲା ଇଚ୍ଛାମୃତ୍ୟୁ । ୨୦୬ ।
କୋଟେ ଶାନ୍ତନୁ ଯେ ଧଇଲେ ଗଙ୍ଗାଙ୍କୁ
ଗଙ୍ଗାଯେ ବୋଇଲେ ଶାନ୍ତନୁ ଛୁଇଂଲ କମ୍ପେ ମୁକୁ । ୨୦୭ ।
ଯେତେବେଳ ପର୍ଯ୍ୟନ୍ତ ମୋତେ ନ ବୋଇଲୁ ଭୁଞ୍ଜନା
ମୁହିଂ ତୋହୋର ଭାରିଯା ତେତେବେଳ ସିନା ।୨୦୮ ।
ଯେତେବେଳୁଂ ଗାଳୀ ବୋଲ ତୁ ବୋଇଲୁ ଯେ ମୋତେ
ବ୍ରତ ପୂରିଲା ଗୃହସ୍ତ ପତ୍ନୀ ତୋର ମୁଂ ହୋଇଲି ଯୁଗତେ । ୨୦୯ ।
ମୁକୁଇଂ କୋଳାଗ୍ରତ ତୁ କଲୁ କହ ଅର୍ଥେ
ଶିର ଛେଦନ ହୋଅ ତୁ ଯେହାର ପୁତ୍ର ହାଥେ । ୨୧୦ ।
ବାବୁ ଶାପ ଦେଇଣ ସେ ଅନ୍ତର୍ଦ୍ଧାନ ହୋଇଲେ ଜାହ୍ନବୀ
ମୁହିଂ ପିତାଂକର ଚରଣେ ଥାଇ ନତ୍ୟେ ସେବି । ୨୧୧ ।
ବଶ୍ୱାବସୁଂକର ନନ୍ଦନ ଗନ୍ଧର୍ବ ସୋମଦାସ
ଗୃହ କନ୍ୟା ତାହାଂକର ପୁରେ ବଢନ୍ତ ଅବକାସ । ୨୧୨ ।
ଅମ୍ବା ଅମ୍ବିକା ଅମ୍ବାଳିକା ଅମ୍ବୁବଣ୍ଣି
ମୋତେ ବରିଲେ ହେ ଜ୍ୟେଷ୍ଠାକନ୍ୟା ରୂପବନ୍ତୀ । ୨୧୩ ।
ମୁହିଂ ଘରକୁ ଯାଉଅଛି ହୋଇଣ ବରବଧୂ
ମୋତେ ଦେଖିଣ ପିତା ହୋଇଲେ ବଡ ହୋଧି । ୨୧୪ ।
ମୁହିଂ ପଗ୍ଭରିଲ କମ୍ପେ କ୍ରୋଧକର ପିତା
ତଦନ୍ତ କରି କହ ମୋତେ ଯେଥିର ବାରତା । ୨୧୫ ।

---

୨୦୬ { ହେ କୃଷ୍ଣ ମହନ୍ତଂକ ବଚନ ହୋଇବ କି ଆନ
ତେଣୁ କରି ଇଚ୍ଛାମୃତୁ ମୁଂ କଲଇ ବହନ । ( ତ, ଥ )

୨୧୨।୨ ଗୃହକନ୍ୟା ତାର ଯେ ବଟନ୍ତ ଅବନାଶ । ( ଝ, ଡ )

୨୧୫।୧ କ୍ରୋଧକର—ଶୋକ କର ।

ଶୁଣିଣ ଶାନ୍ତନୁଙ୍କୁ ବୋଇଲେ ଗଙ୍ଗାର ଶାପ ହୋଇ ଅଛି ମୋତେ
ମୁହିଂ ଶିର ଛେଦନ ହୋଇବ ତୋହୋର ପୁତ୍ର ହାଥେ । ୨୧୬ ।

ଆହୋ ଅର୍ଜ୍ଜୁନ ପିତାର ବଚନେ ମୁଂ ଗ୍ରହିଲ ବରବେଶ
ତୋହୋର ମୃତ୍ୟୁ ଯେବେ ଭାରଯା ମୋହୋର କସ । ୨୧୭ ।

ପିତାର ବଚନେ ମୁଂ ଦାର୍ ଉପେକ୍ଷିଲି
ବ୍ରହ୍ମଚର୍ଯ୍ୟ ନୋହିଲ ମୁଂ ଶୃଙ୍ଗାର ନ ଇଚ୍ଛିଲି । ୨୧୮ ।

ଅମ୍ବାକଇଂ ଯେ ଥିଲି ମୁହିଂ ବରି
ପ୍ରଦାନ ନୋହିଲେ କେହି ମୋହୋରେ ଭର୍ତ୍ତୃ କରି । ୨୧୯ ।

ଦାର୍ ସହିତ ସେ ନୁଆଣିଲ ଯୁବତୀ
ମୋହୋର ଦୁଆରେ ଆସି ମୋତେ ହୋଇଲ
ବହୁତ ବିନୟ ଭଗତି । ୨୨୦ ।

ମୁହିଂ ତାହାକୁ ଯେତେବେଳେ କହିଲଇଂ ତମେ
ପ୍ରାଣେ ଝାସିତେ ସେ ଲୋଡ଼ିଲ ମୋହୋର ନାମେ । ୨୨୧ ।

ହଲଉରାମ ବଳଉରାମ ମାଳରାମ ପ୍ରଶୁରାମ ଥିଲେ
ବଂଶକୁ ସ୍ତ୍ରୀହତ୍ୟା ଲାଗଇଂ ବୋଲି ଝାସିତେ ନ ହେଲେ । ୨୨୨ ।

ପୁଣି ମୁକୁଇଂ ସମର୍ପଣ କଲେକ ପ୍ରଶୁରାମେ
ମୋହୋର ନାସ୍ତି କରନ୍ତେ ତାହାଂକର ମୋହୋର
ହୋଇଲା ସାଂଗ୍ରାମେ । ୨୨୩ ।

ଅନେକ ଯୁଦ୍ଧ କଲେ ମୋ ତୁଲେ ସେ ଭାଇ ଗୁରୁ
ଶତେଦିନ ସାଂଗ୍ରାମରେ ହାରି ମୋତେ ଗଲେ ଅପସରି । ୨୨୪ ।

ତହୁଂ ଅମ୍ବାକନ୍ୟା ହୋଇଲା ନିରାଶ
ଭୀଷ୍ମଙ୍କୁ ଜିଣିବ ବୋଲି ପ୍ରୟାଗେ ହୋଇ ଝାସ । ୨୨୫ ।

---

୨୧୮।୧ ପିତାର ବଚନେ ମୁଂ ଦାର୍ ସହରିଲି । ( କ, ଙ, ଛ, ଚ )
୨୨୦।୧ ଦାରହିଂ ସହରିଲି ଯେ ନ ଇଚ୍ଛିଲି ଯୁବତୀ । ( ଘ, ଙ, ଝ )
୨୨୦।୨ { ମୋହୋର ପୁରକୁ ଅଇଲା ଯୁବତୀ ।
{ ମୋହୋର ପାଦରେ ସେ ବିନୟେ ଭଗତି । ( ଙ, ଚ )

ବାଞ୍ଛାଙ୍ଗାର୍ଥ ସେହୁ, କେହୁ ଯେ ନ କଲ
ଦ୍ରୋପଦ ରଜାର ଯେ ସନ୍ତଷ ନୋହଇଲ । ୨୨୬ ।
କଉରେବ ବଳ ଭଞ୍ଜନା ଅଟଇ ଦ୍ରୋପଜା
ଶ୍ରୀଖଣ୍ଡୀ ରୂପେ ସେ ଅମ୍ବାକନ୍ୟା ସେହି ଅଗ୍ନିରୁ ଉତପତ୍ତି । ୨୨୭ ।
ଆହୋ! ଅର୍ଜୁନ ଶ୍ରୀଖଣ୍ଡୀକ ଆଗକର ଆଜର ରଣେ
ତାହାଙ୍କୁ ଦେଖିଲେ ଶହସ୍ର ଗୁଡ଼ତବ ବଳବୀର୍ଯ୍ୟ ହୀନେ । ୨୨୮ ।
ଦ୍ରୋଣେ ନାଶଯିବେ ଧୃଷ୍ଟଦ୍ୟୁମନର ହାଥେ
କର୍ଣ୍ଣ ନାଶଯିବଟି ଅର୍ଜୁନର ଶରଘାତେ । ୨୨୯ ।
ଯୁଧିଷ୍ଠିରଂକ କୋପେ ଦହି ହେବେ ଶଲ୍ୟ
ଭୀମ ମର୍ଦ୍ଦିବଟି କଉରେବ ଫଲ । ୨୩୦ ।
ସହଦେବର ହାଥେ ମରବ ଶକୁନ
ନିକଣ୍ଟକ ରାଜ୍ୟ ତୁ ଲଭବୁ ଫାଲଗୁନ । ୨୩୧ ।
ଶ୍ରୀକୃଷ୍ଣ ସାରଥି ପଣେ ଯାହାକୁ କଲେ ରକ୍ଷା
ଆଜମାନଂକର ହାଦେ କଇକ୍ଷା ଅଟେ ମିଥ୍ୟା । ୨୩୨ ।
ମୁହିଂ ଯେବେ ଜଣି ନୁଆରିଲ ଦଶଦାନ ଯୁଦ୍ଧେ
ଆଉର କଉରେବନ୍ତ କେ ରଖିବ ରଣ ମଧ୍ୟେ । ୨୩୩ ।
ଯେମନ୍ତ କଥା ହୁଅନ୍ତେଣ ପ୍ରସର ହୋଇଲା ରଘୁଣୀ
ଜଗବନ୍ଦନ ନାଥ କଲେକ ଶଙ୍ଖ ଧ୍ୱନି । ୨୩୪ ।
ଜୟ ତୁ କେଶବ ଅବତାର ଗୋମୁଖ
ଚତୁର୍ପାଦ ରଖି ଯାହାର ନରସିଂଘ ରୂପ ପ୍ରତକ୍ଷ । ୨୩୫ ।

---

୨୨୬।୧ ସେହୁ ବାଞ୍ଛା, ଅର୍ଥାତ୍ ଭୀଷ୍ମଙ୍କ ବିବାହ କରିବାର ଯେ ବାଞ୍ଛା, କେହୁ; କାହାଣସି ବ୍ୟକ୍ତି ତୀର୍ଥ ନ କଲ; ସାଧନ ନ କଲ ବା କେହି କଉଣସି ଉପାୟ ନ ହେବାରୁ ସେ ଦ୍ରୁପଦ ରଜାର ସନ୍ତଷ ହୋଇଲ ।
ତୀର୍ଥ—ସାଧନ ଉପାୟ । ( ପାଠାନ୍ତର ଅର୍ଥ )

୨୨୭ { କଉରେବ ବଳ ଭଞ୍ଜିନେ ସେ ଅଗ୍ନିରୁ ଜାତ ଯେ ଦ୍ରୋପଜା
{ ନପୁଂସକ ଶ୍ରୀଖଣ୍ଡୀ ଅଟଇ ମହାରଥୀ । ( ଙ, ଝ )

୨୩୫।୨ ଚତୁର୍ପାଦ ସ୍କନ୍ଧ ଖୁର ଯାହାର ସାଣକ୍ଷ । ( କ, ଛ )

୨୨୭।୧ ଭଞ୍ଜନା—ଭଞ୍ଜନା । ୨୩୧।୨ ନିକଣ୍ଟକ—ନିଷ୍କଣ୍ଟକ

ନୀଳେନ୍ଦ୍ରୀ ପ୍ରତ୍ୟକ୍ଷ୍ୟ ଯାହା ମହାକାୟ୍ ଷଣ୍ଢ
ପ୍ରେତ୍ୟକରେ ଗୋପ୍ୟ ହୋଇଲା ନବକୋଟି ବ୍ରହ୍ମାଣ୍ଡ । ୨୩୬ ।
ଗୋମୁଖ କେଶବ ଶୃଗ ଚରଣ ଗୋଷ୍ଠି
ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଚନ୍ଦ୍ରଙ୍କ ଫଳ ଶୃଗଗୋଷ୍ଠି । ୨୩୭ ।
ନୀଳ ଶ୍ୱେତ କ୍ଷୀର ଦଧି ଘୃତ ଯେ ଲବଣ
ମୁକୁତା ପ୍ରମାଣେ ପଯ୍ୟ ଯାହାର ଲମ୍ବିତ ରୋମେଣ । ୨୩୮ ।
ଆକାଶେ ଚନ୍ଦ୍ରାଅର୍କେ ନକ୍ଷତ୍ର ରୋମାବଳି
ବାଗନଧି ଅଗ୍ନିକୋଣେ ଗୋସିଂହ ଦଇତ ଦର୍ପ ଦଳ । ୨୩୯ ।
ନମୋ ନମୋ ଗୋମୁଖ କେଶବ ମହାପ୍ରଭୁ
ପରମଗତି ଲଭିବ ତୋର ନାମ କହୁଂ କହୁଂ । ୨୪୦ ।
ସ୍ୱାମୀ ପ୍ରିୟବକ୍ଷ ଭାରିଯା ଯାର କୋଳେ କମଳା
ଯମଦଅଗ୍ନି ମନ୍ଦରେ ଯାହାର ହୃଦେ ବନମାଳା । ୨୪୧ ।
ସ୍ୱାମୀ ଶୂଦ୍ରମୁନି ସାଚରାଳା ଦାସ ବନପ୍ରେ ଭଗତ
ଶ୍ରୀ ଗୋମୁଖ କେଶବଂକୁ ହୃଦେ ଭାବଇ ମୁଂ ନିତ୍ୟପ୍ରତି । ୨୪୨ ।
ଶୁଣିମା ସାଧୁଜନେ ମୋହର କାହାଣୀ
ଶୂନ୍ୟ ଶବଦ ଭେଦିଲି ନ ଶୁଣି ନ ଜାଣି
ଶ୍ରୀ ମହାଭାରଥ ଖିଲ୍ଲପର୍ବ ଅମୃତ ରସ ବାଣୀ । ୨୪୩ ।
ପରମ ପଦ ଦାୟିନୀ ଅଭୟେ ପିଙ୍ଗଳାକ୍ଷୀ
ତାହାର ପ୍ରସନ୍ନ ମୁଂ ଅଛୁଟ ଧର୍ମ ଇଚ୍ଛି । ୨୪୪ ।
ଶତେ ଅଶ୍ୱମେଧ ଫଳ ଶ୍ରୀ ମହାଭାରଥ ଶୁଣନ୍ତେ
ଯାହା ସେ କହିଲେ ମୁନି ପରାଶରଂକର ସୁତେ । ୨୪୫ ।
ଜଙ୍ଗେରପୁର ବାସିନୀ ପ୍ରସନ୍ନ ହେଙ୍ଗୁଳା
ସେ ମୋହୋର ହୃଦୟେଣ ଭୂଷଣ ତୁଳସୀ ରତ୍ନମାଳା । ୨୪୬ ।

---

୨୩୬।୧ ନୀଳମେଘ ପ୍ରାୟେକ ବସ୍ତାର କଳେବର ମହାଷଣ୍ଢ । ( ତ, ଥ, ନ )

୨୩୭ { ଗୋମୁଖ କେଶବ ଶୃଗ ଚରଣରେ ଶରଣ
{ ଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମ ଶୃଗ ଦଗ ଜାଣ । ( ଙ, ଥ )

୨୩୯।୧ ଆକାଶ ଶିର ଯାହାର ନକ୍ଷତ୍ର ରୋମାବଳି । ( ଚ, ଙ, ଠ )

୨୩୬।୧ ମହାକାୟ୍ ଷଣ୍ଢ—ଦଳିଷ୍ଠ ଷଣ୍ଢ ରୂପ ।

୨୩୬।୧ ଯାହା—ଯିଏ, ଯେ ।

ନିର୍ମଳ ନିଷ୍କଳଂକ ଯାହାର ମୂର୍ତ୍ତି ଗୋଟି
ମୁନିପଦ ବାକ୍ୟେ ମୁଂ ତାହାକଇଂ ଭେଟି । ୨୪୭ ।
କୃପାଜଳ ନନ୍ଦିନୀ ଯେ ବ୍ରହ୍ମାର କୋଳେ ଉତପତ୍ତି
ସର୍ବଜ୍ଞାର ବାକ୍ୟେ ଦେବୀ ନର୍ମଦା ସରସ୍ୱତୀ । ୨୪୮ ।
ଗୋପ୍ୟାନ ଭାଗୀରଥୀ ଚନ୍ଦ୍ରଭାଗା ନଦୀ
ଚନ୍ଦ୍ରୋପୃଳାଙ୍ଗୀଂ ଯେ ଯେ ଈଶାନ୍ୟ ଭାଗେ ଭେଦି । ୨୪୯ ।
ପରମ ସାଧବୀ ସେ ସମୂଳ ଜନେ ଚନ୍ତା
ଯୋଗେଣ ଯୋଗେଶ୍ୱରୀ ଅଭୟେ ବରଦାତା । ୨୫୦ ।
ନିର୍ମଳ ଭୁବନେ ଜମ୍ବୁ ଦ୍ୱୀପର ଈଶାନ୍ୟେ
ପରଶୁରାମ ପାଟଣା କଟକ ଯେ କନକାବତୀ ନଗ୍ର ବଦ୍ୟମାନେ ।୨୫୧।
କୁଶକେତୁ ବ୍ରହ୍ମା ସଞ୍ଚିତ ଯେଉଂଣ କୁଶସ୍ଥଳୀ
ଯୋଗିନୀ ବଳ ଘେନିଣ ତହିଂ ବାଳୁତ ରୂପେଣ ଖେଳ ବାଳୀ ।୨୫୨।
କଳକାଳ ବିଧ୍ୱଂସିନୀ ଗୋ ସାରଳା ନାମ ଚଣ୍ଡୀ
ବନ୍ଦନ୍ତା ବିଧାତା ସେ ଯେ ଅପାଦ ଦୁଖ ଖଣ୍ଡି । ୨୫୩ ।
ସେ ଦେବୀଂକ ତଳପ୍ୟେ ହୃଦଗତେ ମମ ଧ୍ୟାନ
ଶୂଦ୍ରମୁନି ସାରଳା ଦାସ ମହାଭାରଥ କଥନ । ୨୫୪—୩୭୪୦ ।

## ଭୀଷ୍ମଙ୍କର ଶରଶଯ୍ୟା

ବଇବସ୍ୱତ ମନୁ ପୁଚ୍ଛା କଲେକ ଅଗସ୍ତି
ଭୀଷ୍ମେ ଯେ ମୃତ୍ୟୁଭେଦ କହିଲେ ମକର ଶୁକଳ ପକ୍ଷ ନବମୀ ପାହାନ୍ତି ।୧।
ସଞ୍ଜୟେ କହିଲେ ହୋ ଶୁଣ ରାଜା ଧୃତରାଷ୍ଟ୍ର
ଭୀଷ୍ମଂକର ମୃତ୍ୟୁ ଯେବେ ହୋଇଲା ନିକଟ । ୨ ।
ଭୀଷ୍ମଂକର ଦୋଷ ନାହିଂ ପୁତ୍ର ତୋର କଲା ମନ୍ଦ
ଅର୍ଜୁନେ ଅନର୍ଘ ମୁକୁଟ ଦେଲା ନ ଜାଣି କୁଟଛନ୍ଦ । ୩ ।
ସେ ମୁକୁଟ ଶିରେ ବାନ୍ଧିଣ ଗଲା ଧନୁର୍ଜୟେ
ବାଅଂଢର ଭିତରେ ଯାଇଂ ଭୀଷ୍ମନ୍ତ କଲକ ବିନୟେ । ୪ ।

୧।୨ ଅର୍ଜୁନେ କଇଂ ମୃତ୍ୟୁଭେଦ କହିଲେ ଭୀଷ୍ମ ନବମୀର ରାତ୍ରି । (ଖ,ଥ,ନ)

ଅନେକ ରତ୍ନ ଅଳଂକାର ଅର୍ଜୁନ କାଯ୍ୟେ ମଣ୍ଡି
ପ୍ରଲମ୍ବିତ ହୋଇ ଶୁତଲ ବାହାର ଯେରୁଣ୍ଡି । ୫ ।
ମୁକୁଟ ଦେଖି ଭୀଷ୍ମେ ମାନଗୋବନ୍ଦ ପ୍ରାଯ୍ୟେ ମଣି
ଦ୍ୱାର କାଛେ ଲଗିଣ ଛୁଂକଲେ ଦେବ ଚକ୍ରପାଣି । ୬ ।
ଭୀଷ୍ମେ ବୋଇଲେ ଆମ୍ଭର ଆଷ୍ୟ ଧେନ ବ୍ରତ
ଶତ୍ରୁ ମାଶ ପଞ୍ଚୁକଟକେ ହୁଅ ଯେକଛନ । ୭ ।
ସଞ୍ଜୟେ ଜାଣିଲେ ଭୀଷ୍ମେ ପାଣ୍ଡବଂକର 'କା'ଟି
ଭେଦ କହ୍ୱ ବୋଇଲେ ତୋତେ ପ୍ରାପତ ହୋଉ ମୃଷ୍ଟି । ୮ ।
ଆହୋ ଧୃତରାଷ୍ଟ୍ର ଆଜର ସମରେ ଶ୍ରୀଖଣ୍ଡୀ ହୋଇବ ରଥୀ
ତାହାକଇଂ ଦେଖି ଭୀଷ୍ମେ ଶସ୍ତ୍ର ଗୁଡବେ ହୋଇବେ ବିରଥୀ । ୯ ।
ଭୀଷ୍ମେ ନାଶ ଗଲେଟି ସମର ସରିଲା
ହୋଇଲୁ ବିଅର୍ଥୀ କାର୍ଯ୍ୟ ତୋହୋର ନିଷ୍ଫଳ ହୋଇଲା । ୧୦ ।
ଯେମନ୍ତେ ମକର ଶୁକ୍ଳ ଦଶମୀର ଦିନ
ବୃହସ୍ପତିବାର କୃତ୍ତିକା ନକ୍ଷତ୍ର ଉତ୍ତରେ ରୋହିଣୀ ନକ୍ଷତ୍ର
ବିଦ୍ୟମାନ । ୧୧ ।
ସେ ଦିନ ବେଳ ଥାଉ ରହିଛନ୍ତି ସରସ୍ୱତୀ ନଦୀ କୂଳେ
ପ୍ରଭାତରେ ସଜ ଯେ ହୋଇଲେ ବେଳ ବଳେ । ୧୨ ।
କୁଳର ପିତାମହ ଭୀଷ୍ମଙ୍କର ମୃତ୍ୟୁଭେଦ ନିଯ୍ବତ
ଗ୍ୟାମିଜନ ପ୍ରସନ୍ନକଇଂ କୃଷ୍ଣ ମାଯ୍ବା ଯେ ମୋହିଲେକ ଚିତ୍ତ । ୧୩ ।
ହେ ଧୃତରାଷ୍ଟ୍ର ଆଜର ଯୁଦ୍ଧେ ଶ୍ରୀଖଣ୍ଡୀଂକ ଆଗ କରି
ରଣ ଗୋଳ ହୋଇବ କହିତ କ ପାରି । ୧୪ ।
ଶର ସନ୍ଧାନ କରି କ୍ଷୟ ଯିବେ ଶାୟୂନ୍ତନ
ତେଣୁ ସେ ଜଣିମେ ପାଣ୍ଡବ·ବଳ ସଇନ । ୧୫ ।
ଶ୍ରୀଖଣ୍ଡୀର ହେତୁ ଯେ ଭୀଷ୍ମ ଆଜ ଯେ ପଡବେ
ଇଚ୍ଛାମୃତ୍ୟୁ ଗାଙ୍ଗେବ ଶରଶଯ୍ୟା କରିବେ । ୧୬ ।
ଭୀଷ୍ମ ନାଶଗଲେ ସାଂଗ୍ରାମ ତ ସରିଲା
ହୋଇଲୁ ଅପ୍ରସିକ ପାରାଶର ଯାହା ବୋଇଲା । ୧୭ ।
ଶୁଣ ହୋ ମନୁରାଯ୍ୟେ ବଦସ୍ତି ଅଗସ୍ତି·ମହାମୁନ୍ୟ
ଶ୍ରୀ ମହାଭରଥ ଭୀଷ୍ମ ସମର ଦଶଦିନ । ୧୮ ।

---

୬।୨ କାଛେ—ଅତି ନିକଟରେ ।

ବୃହସ୍ପତିବାର ରୋହିଣୀ ନକ୍ଷତ୍ର ସମ୍ପୂର୍ଣ୍ଣେ
ଦୁଇ ଥାଠ ନିଦ୍ରା ତେଜି ଉଠିଲେ ବହନେ । ୧୯ ।
ନିତ୍ୟକର୍ମ ସାରଣ ରାଜା ଦୁର୍ଯୋଧନ
ମଣି ମୁକୁଟ ନେଇ ଥୋଇଲା ସନ୍ନିଧେ ଅରଜୁନ । ୨୦ ।
ପ୍ରସନ୍ନ ବଦନେ କୁରୁଇନ୍ଦ୍ର ନ ବୋଇଲେ କିଛି
ତେଣେ ବାହୁଡି ନନ୍ଦଘୋଷେ ବିଜୟେ ସର୍ବସାରଥୀ । ୨୧ ।
ପୂର୍ବ ପାଣ୍ଡବେ ପଶ୍ଚିମେ କଉରବେ ପଟୋଆର ଲାଗିଲେ ବେନି ବଳ
ଅନେକ ଦାନ ଦିଲେ ଭୀଷ୍ମେ ସର୍ବମଙ୍ଗଳ । ୨୨ ।
ମହା ସମ୍ଭ୍ରମରେ ବିଜୟେ ଶାନ୍ତନୁନନ୍ଦନ
ପଶ୍ଚିଆଣି ହୋଇ ଚଳିଲା ରାଜା କୁରୁମଣି । ୨୩ ।
ଦ୍ରୋଣେ କୃପେ କର୍ଣ୍ଣ ଶଲ୍ୟ ଯଦ୍ୟରଥ
ଶକୁନି ଦୁଃଶାସନର ଭୁଲେ ମାନଗୋବିନ୍ଦର ଅନେଶ୍ୱତ ଭ୍ରାଥ । ୨୪ ।
ରଥ ଗଜ ଅଶ୍ୱ ପିଠିରେ ଯୋଦ୍ଧାଏ ବିଜେ କରି
ହାଥେ ଧନୁ ଧରି ଏକମୁଖ ହୋଇଲେ ଯାଇଂ କରି । ୨୫ ।
ରଥ ଗଜ ଅଶ୍ୱନ୍ତ ଯେ ସାଜିଲେ ସମଦଣ୍ଡ
ଘୋର ବାଦ୍ୟ ଶବଦ କମ୍ପଇ ଭୂଅଖଣ୍ଡ । ୨୬ ।
ଆକାଶୁଂ ବିଜେ କଲେ ଦେବ ଭଗର ମହାମୁନି
ବେଦମନ୍ତ୍ର ପୋଥି କରେ ବୀଣାଦଣ୍ଡ ଘେନି । ୨୭ ।
ନାରଦଂକୁ ଦେଖିଣ ବିନୟ କଲେ ଆନନ୍ଦେ କୁରୁରାଜା
ଦ୍ରୋଣ କର୍ଣ୍ଣ ଶଲ୍ୟ କୃପେ ସମସ୍ତେ ନାରଦଂକୁ କଲେ ପୂଜା । ୨୮ ।
ନବମୀର ଦିନ ଶେଷେ ସମର ବିରସେ
ଭୀଷ୍ମଂକ ପ୍ରଲମ୍ବିତ ନାହିଂ ସେ ନାରଦଂକ ପାଶେ । ୨୯ ।
ନାରଦ ହସିଲେ ଭୀଷ୍ମଂକର ମୁଖ ଚାହିଂ
ଶେଷକାଳେ ପ୍ରାଣୀଂକ ଯେ କଥା ଗୋଚର ହୋଇବ କାହିଂ । ୩୦ ।
ତୁ ଏହା ଜାଣୁଛି କି ହୋ ରାଜା ମାନଗୋବିନ୍ଦ
ଆଜର ସମରେ ଭୀଷ୍ମଂକୁଛି ପଡିବ ପରମାଦ । ୩୧ ।
ଏହାଂକ କୁରୁପତି ଆଶା କର ତେଜ୍ୟା
ଭୀଷ୍ମଂକୁ ବୋଲ ହେ ତୁ ଆଜ ସମରକୁ ନ ଯା । ୩୨ ।

ଭାରଥ ଯୁଦ୍ଧ ଦେଖି ସମୟେ ଥାଉ ବ୍ରତ
କୁଳର ଶ୍ରେଷ୍ଠ ଅଟନ୍ତି ତାଙ୍କର ଥିବାହିଂ ସେ ଯୁଗନ୍ତ । ୩୩ ।
ଯେତେ କହି ନାରଦ ହୋଇଲେ ଅନ୍ତର୍ଦ୍ଧାନ
ଭୀଷ୍ମଙ୍କ ଆଗେ ଯାଇଂ କହଇ ଦ୍ରୁଯୋଧନ । ୩୪ ।
ହେ ଭୀଷ୍ମ ଅମଙ୍ଗଳ ତ ମୋତେ ଦଶଇ ବଡ ମନ୍ଦ
ତୁମ୍ଭନ୍ତ ପ୍ରମାଦ ପଡବ ବୋଲି ଆଜ ବୋଇଲେ ନାରଦ । ୩୫ ।
ବଦସ୍ୟନ୍ତ ଗାଙ୍ଗେବ ବାବୁ ତୁମ୍ଭେ ହୋ ଗଣିତା
କାହାର ବେଳେ ମେଣ୍ଟଣ ଯେ ହୋଇ କର୍ମର ଘଟିତା । ୩୬ ।
ମାତା ରଜ ପିତା ବୀର୍ଯ୍ୟ ସଙ୍ଗମ ଯେତେବେଳେ
ବହନ୍ତା ପୁରୁଷେ ଲେଖନ ତାହା କରନ୍ତ କପାଳେ । ୩୭ ।
ଜୟଶଙ୍ଖ ବାଦ୍ୟ କରଣ ଗାଙ୍ଗେବେ
ରଥରେ ବସିଲେ ଯାଇଂ ସୁମରି ବଦ୍ଧରାଜ ମାଧବେ । ୩୮ ।
ମନୁମଥ ସାରଥି ଯେ ବାହଇ ତୁରଙ୍ଗ
ଚଳନ୍ତ ରଥୀ ଯୋଦ୍ଧାୟେ ଅତି ବେଗୁଂ ବେଗ । ୩୯ ।
ଅଇଶାନ୍ୟେ ପାଣ୍ଡବେ ଯେ ଟଣ୍ଡିମେ କଉରବେ
ନନ୍ଦଘୋଷ ରଥ ଯେ ସାଜିଲେ ବାସୁଦେବେ । ୪୦ ।
ଗୋବିନ୍ଦେ ବୋଇଲେ ତୁ ହୋ ଶୁଣ ଫାଲଗୁନ
ଶ୍ରୀଖଣ୍ଡୀକ ସେନାପତି କରି ବେଗେ ଆସ ଘେନ । ୪୧ ।
ଅର୍ଜୁନ ବୋଇଲେ ହେ ଦେବ ଭୀଷ୍ମଙ୍କର କହନ୍ତେ
ନପୁଂସକ ଶ୍ରୀଖଣ୍ଡୀକୁ ମୁକୁଟ ବାନ୍ଧିବା କେମନ୍ତେ । ୪୨ ।
ସ୍ୱାମୀ ଯାହା ଯୋଗେ ଅଯାଚିକ ଲେକନ୍ତ କେବେହେଂ ନ ବରି
କାଳେ ପ୍ରମାଦ ପଡଇ ଶୁଣିମା ଦେବ ହରି । ୪୩ ।

---

୩୬।୧ ବଦସ୍ୟନ୍ତ ଗାଙ୍ଗେବ ବାବୁ ସବହେଂ ଗଣିତା । ( କ, ଚ )
୩୭।୨ "ବହନ୍ତା ପୁରୁଷେ ଲେଖନ ତାହା କରନ୍ତ କପାଳେ" ପାଠପରେ ( ଝ, ଙ ) ରେ ଅଧିକା ପାଠ:—
ଯେ କଥାମାନନ୍ତ ଭୟେ ଭଗତ ନ କର କୁରୁମଣି
ଆଜ ପାଣ୍ଡବ ବଳୁଂ ମର୍ଦ୍ଦିବି ଅନେକ ସଇନ । ( ଙ, ଝ )
୪୩।୧ "ସ୍ୱାମୀ ଯାହା ଯୋଗେ ଅଯାଚିକ ଲେକନ୍ତ କେବେହେଂ ନ ବରି" । ପାଠ ପରେ 'ଘ' ପୋଥିର ପାଠ କେବଳ ଗୋଟିଏ ପୋଥି ହୋଇଥିଲେହେଁ ତାହା ସଙ୍ଗତ ହେତୁ ପାଠରେ ନଆଗଲା ।

ଯାତ୍ରାକାଳେ ଯେବେ ଗୃଦ୍ଧଂଯାଇଂ ଅପୂର୍ବିକ ମୁଖ
ହାରଇ ସାଂଗ୍ରାମେ ସେ ପାଇ ବହୁତ ଦୁଖ । ୪୪ ।
ଯାତ୍ରାକାଳେ ଯେବେ ଯୋଗୀଂକ ଦେଖିଲେ
କାର୍ଯ୍ୟ ନାଶ ଯାଇଟି ବରେହ୍ଭା ଋଷି କହିଲେ । ୪୫ ।
ଯାତ୍ରାକାଳେ ଯେବେ ଗୃହ୍ଣିଂବ ନଷ୍ଟ ମୁଖ
ଅବଶ୍ୟ କାର୍ଯ୍ୟହାନି ହୋଅଇ ଚନ୍ଦ୍ରମୁଖ । ୪୬ ।
ଯାତ୍ରାକାଳେ ଯେ ଦେଖିବ ବିଧବା ହାଦେ ନାରୀ
ଅବଶ୍ୟ ବିଘ୍ନ ପଡ଼ଇ ବୁଝିବା ଦେବ ହରି । ୪୭ ।
ଯାତ୍ରାକାଳେ ଯେବେ ଦେଖିବ କେଶ ମୁକୁଳ
ଅବଶ୍ୟ କାର୍ଯ୍ୟ ନୋହଇ ଶୁଣ ଦେବଙ୍କର ବାଳ । ୪୮ ।
ଯାତ୍ରାକାଳେ ଯେବେ ଚ୍ଛିଂକନ୍ତି ପୁତ୍ର ଆଣ୍ଡ
ପ୍ରମାଦ ପଡ଼ଇ ଦେବ ମେଣ୍ଟଣ ନ ଯାଇ । ୪୯ ।
ଯାତ୍ରାକାଳେ ଯେବେ ରୋଦନ କରନ୍ତି ନାରୀଗଣ
ଅବଶ୍ୟ ମୃତ୍ୟୁ ହୋଅଇ ନ ଯାଇ ମେଣ୍ଟଣ । ୫୦ ।
ଯାତ୍ରାକାଳେ ଯେବେ ମଞ୍ଜାରୀକ ଦେଖି
ଅବଶ୍ୟ ପ୍ରମାଦ ପଡ଼ଇ ନ ଯାଇ ଉପେକ୍ଷି । ୫୧ ।
ଯାତ୍ରାକାଳେ ଯେବେ ଧରିବ ତଇଳର ନାମ
ଅବଶ୍ୟ ନାଶଯାଇ ସେ ଗମନ୍ତେ ସାଂଗ୍ରାମ । ୫୨ ।
କପାସିଆର ନାମ ଧରନ୍ତେ ନରୋଧ
ଏ ସବୁ କଥାମାନ ମୁନି କହିଛନ୍ତି ବିରୋଧ । ୫୩ ।
ଅଥବା କଣୁ କ ରଣେ ହାରିଲେହିଂ ହାରି
ନିସତ ପକ୍ଷ ମୋତେ ନ ବୋଲ ମୁରାରି । ୫୪ ।
ଏ ସବୁ ଯେତେ କଥାମାନ କହିଲି ବିଚାରି
ଏ ସବୁମାନଙ୍କେ ବିଘ୍ନ ପଡ଼ଇ ଶୁଣିମା ଦେବ ହରି । ୫୫ ।
ସ୍ୱାମୀ ନିସତ ହୋଇ କାର୍ଯ୍ୟ କରନ୍ତି ସେ ତେଜ୍ୟା
ତାହାଂକର ଜୀବନ ଅସାର୍ଥକ ଦେବରାଜା । ୫୬ ।

---

୫୬ { ସ୍ୱାମୀ ନିସତ ହୋଇଣ ଯେ କରନ୍ତି ଅବା କାର୍ଯ୍ୟ
{ ତାହାଂକର ଜୀବନ କି ସାର୍ଥକ ଦେବରାଜ । ଅଧିକାଂଶ ପାଠ ।
୫୧।୧ ମଞ୍ଜାରୀ—ବିରାଡ଼ି ।

ସ୍ୱାମୀ କୂଟ କପଟେ ଯେ କରନ୍ତ ସାଂଗ୍ରାମ
ଛତ୍ରୀ କୁଳକୁ ଦୂଷଣ ବୁଡଇ ସର୍ବ ଧର୍ମ । ୫୬ ।
ଅନେକ ମଣାଇ କର କହନ୍ତ ଶ୍ରୀପତି
ତଥାପି ସନମତ ନ କଲ୍ଲ ବିଚିତ୍ରବୀର୍ଯ୍ୟ ନାତି । ୫୮ ।
ସହଦେବକଇଁ ଠାରିଦିଲେ ବସୁଦେବର ବାଳେ
ମୁକୁଟ ବାନ୍ଧ ତୁ ନେଇ ଶ୍ରୀଖଣ୍ଡୀର କପାଳେ । ୫୯ ।
ଭୀଷ୍ମ ଅର୍ଜୁନ ପୂର୍ବେ ସମର ମହାଘୋର
ତେଣେ ସେନାପତି କଲେ ଶ୍ରୀଖଣ୍ଡୀକୁ ଯୁଧିଷ୍ଠିର ଠାକୁର । ୬୦ ।
ଅନେକ ଅଳଂକାର ଭୂଷଣ ତାର କାୟେ
ଖେଚରୀ ବିବାନ ସାରିଷେ ରଥ ଯେ ଗୋଟାୟେ । ୬୧ ।
କୃଷ୍ଣ ମେଘ ସାଦ୍ରିଶେ ତାର ଶ୍ୱେତ ବାଜୀ ତାଜ
ବୃନ୍ଦାଅର୍କ ଭୁବନକୁ କ୍ଷେପନ୍ତ ଗଜରାଜ । ୬୨ ।
ସାତ୍ୟକୀ ସାରଥି ଯେ ଶ୍ରୀଖଣ୍ଡୀର ରଥେ
ବାହଇ ସେ ତୁରଂଗମ ପବନ ଆଘାତେ । ୬୩ ।
ସୂର୍ଯ୍ୟ ମଣ୍ଡଳ ସାରିଷେ ଶ୍ରୀଖଣ୍ଡୀ ରଥ ଚଳ
ଆସନ୍ତେଣ ରଥବର ଶଲ୍ୟେ ଯାଇଂ ଓଗାଳ । ୬୪ ।
ସମରେ ଅଭୟେ ସେ ଶ୍ରୀଖଣ୍ଡୀ ମହାଯୋଧୀ
ଛତ୍ରୀବର ସୋହୋଡ ସେ ତୁଲାକର୍ଣ୍ଣ ବିଦ୍ୟା ସାଧି । ୬୫ ।
ପର୍ବତ ନକଳଇ ଯାହାର ନାରାଜ ବନ୍ଧନେ
କେ ତାହା ସହିବ ହୋ ମାନବ ଜନ୍ମ ମାନେ । ୬୬ ।
ବଡ଼ତ ସମର ସେ କଲେ ଗୟେଗୁରୁ ଶଲ୍ୟ
ଭାରଥ ଯୁଦ୍ଧେ ସେ ଅଟନ୍ତ ମହାମଲ୍ଲ । ୬୭ ।
ନିର୍ଘାତ ପ୍ରାୟେକ ଯେ ଶୁଭଇ ଗୁଣନାଦ
ଓହୋଳୁଳ ବୁଡନ୍ତି ଯେ ବାଦ୍ୟର ଶବଦ । ୬୮ ।
ଭୀଷ୍ମେ ସମର କରନ୍ତ ଅର୍ଜୁନର ତୁଟଲେ
ଆକାଶ ଅନ୍ଧକାର ହୋଇଅଛି ଭୀଷ୍ମଙ୍କର ଶର ବନ୍ଧିଲେ । ୬୯ ।

---

୬୮।୨ ଦେଖିଣ ପାଣ୍ଡବ ବଳ ହୋଇଲେ ବିଷାଦ । ( ଅ, ଥ, ନ )

ଯେକାବେଳେ ଶତେ ଶତେ ନାରାଜ ଭୀଷ୍ମେ କୋପେ ବିନ୍ଧି
ପ୍ରତିଶରେ ଅରଜୁନ ପକାଇଲା ତାହା ଛେଦି । ୭୦ ।
ଦିଗମ୍ବରେ କମ୍ପନ୍ତି ଭୀଷ୍ମଙ୍କର ଶହସ୍ର ଗହନେ
ଆକାଶେ କମ୍ପନ୍ତି ସମସ୍ତ ବୃନ୍ଦାଅର୍କମାନେ । ୭୧ ।
ଗହଳ ଧନ୍ଦୋଳ ଯେ ଗଗନଅନ୍ଧକାର
ଆକାଶେ ରଶ୍ମି ବୁଡିଲେ ଯେ ଦେବ କରତାର । ୭୨
ଯେସନେ ଅନଳ ଦହଇ ତିରଣ ରାଶି
ଅର୍ଜୁନ ଶହସ୍ରମାନ ଭୀଷ୍ମ ଯେ ଝିଂଡାସି । ୭୩ ।
ଅନ୍ତରେକ ବାଣ ଯେ ବିନ୍ଧନ୍ତି ଅନର୍ପାପେ
ଆବର ଯୋଦ୍ଧା କେ ରହିବ ଭୀଷ୍ମଙ୍କର ପରତାପେ । ୭୪ ।
କୋପେଣ ଗାଙ୍ଗେ ଯେ ସମରେ ବିମୁଖ
ପୀଡିତ ମହାକ୍ଷୁଧା ଶଙ୍କରେ ମହାଦୁଃଖ । ୭୫ ।
ଶଙ୍କର ଅସାଷ୍ଟମେ ଗଙ୍ଗାର ନନ୍ଦନ ମହାକୋପେ
ରୁଦ୍ର ଶରେକ ଭୀଷ୍ମେ ବିନ୍ଧିଲେ ଗରୁଡ଼ାପେ । ୭୬ ।
ବିକଟ ଦନ୍ତ ଯେ ବିକରାଳ ଘୋର ରୂପେ
ବିଜେକର୍ତ୍ତ୍ରିକଠାର ଚରଣେ ଗଗନ କ୍ଷେପେ । ୭୭ ।
ବିରାଜଇ ଶହସ୍ର ଯେ ଶୁଦ୍ଧ ସ୍ଫଟିକ ତେଜ ଜାଣି
ଜଳେ ଦିଶନ୍ତି ଯେହ୍ନେ ଶୁଦ୍ଧ ଅର୍କମଣି । ୭୮ ।
ମହାଭାର କର୍ମିଲା ସେ ନାରାଜ ଆସନ୍ତେ
ଯୋଦ୍ଧାଦ୍ୱୟ ଅନ୍ତର ହୋଇଲେ ଲୁଚିଲେ ହାଦେ ରଥେ । ୭୯ ।
ଶ୍ରୀକୃଷ୍ଣ ଚାହିଁଲେ ଯେ ଅର୍ଜୁନର ମୁଖ
ଭଇରବା ଶହସ୍ର ଭୀଷ୍ମଙ୍କଲା ବାବୁ ଅର୍ଜୁନ ଯେହ୍ନା ରଖ । ୮୦ ।
ତୁ ଯେବେ ଶହସ୍ର ସମ୍ଭାଳି ନୁଆରିବୁ ରେ ବୀର ପାର୍ଥ
ହନୁମନ୍ତଙ୍କଇଂ ବୋଲିବା ସେ ଗୋପ୍ୟାନ କରୁ ରଥ । ୮୧ ।

---

୭୧ { ଦେବତାମାନେ କମ୍ପନ୍ତି ଭୀଷ୍ମଙ୍କର ଶହସ୍ର ଗହନେ ।
ଆକାଶରେ ଆଦିତ୍ୟ ହୋଇଲେ ଗୋପ୍ୟାନେ । ( ଙ, ଝ, )
୭୩।୨ ଅର୍ଜୁନର ଶରମାନ ଭୀଷ୍ମଦେବ ନାଶି । ( ଗ, ଙ, ଛ, ଝ )
୮୧।୨ ହନୁମନ୍ତକୁ ବୋଇଲେ ତୁ ପାତାଳେ ଗୋପ୍ୟକର ରଥ । ( ଝ, ଘନ,)

ନାଗପୂଣ ବଚନେ ଯେ ବୀର ଫାଲଗୁନ
ଆସ୍ତି ନାସ୍ତି ନ କହ୍ନ ସେ ହୋଇଲାକ ତୁନ । ୮୨ ।
ଗୋବିନ୍ଦେ ବୋଇଲେ ବାବୁ ସମ୍ଭାଳ ବୀର ହନୁ କପି
ଭଇରବା ଶହସ୍ତ୍ରେ ନାକ ସମସ୍ତେ ହୋଇ ଧାପି । ୮୩ ।
ପୃଥୀ ଘୋଟିଲା ଯେ ମହାରୁଦ୍ର ତେଜ
ଯେତେକ୍ଷଣି ଆମ୍ଭେ ନାଶଯିବା ସଚରାଚର ହୋଇବ ଦହନ । ୮୪ ।
ଯେତେକାଇଁ ପ୍ରତିକଛି ଶହସ୍ତ୍ର ନ ଜାଣଇ ସର୍ବସାକ୍ଷୀ
ତୋହୋର ବୁଦ୍ଧି ବଳରେ ବାବୁ ପାରିବା ଯେଥୁ ବେଳେ ବଞ୍ଚି । ୮୫ ।
ଯେତେ ଶୁଣି ଅଞ୍ଜନା ତନୟେ ବିଶ୍ୱରୂପେ ବ୍ୟାପି
ଧ୍ୱଜେ ଥାଇ ନନ୍ଦଘୋଷ ରଥ ତାହାଲକୁ ଗୁପି । ୮୬ ।
କଣସ୍ତୁ ଗିରି ସମାନେ ଯେବଣ ନନ୍ଦଘୋଷ
ହନୁମନ୍ତ ଗୃପନ୍ତେ ସେ ହୋଇଲା ଅଦୃଶ୍ୟ । ୮୭ ।
ହାବୋଡ଼ ନ ପାଇ ସେ ରୁଦ୍ରଶର କାଶୀ
ଶୂନ୍ୟ ହୋଇ ଲଜ୍ଜାୟେ ଗଲା କପିଳାସବାସୀ । ୮୮ ।
ଧାଡ଼କାରେ ଟେକାଇଲା ହନୁ ରଥ ବସାଇଣ ଅଙ୍ଗୁଷ୍ଠି
ପାତାଳ ଭୁବନୁଁ ନନ୍ଦଘୋଷ ରଥ ଉଠି । ୮୯ ।
ରୁଦ୍ରଶର ପେଷି ଭ୍ରଷ୍ଟେ ହୋଇଛନ୍ତି ନଚନ୍ତି
ଶହସ୍ତ୍ରକୁ ତଳସ୍ତେ କରି ନରୋପନ୍ତି ପାଣ୍ଡବନ୍ତି । ୯୦ ।
ଭାଳନ୍ତି ଭ୍ରଷ୍ଟେ ଭଲ କ୍ଷିଦ୍ର କହିଲ ଅର୍ଜୁନକୁ ଆଜ ରାତି
ଯେ ଶହସ୍ତ୍ର ବାଢାନ୍ତେ ପାଣ୍ଡବେ କ ପାଇବେ ଜୀବନ୍ତି । ୯୧ ।

---

୮୩ { ଗୋବିନ୍ଦ ବୋଇଲେ ତୁ ଶୁଣ ହନୁମନ୍ତ
ଭଇରବା ଶହସ୍ତ୍ର ପେଷିଲେ ଭ୍ରଷ୍ଟେ ହୋଇ କୋପଚନ୍ତ । ( ଧ, ଠ ) }

୮୪। ପୃଥୀ ଘୋଟି ଆସଇ ଭଇରବା ଶହସ୍ତ୍ର । ( ଧ, ଠ )

୮୫। ତୋହୋର ବୁଦ୍ଧିବଳେ ଯେ ବେଳେକ ପାରବୁ ରଖି । (କ,ଖ,ଛ,ଞ,ଟ,ଥ)

୮୮। ଶୂନ୍ୟେ ଯାଇ ରହିଲା ସେ କପିଳାସ ସ୍ୱର୍ଗବାସୀ । ( ଞ, ଥ, ନ )

୮୯। ମହାତଳ ଭୂମିରୁ ଯେ ନନ୍ଦଘୋଷ ଉଠି । ( ଞ, ଥ, ନ )

୯୧। ଯେ ଶହସ୍ତ୍ର ପାତେ ଟି ପାଣ୍ଡବେ ଛନ୍ତି ଆଉ ବୃଥା । ( ଖ, ଞ, ଥ, ନ)

ସେହିକ ଲମ୍ଭେ କରି ଭୀଷ୍ମେ ନିଗଲ ବେନି ଆଖି
କୃଷ୍ଣର ଦର୍ପେ ପାଣ୍ଡବନ୍ତ କି ହୋଇବ ଆଜ ରଖି । ୯୨ ।
ଏମନ୍ତ ସମସ୍ତରେ ଅର୍ଜୁନ ଧାଇଁକାରେ
ବିନ୍ଧିଲା ବାସେବ ଯେ ଗାଣ୍ଡିବା ତୀକ୍ଷ ଶରେ । ୯୩ ।
ପଡନ୍ତେ ଭୀଷ୍ମ ରଥ ହସ୍ତି ହୋଇଲେକ ସର୍ବଚୂନା
ଧନୁ ଦ୍ରୋଣ ଛେଦଣ ସେ ଭେଦିଲା ଭୀଷ୍ମଙ୍କର ବଜ୍ରସେହ୍ନା । ୯୪ ।
ରଥଭଗ୍ନ ହୋଅନ୍ତେ ଭୀଷ୍ମେ ହୋଇଲେ ଉଦ୍ବିଗ୍ନଶାସ୍ତ୍ରୀ
ଅସାଷ୍ଟମ ଅଚେତ ମୋହେ ଭୀଷ୍ମେ ପଡିଲେକ ମସ୍ତି । ୯୫ ।
ହାବୋଡା ଶରେ ଯହୁଂ ପଡିଲେ ଗାଙ୍ଗେବ
କ୍ଷଣେକେ ମୋହ ଚେଳ ପାଇଲେ ସେ ଜୀବ । ୯୬ ।
ପୁଣ ଆନ ରଥେକ ଯୋଚି ଆଣିଲା ସାରଥି
ଧାଉଁକାରେ ରଥେ ବଜସେ ଭୀଷ୍ମ ମହାରଥୀ । ୯୭ ।
ଧାଉଁକାରେ ଉଠିଣ ଭୀଷ୍ମେ ବେନି କରେ ଧଇଲେ ଭୂଷଣ୍ଡୀ
ଦେଖିଲେ ଏଣୁଖାର ତୁରଙ୍ଗମ ଚଢି ଆଗ ହୋଇଛି ଶିଖଣ୍ଡୀ । ୯୮ ।
ପୁଣିହିଂ ଭୀଷ୍ମେ ଯେ ବିଗୃହାଲେ ମନ
ଯାହାବେଳେ ଅଇଲୁ କେଉଣ ଲକ୍ଷଣ । ୯୯ ।
ଯାହାକାଳେ ଅଯାନ୍ତିକ ଲୋକନ୍ତ ଦେଖିଲେ
ଧର୍ମନାଶ ଯାଇଛି ଅନକୂଳ ଆରମ୍ଭିଲେ । ୧୦୦ ।
ଅଥବା ବଞ୍ଚିତ ଯେଉଣ ଜନ ସ୍ନେହା
ଯମ ଦେବତା ବନୁ ତାକୁ ଆନ ନାହିଂ ସାହା । ୧୦୧ ।

---

୯୨ । ୨ କୃଷ୍ଣର ପ୍ରସାଦେ ପାଣ୍ଡବେ ନୁହଂନ୍ତ ନିରମାଖି । ( ଓ, ଥ, ନ )
୯୩ । ୨ ବିନ୍ଧିଲା ସବ୍ୟସାଚୀ ହାବୋଡା ଯେ ଶରେ । ( ଓ, ଥ, ନ, ଠ )
୯୫ । ୨ ମୋହେଣ ମୂର୍ଚ୍ଛାଗତ ଗଲେ ଭୀଷ୍ମେ ପଡିଲେକ ମହୀ । ( ଥ, ଓ, ଝ )
୯୬ । ୨ ମୋହ ତେଜି ଭୀଷ୍ମେ କ୍ଷଣେ ପାଇଲେକ ଚେତ । ( କ, ଙ )

୯୬ { ହାବୋଡା ଶର ବାଜି ମୂର୍ଚ୍ଛିତ ଭୀଷ୍ମଙ୍କର କାୟେ
ମୋହ ତେଜିଣ ଭୀଷ୍ମ କ୍ଷଣକେ ଚେତନା ପାୟେ । ( ଓ, ଥ, ନ )
ହାବୋଡ ଶରହସ୍ତେକ ଯେ ବିନ୍ଧିଲେ ପାର୍ଥିବ ।
ମୋହେ ପଡିଲେ ସେ ହୋଇଣ ଅଚେତ । ( ଟ , ଢ )

୯୮ । ୨ ଦେଖିଲେ ଆଗେ ରଥେକ ଚଢିଅଛଇ ଶ୍ରୀଖଣ୍ଡୀ । ( ଙ, ଝ, ଠ )

ତ୍ରିକଣ୍ଟକ ଶର ଘାଏ ଭୀଷ୍ମଙ୍କୁ ବିନ୍ଧିଲା ଶିଖଣ୍ଡୀ
ମଦନ ଆରତେ ଭୀଷ୍ମଙ୍କ ସେ ଶରୀର ତ୍ରିପଣ୍ଡି । ୧୦୨ ।
ମନ୍ଦନେ ଘାର ହୋଇଲା ଯେ ଭୀଷ୍ମଙ୍କର ବପୁ
ଅମ୍ବା ସୁନ୍ଦରୀ ଶିଖଣ୍ଡୀ ତନ୍ଦ୍ରଙ୍କ ଯେ ରିପୁ । ୧୦୩ ।
କସ୍ତୂରୀ ରେଖ ଜାଣି ଭୀଷ୍ମଙ୍କର ରୋମାବଳୀ
ଶିଖଣ୍ଡୀର ନାରାଚ ଘାତେ ଶରୀରୁ ମହାରେନ୍ଦ୍ର ଢଳି । ୧୦୪ ।
ନୟନ ନାସିକା କର୍ଣ୍ଣ ତୁଣ୍ଡ ଫୁଟି
ବରଷିଲା ନବଦ୍ୱାର ରୁଧିର ସର୍ବଘାଟି । ୧୦୫ ।
ଜନଜନ୍ତୁ ବିଘାତେ ଯେସନେ ହୋଇ ସର୍ପ
ଅବିଚ୍ଛନ୍ନେ ମହାରସ ଗଲନ୍ତ ଭାଙ୍ଗିଲା ଭୀଷ୍ମଙ୍କର ଦର୍ପ । ୧୦୬ ।
କୁକ୍ଷି ହୃଦପଞ୍ଜର କର ଚରଣ ଅଙ୍ଗୁଷ୍ଠି
ଇଡ଼ା, ପିଙ୍ଗଳା, ଶିଶୁମୂନା ସୁସ୍ଥ ସମସ୍ତ ଦ୍ୱାର ଫୁଟି । ୧୦୭ ।
ପୀଡ଼ିଲା ଅନଙ୍ଗ ଯେ ମାଡ଼ିଲା ଚନ୍ଦ୍ରକଳା
ତୁଟିଲା ବଳ ଦର୍ପ ହୋଇଲେ ଭେଳିଲା । ୧୦୮ ।
ଯେସନେକେ ଶରୀର ରମଇ ରତି ରସେ
ଭୀଷ୍ମଙ୍କର ଶରୀର ହୋଇଲା ତେସନ ସାଦୃଶେ । ୧୦୯ ।
ଶରୀରକୁ ପ୍ରାଭବଇ ଲେଜେ ରେତ ଗଳିଲେ
ସର୍ବେ ସରସେ ଯେ ଗମଇ ଚଞ୍ଚଳେ । ୧୧୦ ।
ନଉ ସହସ୍ର ବରଷ ଯେବଣ ଅଟଳ ଝାନ୍ଦୁ
ଅମ୍ବାର ଦ୍ରଶନ ମାତ୍ରକେ ତୁଟିଲା ସର୍ବବନ୍ଧୁ । ୧୧୧ ।
ଭୀଷ୍ମଙ୍କର ଅସାଷ୍ଟମେ ଭଜିଲେ ସର୍ବ ସଇନ
ସମର ରନ୍ଧ୍ର ବୋଲ ଯେ ଶୁଭିଲା ଘୋର ଧ୍ୱନ । ୧୧୨ ।
ଶୁଣ ବଇବସ୍ୱତ ମନୁ ବଦଯୁକ୍ତ ଅଗସ୍ତି
ଯଷ୍ଟି ଖଣ୍ଡି ହରାଇ ଅନ୍ଧ ଯେସନେକେ ବର୍ତ୍ତି । ୧୧୩ ।
କଉରବେ ବଳର ଯେ ଭାଙ୍ଗିଲା ମୁରାଠ
ବାନ୍ଧବା ଆମ୍ଭା ପରି ଯେ ହୋଇଲେ କୁରୁଥାଠ । ୧୧୪ ।

---

(୧୧୧) ତେଣୁ ଶିର ଛୁଟିଗଲା ଭୀଷ୍ମଙ୍କର କନ୍ଧୁ । ( ଖ, ଘ )
୧୧୩) ଯଷ୍ଟି ଖଣ୍ଡି ହରାଇ ଅନ୍ଧ ହୋଇଥିଲେ ଯେସନେ ପ୍ରବୃ । ( ଛ, ଝ, ଟ )

ଧୀମନ୍ତ କଉରବେ ଯେ ଭୀଷ୍ମଙ୍କ ସନ୍ନିଧାନେ
ଦେଖିଲେ ଗାଙ୍ଗେୟ ଯେ ବିରସ ବଦ୍ୟମାନେ । ୧୧୫ ।
ଭୀଷ୍ମଙ୍କର ଅବସ୍ଥା ଯେ ଦେଖିଣ ଧୃତରାଷ୍ଟ୍ରି
ଦକ୍ଷିଣ ହାଥ ନେଇ ହାଲକ ଲଲାଟ ପାଟି । ୧୧୬ ।
ହେ ପିତା ଯମଦଅଗ୍ନି ନନ୍ଦନ ପର୍ଶୁରାମେ
ଯାହାକଇଂ ହାରିଲେ ଦୁସହ ସାଂଗ୍ରାମେ । ୧୧୭ ।
ଯାହାର ଧନୁ ଧରନ୍ତେ କମ୍ପଇ ଅସକନ୍ଦ
ତୋତେ ଏସ ବୋଲିବ ହୋ କର୍ମ ମୋର ମନ୍ଦ । ୧୧୮ ।
ଆହ୍ମ୍ଭ ହେ ପିତା ଯେତେବ କହିଥାନ୍ତୁ ମୋତେ ଯେହା
ପାଣ୍ଡବେ ବିକାଶ ନୁହନ୍ତ ତୋହୋର ଅସାହା । ୧୧୯ ।
ଭୀଷ୍ମଙ୍କୁ କୋଳେ ଧରି ସେ ମାନରନ୍ଦ୍ରବ୍ରତୀ
କର୍ଣ୍ଣ ଶଲ୍ୟ ଦ୍ରୋଣ ଶକୁନ ଧୃଶାସନ ସମସ୍ତେ ବେଢିବନ୍ତ । ୧୨୦ ।
ସଞ୍ଜୟେ ବିଦୁର ବୁଲେ ବଜୟେ ଧୃତରାଷ୍ଟ୍ର
ଯେ ସମୟେ ପୁଅନ୍ତ ମୋର ହାଲୁ ଯେତେ କଷ୍ଟ । ୧୨୧ ।
ତୁ ଯେହା ସଞ୍ଜୟେ କରି କର୍ମେ ନ କହିଲୁ ଆଗହ୍ମ୍ଭ
ଭବିଷ୍ୟ ଗ୍ୟାଂତା ନୋହଇ ଜାଣିବ ବା କାହ୍ମ୍ଭ । ୧୨୨ ।
ବୋଇଲୁ ଯେ ସମରେ କୃଷ୍ଣ ଅର୍ଜୁନନ୍ତ ମାରି
ପଞ୍ଚୁରାଜ୍ୟେ ତୋତେ ଯେକାଙ୍କେ କରିବ ଅଧିକାରୀ । ୧୨୩ ।
ମୁହିଂ ତୋହୋର ବଚନକୁ ଯେ ଆଶ କଲି ପିତା
ମହାତଂକ ବଚନ ଯେବେ ହୋଇଲା ଅନ୍ୟସ୍ଥା । ୧୨୪ ।
ସ୍ୱାମୀ କଞ୍ଚବେଢ ବଂଶକୁ ତୁ ପ୍ରାଣର ମଉନ୍ଧି
କେବେହେଂ ନ ଗୁଡିଲା ମୋର ଗଳ୍ପତ କୁଷ୍ଟବ୍ୟାଧି । ୧୨୫ ।
ଭୂରିସବାୟେ କୋଳ କରି ଧରିଲେ ଭୀଷ୍ମଙ୍କୁ
ହୃଦରେ ଭୁଜ ଦେଇ ଯେ ଆବୋରିଲେ ତାହାଂକୁ ।୧୨୬ ।
ଯେସନେକ ଚରିତ ଆଗହ୍ମ୍ଭ ଯେବେ ଜାଣୁ
ଯେହୁ କୁରୁ ସାଗରେ କର୍ମେ ଯେହା ଆଦ୍ୟହ୍ମ୍ଭ ନ ବଖାଣୁ । ୧୨୭ ।
ଦ୍ରୋପଦର ନନ୍ଦନ ଶ୍ରୀଖଣ୍ଡୀ ଯେତେବ ତୋତେ ଯେତେ ରିପୁ
ଭରଣ ପରାୟେ କରି କାଟନ୍ତ ତାର ବପୁ । ୧୨୮ ।

ଭୂରିସବାଏ ବୋଇଲେ ହୋ ତବ କର୍ତ୍ତବ୍ୟ ଯେତେକ ହୋଇଲା
ଶଶାର ପ୍ରାକ୍ରମେ ଯେବେ ସିଂଘ ନାଶଗଲା । ୧୨୯ ।
ଯେବେହେଂ ଆଗ୍ୟାଂ ଦେସି ସମରେ ମାରିବ ଶ୍ରୀଖଣ୍ଡୀ
ତିରଣ ପ୍ରମାଣେ ମାଂସେ କାଟିବ ଖଣ୍ଡି ଖଣ୍ଡି । ୧୩୦ ।
କହୁଂ କହୁଂ ଭୂରିସବାଏ ହୋଇଲେ ମହାକ୍ରୋଧ
ହିଗ ଅନ୍ଧାର ହୋଇଲାତ ନ ଫୁରଇ ବୁଦ୍ଧି । ୧୩୧ ।
ଯେତେକ ଆରମ୍ଭ ପାତିଲୁ କମ୍ପେ ଆଣି
ବୃକ୍ଷକୁ ଉଠାଇଣ ଯେବେ କାଟିଲୁ ନିଶୁଣୀ । ୧୩୨ ।
ଭୀଷ୍ମେ ବୋଇଲେ ସେ ଅଟଇ ସ୍ତ୍ରିଗଜନ
ତାହାକୁ କେମନ୍ତେ ନାଶ କରିବ ସାଂଗ୍ରାମ । ୧୩୩ ।
ମୋହୋର ଦର୍ପେ ନାଶ ନ ଯାଇ ଶ୍ରୀଖଣ୍ଡୀ
ସମସ୍ତ ସଞ୍ଚିଲା ହରି ପାଣ୍ଡବ କୁଳ ମଣ୍ଡି । ୧୩୪ ।
ଭୀଷ୍ମେ ବୋଇଲେ ଆମ୍ଭେ ନାଶଗଲୁଂ ଶ୍ରୀଖଣ୍ଡୀର ସମରୁଂ
ଧୃଷ୍ଟଦ୍ୟୁମନ ହାଥେ ନାଶଯିବେ ଦ୍ରୋଣଗୁରୁ । ୧୩୫ ।
ଭୀମସେନ ନିପାତିବ ଧୃତିରାଷ୍ଟ୍ରର ଶତେକ ତନଯେ
କର୍ଣ୍ଣ ନାଶ ଯିବେଟି ଅର୍ଜୁନର ଶର ଘାଏ । ୧୩୬ ।
ଯୁଧିଷ୍ଠିର ସମରେ ନାଶଯିବେ ରାଯେନ୍ଦ୍ରୁ ଶଲ୍ୟ
ଶକୁନି ନାଶଯିବ ସହଦେବ କୋପାନଳେ । ୧୩୭ ।
କୃପ ଅଶତ୍ଥମା ତ ସମରେ ଅବରଣି
ଭୂରିସବା ବାହ୍ଲିକ ସୋମଦତ୍ତ ଯେହ୍ନାନ୍ତ କେ ବା ଗଣି । ୧୩୮ ।
ବାବୁ ମାନଗୋବିନ୍ଦ ତୁ ଯେବେହେଂ କର ବୁଦ୍ଧି
ବାସୁଦେବନ୍ତ ହେନ ତୁ ଯେବେ କଥାକର ସନ୍ଧି । ୧୩୯ ।
ଆହୋ ଦୁଯୋଧନ ପିତା ଶାନ୍ତନୁ ମୋର ମାତା ହାଦେ ଜାହ୍ନବୀ
ଇଚ୍ଛାଏ ମୃତ୍ୟୁ ମୋହୋର ବାଞ୍ଛାଏ ନିର୍ଜ୍ଜ୍ଵବା । ୧୪୦ ।
ମୋତେ ଜିଣିମାକୁ ପାଣ୍ଡବଂଙ୍କର କମ ବୁଦ୍ଧି
ଆବର ପ୍ରାପତ ଜାହ୍ନିଂ ତୋତେ ହୋଇବାକ ରାଜ୍ୟବଧି । ୧୪୧ ।

---

୧୩୮।୧ ଅବରଣି—ଯେ ବରଣ ହୋଇନାହିଁ, ଅନିମନ୍ତ୍ରିତ ।

ପୁଣ ବଦସ୍ତି ଗାଙ୍ଗେୟ ଯେ ଶୁଣ ମାନଗୋବିନ୍ଦ
ପାଣ୍ଡବଂକର ହୁଲେ ତୁମ୍ଭେ ନ କର ଦ୍ୱନ୍ଦ ବାଦ । ୧୪୨ ।
ଛାଡମେଲ ତୋହୋର ଲୋଭ ମୋହ ଆତ୍ମାରାଗ
ଯୁଗତେ ସୋଦର ସେ ପାଣ୍ଡବେ ଅଛି ଭାଗ । ୧୪୩ ।
ମାନଗୋବିନ୍ଦ ବୋଇଲା ତାତ ମୋ ନୋହଇ ଯୁଗତେ
ସୂଚିକ ସୀମା ନ ଦଅଇଂ ଶରୀରେ ପ୍ରାଣ ଥିବା ପର୍ଯ୍ୟନ୍ତେ । ୧୪୪ ।
ଶୁଣିଣ ମଜ୍ଜନବ୍ରତ ଯେ ହୋଇଲେ ଗାଙ୍ଗେୟ
ପ୍ରତଗ୍ୟାଂ କର ପ୍ରତିବାକ୍ୟ ଯେ ବାଳକ ରାଧେୟ । ୧୪୫ ।
କର୍ଣ୍ଣ ବୋଇଲା ଭୀଷ୍ମେ କହିଲ ଯେତେକ ବାଣୀ
ଶରୀର କମ୍ପଇ ମୋହୋର ତୁମ୍ଭର ବାକ୍ୟ ଶୁଣି । ୧୪୬ ।
ବଡିଲ୍ କଉରେବ ଥାଠେ ପାଣ୍ଡବେ ତୋର ପ୍ରୀତି
ମୃତ୍ୟୁଭେଦ କହିଲ୍ ତୁ ପାଣ୍ଡବନ୍ତ ପରବଦନ ରାତି । ୧୪୭ ।
ରାଜ୍ୟ ବୁଡାଇବାକୁ କଲୁ ତୁ ଦୁର୍ଯୋଧନକୁ
ତୁ ଯେବେ ଧର୍ମ ଛାଡଲୁ ଧର୍ମ ହାଦେ ନ ଛାଡଇ ସେହାକୁ । ୧୪୮ ।
ତୋତେ ଆଶକରି ଆମ୍ଭେ ଅପସରି ଥିଲୁଂ
ଅନେକ ସଇନ ସେନାନ୍ତ ତୁହି ସେ ନାଶ କରାଇଲୁ । ୧୪୯ ।
ଆହୋ ଭୀଷ୍ମ ଲାଘବ ଯୁଦ୍ଧ ସରିଲା ଆଜହୁଂ
ଯେବେ ସେ ମାନଗୋବିନ୍ଦ ପଞ୍ଚ କଟକେ ହୋଇବ ମହାପ୍ରଭୁ । ୧୫୦ ।
କର୍ଣ୍ଣ ଦ୍ରୋଣ ଅଶ୍ୱତ୍ଥମା ଶଲ୍ୟ କୃପ ଥାନ୍ତେ
ତୁ ସେ ନ ଦେଖିବୁ ପାଣ୍ଡବେ ବ୍ରତନ୍ତ କେମନ୍ତେ । ୧୫୧ ।
ଭୀଷ୍ମେ ବୋଇଲେ ଆମ୍ଭେ ଛାଡନ୍ତୁ ଶରୀର
ଆଜର ଅଷ୍ଟ ଦିବସ ରହି ଦେଖିବୁଂ ସମର । ୧୫୨ ।
ଭୀଷ୍ମେ ବୋଇଲେ ବାବୁ ତୁ ଶୁଣ କୁରୁରାଜା
ଯେଠାବ ଗୋଟିରେ ମୋତେ କର ଶରଶଯ୍ୟା । ୧୫୩ ।

---

୧୪୪।୨ ଭୂଲାର୍ଦ୍ଧେ ଭୂମି ନ ଦେବ ଜୀବନ ଥିବା ପର୍ଯ୍ୟନ୍ତେ । ( ଡ, ଥ, ନ )
୧୫୧।୨ ତୁ ନଯ୍ୟନେ ଦେଖିବୁ ପାଣ୍ଡବେ ବୃତନ୍ତ କେମନ୍ତେ । ( ଥ, ନ, ଡ, ଠ)
୧୫୨।୧ ଭୀଷ୍ମେ ବୋଇଲେ ଆମ୍ଭେ ନ ଛାଡବୁ ଶରୀର । ( ଥ, ଡ, ନ )
୧୪୭।୨ ପରବଦନ—ପଅର ଦନ ।

ଆଗ୍ୟାଂ ପ୍ରମାଣରେ ସେ ମାନଚନ୍ଦ୍ରଗୃଷ୍ଟି
ସୁସଞ୍ଜ ଶେଜ୍ୟା ବହଳକ ଭୂଜାର ସୁପାନ୍ତି । ୧୫୪ ।
ଭୀଷ୍ମଙ୍କୁ ଶୟନ କରାଇଲେ କର ତୋଳି ଧରି
ମହାରସ ଝରନ୍ତେ ଶରୀର ହୋଇଲା ଜଡ଼ି । ୧୫୫ ।
ଭୀଷ୍ମଙ୍କୁ ଶୁଆଇ କଉରବେ ଗଲେ ନିଜ ଥାନେ
ରାତ୍ର ଅର୍ଦ୍ଧେ ପାଣ୍ଡବନ୍ତ ଘେନି ଆଜେ ଜନାର୍ଦ୍ଦନେ । ୧୫୬ ।
ମକର ମାସ ଶୁକଳ ପକ୍ଷ ଦଶମୀର ରାତ୍ରି
ପାଣ୍ଡବେ ଭେଟିଲେ ଯାଇଂ ଭୀଷ୍ମ ମହାରଥୀ । ୧୫୭ ।
ଦେଖିଲେ ଭୀଷ୍ମଙ୍କର ନବମ ଅବସ୍ଥା
ଯୁଧିଷ୍ଠିର କୋଳ କରି ବୋଇଲେ ମୋ ବୃଦ୍ଧ ସେ କଲୁ ପିତା । ୧୫୮ ।
କୁଟୁମ୍ବ ଲୋକନ୍ତ କରାଇଲୁ ସୃଷ୍ଟେ ଶାସ୍ତି
କେଉଣ ଯଶ ଅର୍ଜିବଟି ରାଜା କୁରୁପତି । ୧୫୯ ।
ଭୀଷ୍ମେ ବୋଇଲେ ହରି ତୋତେ ପ୍ରଲମ୍ବ କରିବାକୁ
କର ଚରଣ ନ ଚଳଇ ଗୋଚର ନାହିଂ ମୁକୁ । ୧୬୦ ।
ଭୀଷ୍ମଙ୍କର ଅବସ୍ଥା ଦେଖି ପ୍ରସନ୍ନ ହୋଇଲେ ଶ୍ରୀପତି
ବର ମାଗ ଗାଙ୍ଗେବ ହିବାର ମୋର ସନ୍ତ୍ୟ ।୧୬୧ ।
ତୁ ମହାରଥୀ ପୃଥ୍ୱୀ ମହୀ ମଣ୍ଡଳରି ମଧ୍ୟେ
କେ ତୋତେ ଜିଣିବାକୁ ସାମରଥ ହୋଇବାକ ଯୁଦ୍ଧେ । ୧୬୨ ।
ମୋହୋର ବଚନେ ନଣି ପାଣ୍ଡବଂକର ହିତେ
ସୃହେନେକ ଅବସ୍ଥା ତୋତେ ଦଇବ ଘଟସୂନେ । ୧୬୩ ।
ମାଗ ହୋ ଭୀଷ୍ମ ତୋତେ ଚିରନ୍ତନ ଯେଉଂଣ କଥା
ତୁହ୍ମ ସେ ମାଗନ୍ତା ଯେ ମୁହିଂ ମେ ଧାଅନ୍ତା । ୧୬୪ ।
ଭୀଷ୍ମେ ବୋଇଲେ ଦେବ ମୋର ଗ୍ୟାନେ ନାହିଂ ଆନ ପାପ
ଅପୂର୍ବିକ ଦୋଷ ଲକ୍ଷଣ ମୋର ଖଣ୍ଡିବାକ ତାପ । ୧୬୫ ।
ସ୍ୱାମୀ ରଣଯାଗ କରି ମରନ୍ତ ସେବେ ଦେଖିଣ ତୋର ମୁଖ
ସର୍ବ ପାପ ଖଣ୍ଡନ୍ତ ପାବନ୍ତ ବଇକୁଣ୍ଠେ ବଡ଼ ସୁଖ । ୧୬୬ ।
ସେହି ମହାଯାଗ ତ ମୋତେ ନୋହିଲା ପ୍ରାପତି
ଅପୂର୍ବିକ ଦୋଷୁଂ ପାର ମୋତେ କର ହୋ ଜଗନ୍ନାଥ । ୧୬୭ ।

---

୧୫୪। ସୁପାନ୍ତି—ପୁଷ୍ପଶଯ୍ୟା, କୋମଳ ଶଯ୍ୟା ।

ଯେ ଯେ ସ୍ୱାମୀ ବ୍ରତରାଜା ଅଟେ ପୁଣ୍ୟ ଯେକାଦଶୀ
ଏଥେ ପ୍ରାଣ ବିସର୍ଜିଲେ ମୁକତ ହୁଅନ୍ତ, ହୃଷୀକେଶି । ୧୬୮ ।
ହରି ଅନେକ ହିଂସାସ ଯେ କର୍ଣ୍ଣ କଲ ମୋତେ
ଶରୀର ରଖିଲି ଶ୍ରୀ ମହାଭାରଥ ସମର ସରିବା ପର୍ଯ୍ୟନ୍ତେ । ୧୬୯ ।
ଗୋବିନ୍ଦେ ବୋଇଲେ ମୋହୋର ଭଗତେ ବ୍ରତନ୍ତ ଯେବଣ ଜନେ
ସେ ତୋର ଧର୍ମପୁଣ୍ୟେ ହୁଅନ୍ତ ଯେକଥା ମୋର ଦୃଢ ବଚନେ ।୧୭୦।
ଇଦଂ ପ୍ରତ୍ତବାକ୍ୟ ଯେ ବଦଯୁନ୍ତ ଦେବ ହୃଷୀକେଶି
ଯେ ମୋତେ ଭଗତ ସେ ତୋହୋର ଅଟନ୍ତ ଶିଷି । ୧୭୧ ।
ମକର ମାସ ଶୁକଳ ପକ୍ଷ ଅଷ୍ଟମୀର ତିଥି
ଭୀଷ୍ମ ଅଷ୍ଟମୀ ନାମ ଯେ ତୋହୋର ହବାରାତ । ୧୭୨ ।
ମମ ଭଗତେ ଯେବଣ ନରେ ଚିତ୍ତ ଶୁଦ୍ଧ
ସେ ଭୀଷ୍ମର ନାମେ ଗୋତ୍ର ଧରି ଦେଉଥିବେ ଶ୍ରାଦ୍ଧ । ୧୭୩ ।
କେଶବ ବୋଇଲେ ଭୀଷ୍ମେ ପ୍ରୟାଗେ ଶ୍ରାଦ୍ଧ କଲେ ଯେତେ ଫଳଶ୍ରୁତି
ସେ ପୁଣ୍ୟ ଲଭନ୍ତୁ ଜନେ ଯେ ହୋଇତ ହୋଇବେ ଭଗତି । ୧୭୪ ।
ଆହୋ ଭୀଷ୍ମ ମକର ମାସ ଶୁକଳ ପକ୍ଷ ଯେ ଦଶମୀ
ଯେ ବ୍ରତଧର୍ମ ତୋତେ ହଲୁ ଯେ ସ୍ୱାମୀ ଆମି । ୧୭୫ ।
ଭୀଷ୍ମ ବୋଇଲେ ହରି ଯେ ବ୍ରତଧର୍ମ ମୋର ବୋଲି ବୋଇଲେ
କେହି ନ କରିବେ ଯେହା ମୋହୋର ବ୍ରତ ହୋଇଲେ । ୧୭୬ ।
ଗୋବିନ୍ଦେ ବୋଇଲେ ମୋର ବ୍ରତରାଜକୁ ସଂକଳ୍ପ ଯେବଣ ଜନ
ପ୍ରଥମେ ଯେ ବ୍ରତ କଲେ ସେ ପାଳିବେ ଜନେ ଆନ । ୧୭୭ ।
ଯେ ଭୀଷ୍ମ ଦଶମୀ ଯେବେ କରିବେ ପ୍ରଥମେ
ତେବେ ସେ ପ୍ରାପତ ତାକୁ ଯେକାଦଶୀ ଧର୍ମେ । ୧୭୮ ।

---

୧୭୪।୧ { ଗୟାଶ୍ରାଦ୍ଧ କଲେ ଯେତେକ ଫଳଶ୍ରୁତି
{ ସେ ପୂଣ୍ୟ ଲଭିବେ ନରେ ଯେ ହୋଇବେ ଭଗତି । ( କ, ଛ )

୧୭୫।୨ ଆମି—ମୁଁ ।

ଆଜହୁଂ ଖ୍ରୀଷ୍ଣୁ ଅଷ୍ଟମୀ, ଖ୍ରୀଷ୍ଣୁନବମୀ, ଖ୍ରୀଷ୍ଣୁଦଶମୀ, ଖ୍ରୀଷ୍ଣୁ ଏକାଦଶୀ,
ଖ୍ରୀଷ୍ଣୁ ଦ୍ୱାଦଶୀ,
ଏ ପଞ୍ଚ ଧର୍ମ ଦଲ ତୋତେ ବଦଯୂକ୍ତ ହୃଷୀକେଶି । ୧୭୯ ।
ଆହୋ ଖ୍ରୀଷ୍ଣୁ ଚଉଦ୍ଦବଂଶ ଏକାଦଶୀକ ଏହୁ ଏକାଦଶୀହୁଂ ମୂଳ
ତୋହୋର ନାମ ସଂକେତେ ଏହା ପାଳନ୍ତୁ ସକଳ । ୧୮୦ ।
ତୁ ସେ ଛର୍ବୀବୃତ୍ତି ତେଜଲୁ ମୋର କାର୍ଯ୍ୟ ଅର୍ଥେ
ସଚରାଚର ଧର୍ମପୁତ୍ର ହୋଇ ମୁକତ କଢ଼େବେ ହାଦେ ତୋତେ । ୧୮୧।

ଖ୍ରୀଷ୍ଣେ ବୋଇଲେ ଦେବ ଲଭିଲି ମୁଂ ପରମ ଗତି
କଂଚହୁଂ ଶରଣ୍ଡନ ଧର୍ମ ମୋତେ ଯାଚ ଦଲୁ ହୋ ଶ୍ରୀପତି ।୧୮୨।

ଖ୍ରୀଷ୍ଣେ ବୋଇଲେ ହରି ପାଣ୍ଡବେ ମୋର ପୁତ୍ର
ପାଇଲେ ସଂପଦ ଏବେ ଅରଜଲେ ପରମ ଅର୍ଥ । ୧୮୩ ।

ଖ୍ରୀଷ୍ଣେ ବୋଇଲେ ଦେବ ଶୁଣ ମୋ ବଚନ
ଏ ମହାଭାରଥ ଦେଖିଲେ ଯୁଡବ ଜୀବନ । ୧୮୪ !

ଆବର ଆଜ୍ଞା ମୋତେ ଦେବାକ ଭଗବାନ
ପାଣ୍ଡବନ୍ତ ହେନ ମୋତେ ଅପୋଡ଼ା ଭୂମିରେ କରାଇବୁ ଦହନ ।୧୮୫।
ଏବେ ଏମନ୍ତ ଆଗ୍ୟାଂ ମୋତେ ଦେବା ଦେବାଧିଦେବ ରାଜା
ଅର୍ଜୁନକୁ ବୋଲ ମୋତେ କରାଉ ଶରଶଯ୍ୟା । ୧୮୬ ।

ଏ ଶରଶଯ୍ୟା ତଳେ ବହିବ ରକତ ସାତତାଳ
ଅର୍ଜୁନ ଶରଶଯ୍ୟାରେ ଥାଇ ମୁଂ ଦେଖିବ ସମର । ୧୮୭ ।
ବାଣ ଜାଲାବଳୀରେ ହେବ ଶରୀର ଛିନ୍ନ ମୋର
ଏଥକୁ ଅର୍ଜୁନ ମୋତେ ଦେବ ଜଳଧାର । ୧୮୮ ।
ଅନେକ ମୃତ୍ତୁପିଣ୍ଡେ ଯେ ବହିବ ରକତ ନଦୀ
ଯୋଗିନୀ ବଳ ପ୍ରେତ ପିଶାଚୀଏ ଏଥି ଥିବେ ସମସ୍ତେ ସମ୍ବାଦ ।୧୮୯।

---

୧୭୯।୧ ଆଜହୁଂ ଖ୍ରୀଷ୍ଣୁ ଦଶମୀ, ଖ୍ରୀଷ୍ଣୁ ଏକାଦଶୀ, ଖ୍ରୀଷ୍ଣୁ ଦ୍ୱାଦଶୀ, ଖ୍ରୀଷ୍ଣୁ
ତ୍ରୟୋଦଶୀ, ଖ୍ରୀଷ୍ଣୁ ଚତୁର୍ଦ୍ଦଶୀ ।
( ଘ, ଙ. ଠ, ଛ )

ବାବୁ ସୁପାତ୍ତ ଶଯ୍ୟାରେ ଶୁଆଇଲେ ମାଡ଼ବ ବଡ଼ ନିଦ୍ରା
ରକ୍ଷାସୁଣୀ ପିଶାଚୁଣୀମାନେ ଭ୍ରମଣେ ଗ୍ରାହ୍ମିବେ ମୋହୋର ମୁଦ୍ରା ।୧୯୦
ବାବୁ ଟେ ନିଶାଚରମାନେ ମୋତେ ନ ପୀଡ଼ନ୍ତୁ ଯେମନ୍ତେ
ତହିଁକ ଚିନ୍ତା କର ଶରଶଯ୍ୟା ଗୋଟିଏ କଣଦିଅ ନିଦ୍ରା
ଯେହ୍ନେ ନ ମାଡ଼ବ ମୋତେ ।୧୯୧ ।
ଆହୋ ଚଇତନ ଭୀଷ୍ମଂକର ମନ ଯେ ଜାଣିଲେ ପାର୍ଥ ମନ ଭେଦ
ଭୀଷ୍ମକଇଂ ଶରଶଯ୍ୟା ଗୋଟିଏ ସଜାଡ଼ିଲେ ଶରେ ଶର ଛନ୍ଦ ।୧୯୨।
ପୃଥ୍ୱୀର ତଳେ ଶର ଷଡ଼ତାଳ ଭେଦନ୍ତି
ଉପରକୁ ତିନତାଳ ଉର୍ଦ୍ଧେ ଛନ୍ଦାଛନ୍ଦ ହୋଅନ୍ତି । ୧୯୩ ।
ଶିରକୁ ସିମସ୍ଥାନ ଯେ ଭୁଜକୁ ଅବୋଚଣ
ସିମସ୍ଥାନକୁ ଲକ୍ଷଶର ଗଣ୍ଡସ୍ଥଳକୁ ଅଶିସହସ୍ର ବାଣ । ୧୯୪ ।
ବେନି ଲକ୍ଷ ନାରାଜ ବେନି ଯେ ଭୁଜକୁ
ପଞ୍ଚକୋଟି ନାରାଜ ଯେ ବକ୍ଷସ୍ଥଳକୁ । ୧୯୫ ।
ବେନି ପାଦକୁ ଯେ ବେନି ମର୍ଭୁ ତେକ ଶର
ମହାଶୂନ୍ୟେ ଥାଇ ଆବୋର ରହିଲି ନ ପଡ଼ିଲି ତଳ । ୧୯୬ ।
ଭୀଷ୍ମେ ଯେ ଶରଶଯ୍ୟାକୁ କଲେକ ମମାଷା
ଶୂନ୍ୟରେ ରହିଲା ଭୀଷ୍ମଂକ ଶରୀର ନାରାଜ ଭରସା । ୧୯୭ ।
ମହାକାୟ ଶରୀର ସବୁ ନାରାଜରେ ଛନ୍ଦ
ଚଳ ତ ନୁଆରଇ ଶରେଣ ଶର ବାନ୍ଧ । ୧୯୮ ।
ନିଚଳ ହୋଇ ଭୀଷ୍ମେ ରହିଲେ ଯେହ୍ନରୂପେ ଅଷ୍ଟବାବ
ଶରଶଯ୍ୟାରେ ଭୀଷ୍ମେ ଯେ ପାଇଲେ ସୁଆର୍ଥ । ୧୯୯ ।
ଭୀଷ୍ମେ ବୋଇଲେ ସାଧୁ ସାଧୁ ରେ ଫାଲଗୁନି
ପର ମନ ଜାଣନ୍ତା ମହିମା ତୋର ଧନି । ୨୦୦ ।
ପର ମନ ଜାଣଇ ଯେ ସେ କରଇ ପରମାର୍ଥ
ପରଲୋକ ଚିନ୍ତା ପର ଲୋକ କାର୍ଯ୍ୟ ହିତ । ୨୦୧ ।
ମମ ଆଶିଷ ଘେନି ତୁ ବ୍ରତଭେ ସବସାଚୀ
ଚିରଆୟୁଷ ହୋଉ ତୋତେ ଚିରନ୍ତ-ନ ହୋଉ ଲଛି ।୨୦୨ ।

---

୧୯୩।୨ ଅଷ୍ଟାଙ୍ଗ ଶରୀରେ ଯେ ନାରାଜ ଛନ୍ଦାଛନ୍ଦ । ( ଥ, ଡ )
୨୦୨।୨ ଲଛି—ଲକ୍ଷ୍ମୀ ।

ପରମ କଲ୍ୟାଣ ହୋଉ ତୋର ପୂରୁ ମନବାଞ୍ଛା
ପଞ୍ଚୁକଣ୍ଟକେ ଭୋଗକର ରହୁ ତୋର କକ୍ଷା । ୨୦୩ ।
ବର ଦେଇଣ ଗାଙ୍ଗେବ ଯେ ଅନେକ ସିପୁତ୍ତ
କୁରୁ ପାଣ୍ଡବେ ରଣଭୂମି ଆବୋରି ରହିଲେ ଭୀଷ୍ମଙ୍କର କତି । ୨୦୪ ।
ଶରଜାଳାଯେ ଭୀଷ୍ମଙ୍କ ଶରୀର କଲା ଜାଳା
ମାନଭୋଗବନ୍ଦନ୍ତ ଜଳ ମାଗିଲେ ଭୀଷ୍ମ ମହାବଳ । ୨୦୫ ।
ଲକ୍ଷେଶ୍ୱର ପାଣି ନଉଡାଇଲେ କୁରୁବୀର
କଦାଚିତେ ଜାଳା ଶାନ୍ତ ନୋହିଲ ଭୀଷ୍ମଙ୍କର ଶରୀର । ୨୦୬ ।
ଅର୍ଜୁନଙ୍କୁ ବୋଇଲେ ବାବୁ ଆନନ୍ତ ଜଳ ଦେସି
ମେଘାଶର ଯେହ୍ନ ପାର୍ଥ ଆକାଶ ଗଙ୍ଗାକଇଂ ପେଷି । ୨୦୭-୩୯୪୭ ।



---

୨୦୩ { ଲଭ ତୁ ଅନେକ ଶିରୀ ମମ କଇଲ୍ୟାଣ ତୋତେ ବାଞ୍ଛା
{ ସେବକମାନେ ପଞ୍ଚୁସ୍ଥଳୀ ଭୋଗ୍ୟକର ତୁ କଇଚ୍ଛା । ( ଝ, ଢ )

୨୦୩।୨ କକ୍ଷା—ପ୍ରତିଜ୍ଞା, କୀର୍ତ୍ତି ।

# ଭୀଷ୍ମପର୍ବର ଅଧିକା ପାଠ

୩୨୦ ପୃଷ୍ଠା ୧୦୮।୨ ପାଠ ପରେ "ଧ" ପୋଥିରେ:—

ଶ୍ରୀଖଣ୍ଡୀ ଧୃଷ୍ଟକେତୁ ଯେ ହୋଇଲ ସାଂଗ୍ରାମ
ଭୀଷ୍ମେ ସାଂଗ୍ରାମ କଲେ ହୋଇଣ ଅବିଶ୍ରାମ । ୧ ।
ସଞ୍ଜୟ ବୋଲନ୍ତି ହୋ ଧୃତରାଷ୍ଟ୍ର ରାଣ
ଦଶ ଦିନ ଯୁଦ୍ଧ କରିଲେ ଗଙ୍ଗାଙ୍କ ନନ୍ଦନ । ୨ ।
ଦ୍ରୋଣ ଅର୍ଜୁନର ସାଂଗ୍ରାମ ହେଉଅଛି
ଅଭିମନ୍ୟୁ ଅଶ୍ୱତ୍ଥାମା ପଡିଲା ପଞ୍ଝା ପଞ୍ଝି । ୩ ।
ଚଇତନ ରାଜା ଭୁଲେ ଶକୁନର ଯୁଦ୍ଧ
ଚିତ୍ରସେନ ବିକର୍ଣ୍ଣର ଲଗିଲା ବିବାଦ । ୪ ।
ଭୀମସେନ କର୍ଣ୍ଣ ବେନି କରୁଛନ୍ତି ରଣ
ଦୁଃଶାସନ ଦୁର୍ଦ୍ଧଷ ସମର ଅନ୍ୟୋଅନ୍ୟ । ୫ ।
ଦୁର୍ଯୋଧନ ଭୁଲେ ଯୁଦ୍ଧ କରନ୍ତି ଯୁଧିଷ୍ଠି
ଶଙ୍ଖ ଉଲୁକର ହୋଇଲାକ ଅରିଷ୍ଟ । ୬ ।
ଶ୍ରୀଖଣ୍ଡୀ ଭୀଷ୍ମ ଆଗେ ହୋଇଲାକ ଉଭା
କ୍ଷୁଧାର୍ତ୍ତି ଯେସନେକେ ମିଷ୍ଟାନ୍ନେ କରେ ଲୋଭ । ୭ ।
ରାହୁର ତେଜ ଜାଣି ଭୀଷ୍ମନ୍ତ ଆକର୍ଷି
ନାଗବଳ ଦେଖି ଯେହ୍ନେ ବିନତା ପୁତ୍ର ଗ୍ରାସି । ୮ ।
ଡାକଇ ପଛରୁ ପାର୍ଥ ଶର ବର୍ଷି ରେ ଶ୍ରୀଖଣ୍ଡୀ
ତୋର ପଛେ ମୁହିଂ ଅଛି ନାହିଁଦୋଷ ମନ୍ତ୍ରି । ୯ ।
ସାହା ପାଇ ମାରଇ ସେ ଦ୍ରୁପଦ ତନୟେ
ଭୀଷଣ ଶର ପଡେ ମେଘ ବୃଷ୍ଟି ପ୍ରାୟେ । ୧୦ ।
ଯେମନ୍ତ ଦେଖି ଭୀଷ୍ମେ ଶ୍ରୀଖଣ୍ଡୀ ପ୍ରଶଂସନ୍ତି
ସ୍ତ୍ରୀଲିଙ୍ଗ ହୋଇ ତୋର ଏତେକ ଶକତି । ୧୧ ।

ସେମନ୍ତେ ବନ୍ତ ଅବ୍ଧ ଭୁକ୍ତ ଜନ୍ମି ସେ ମନ୍ଦାବଳା
ମୋହୋର ହେତୁ ତୋତେ ଦଇବ ନିର୍ମାଣିଲା । ୧୨ ।
ଭୀଷ୍ମଙ୍କୁ ବୋଲଇ ସନ୍ତୁଂ ପାଣ୍ଡବ ଧନୁର୍ଜୟେ
ଦେଖି ନିଷତ ହୋଇଲେ ଭୀଷ୍ମ ମହାଭୟେ । ୧୩ ।
ମୁଂ ତୋତେ ସପକ୍ଷ ତୁ ନ କରସି ଭୟେ
ଭୀଷ୍ମ ନାଶିଲେ ଆମ୍ଭର ହେବ ରଣ ଜୟେ । ୧୪ ।
ଭୀଷ୍ମ ଅଶସ୍ତମା ସେ ଦୁଇ ମହାରଥୀ
ହରହର ବ୍ରହ୍ମାର ସେ ଛେଦ ପାରନ୍ତ ମଥା । ୧୫ ।
ଦ୍ରୋଣ କୃପାଗୃତବର୍ମ୍ୟ ନୃପତ କୁରୁନାଥ
ଛତିବର ସାମରଥ ଖଟନ୍ତ ଜଗତ । ୧୬ ।
ଦୁଯୋଧନ ବୋଇଲା ଯେ ଭୀଷ୍ମ ମୁଖ ଚାହିଂ
ଜପ୍ରୋଧ ଯୁଦ୍ଧ ସ୍ୱାମୀ କରୁଛ କସ ପାଇଂ । ୧୭ ।
ଦସ୍ପାପଣ ଗୁତ ସେବେ ପାଣ୍ଡବନ୍ତ ମାର
ତୁମ୍ଭେ ପର କୁରୁବଳେ ଅଟ ଧନୁର୍ଦ୍ଧର । ୧୮ ।
ଭୀଷ୍ମେ ବୋଇଲେ ରାଜା ହେ ସରୂପ କହୁଂ ତୋତେ
ଯୁଦ୍ଧେ ବଳୀୟାର କେହ୍ନ କହ ମୋ ଅଗ୍ରତେ । ୧୯ ।
ଲକ୍ଷେକ ଯୋଦ୍ଧା ଆମ୍ଭେ ମାଇଲୁ ଦଶଦନେ
ଅଶ୍ୱ ଗଜ କେତେ ମଲେ କେ କରୁ କଳନେ । ୨୦ ।
ଅର୍ଜୁନ ଜାଣି ତୋତେ ରାଜ୍ୟ ଦେବାପାଇଂ
ସେ କଥା ବୋଲୁଛୁ କ କହ ରେ କୁରୁସାଇଂ । ୨୧ ।
ଆଜ ଯୁଦ୍ଧେ ଆମ୍ଭେ ମାରିବୁ ପାଣ୍ଡବନ୍ତ
ଦଇବ କେଉଂ କଥା କରିଛି ତା ନ ଜାଣି ତଦନ୍ତ । ୨୨ ।
ସେମନ୍ତେକ ବୋଲଣ ସେ ଧନୁରେ ଖର୍ପ ଦଶବାଣ ସନ୍ଧ
ଦୃଷ୍ଟିଗୋଚର ଅଛି ଶ୍ରୀଖଣ୍ଡୀ ମହାଯୋଧୀ । ୨୩ ।
ଶୁଣ ହୋ ଅଶସ୍ତମା ବୋଇଲେ ଗଙ୍ଗାସୁତ
ଆଜ ମୋର ନ ଚଳଇ କର୍ମାଇଂ କରପଦ । ୨୪ ।
ରଥ ଧ୍ୱଜେ ବସିଲଣି ମୋର ଗୃଧ୍ର ପକ୍ଷୀ
ଦେଖ ମୋର ନୟନରୁ ଲୋତକ ବହୁଅଛି । ୨୫ ।

ଦେଖ ହୋ ଦ୍ରୋଣେ ମୋର ନାରାଚ ନାହିଁ କଟି
ବଜ୍ର ଗୁଣ ମୋର ଧନୁରୁ ଛିଣ୍ଡିଛି । ୨୬ ।
ଉଭାଇ ବନ୍ଧଇ ଶିଖଣ୍ଡୀ ଭୀଷ୍ମଙ୍କ ଉପରକୁ
ଗୋଟି ଗୋଟି ବାନ୍ଧଇ ସେ ମର୍ମ ସ୍ଥାନଠାକୁ । ୨୭ ।
ଶିଖଣ୍ଡୀକି ପଛ କରି ଧାଇଁଲେ କିରୀଟୀ
ପାଣ୍ଡବ ଯୋଦ୍ଧାମାନେ ଅଇଲେ ସର୍ବେ ଘୋଟି । ୨୮ ।
ଶିଖଣ୍ଡୀକି ଆଗ କରି ଅର୍ଜୁନ ଥାଇ ପଛେ
ନିର୍ଘାତ ବାଣ ବାନ୍ଧେ ବଜ୍ରର ସାକ୍ଷେ । ୨୯ ।
ବୃଷ୍ଟି ପରାୟେ ଶର ସେ ପଡ଼େ ଭୀଷ୍ମଙ୍କର ଅଙ୍ଗେ
ବିକରାଳ ହୋଇଣ ଉଠିଲେକ ଗାଙ୍ଗେୟେ । ୩୦ ।
ପାଶରେ ଥିଲା ତାଙ୍କର ରାଜା ଦୁର୍ଯ୍ୟୋଧନ
ବେଗେ ଆଜ୍ଞା ଦେଲା ଗୁରେ ଗାନ୍ଧାରୀ ନନ୍ଦନ । ୩୧ ।
ସମରେ ଅର୍ଜୁନ ଯେ ଆକ୍ରୋଶେ ଭୀଷ୍ମଙ୍କୁ
ହକାରି ଆଣ ମୋର ଭାଇ ଯେ ମାନଙ୍କୁ । ୩୨ ।
ଆଜ୍ଞା ପାଇଣ ଉତ୍ତର ବେଗ ହୋଇ ଗଲା
ଶତେଭାଇ କର୍ଣ୍ଣ ଆଦି ଘେନି ଆଣିଲା । ୩୩ ।
ଦ୍ରୋଣ କୃପ ସହିତରେ ରାଜା ଭଗଦତ୍ତ
ଅର୍ଜୁନେ ବେଢ଼ିଲେ ସେ ଯେତେକ ଶହସ୍ର । ୩୪ ।
କେତେ ବଳ ଭେଟନ୍ତେ ସେ ବାଜିଲା ରଣଗୋଳ
ମାର ମାର ଡାକରେ ଯେ ଆରଣି ଧଡୋଳ । ୩୫ ।
ପ୍ରଳୟ କାଳେ ଯେସନେ ସାଗରର ଲହରୀ
ବେଢ଼ବଳ ଥାଟ ଯେ ତେମନ୍ତ ଉଠିଲା । ୩୬ ।
ଶର ଆଚ୍ଛାଦନେଣ ଯେ ହୋଇଲା ଅନ୍ଧାର
ଭୀଷ୍ମଙ୍କର ତେଜ ତହିଁ ଯେସନେ ଦିନକର । ୩୭ ।
ଅନର୍ବାରଣ ଯୋଦ୍ଧା ସେ ଗଙ୍ଗାର କୁମର
ନମିଷେକେ କାଟିଲେ ଶତେ ରାଜାଙ୍କର ଶିର । ୩୮ ।
ପୁଣ ସାତବାଣ ବାନ୍ଧିଲେ ସେ ଉଭାଇ
ହାଥର ବ୍ୟଗ୍ର ତାଙ୍କର ବଚନେ କୋପେ କହି । ୩୯ ।

---

୩୫।୨ ଆରଣି—ଦୁନ୍ଦୁଭି ।

ସାତଲକ୍ଷ ଘୋଡ଼ା ସେ କାଟିଲେ ତତକ୍ଷଣ
ଭାରତେ ସମ ନାହିଁ ଯେ ଭୀଷ୍ମଙ୍କ ସମାନ । ୪୦
ଦେଖିଣ ଅର୍ଜୁନ ଯେ ହୋଇଲେ କି ରାଗ
ବାହିଲେ ତୁରଙ୍ଗମେ ଦେବ ଯେ ଶ୍ରୀରଙ୍ଗ । ୪୧ ।
ବିନ୍ଧଇ ନାରାଚ ସେ ସୁବର୍ଣ୍ଣ ଗ୍ରୀଷମୁନା
ଛଇଗୁଡ଼େ ଭେଦିଲା ଭୀଷ୍ମ ସାରଥିର ସେହ୍ନା । ୪୨
ଅଭିମନ୍ୟୁ ପଞ୍ଚାଳ କୁମରେ ବେଗେ ଧାଇଁ
ଭୀଷ୍ମ ପରେ ବାଣମାନ ବିନ୍ଧିଲେ ନଠାଇ । ୪୩ ।
ଅର୍ଜୁନ ବଇଷ୍ଣବୀ ଶର ଧରି ବେଗେ ବିନ୍ଧ
ମର୍ମସ୍ଥାନମାନନ୍ତ ବିନ୍ଧଇ ମନଭେଦ । ୪୪ ।
ପୁଣ ବିନ୍ଧଇ ସେ ଶର ଜାଳାବଳୀ
ଭୀଷ୍ମର ଦେହ ଯେ ସେ କାଟିଲା କେଶରେ । ୪୫ ।
କେହି ନ ଦେଖନ୍ତି ପାର୍ଥ ବିନ୍ଧୁଅଛି ଶର
ଭୀଷ୍ମଙ୍କର ଦେହ ଗୋଟି ରୁଧିରେ ଜରଜର । ୪୬ ।
ପୁଣିହିଁ ଭୁଜବାଣ ଅର୍ଜୁନ ବିନ୍ଧିଲା
ଭୀଷ୍ମଙ୍କର ହାଥୁଁ ଧନୁ ଛେଦ ପକାଇଲା । ୪୭ ।
କୋପେଣ ଭୀଷ୍ମ ପୁଣ ଆନ ଧନୁ ଧଣ
ସେ ଧନୁ ଛେଦେ ପାଥ ବେନିଖଣ୍ଡ କରି । ୪୮ ।
କ୍ରୋଧେ ଭୀଷ୍ମେ ଗୃହ୍ନିଲେକ ଅନଳ ନୟନ •
ଆଗରେ ଶ୍ରୀଖଣ୍ଡୀକ ଯେ ଦେଖିଲେ ଆପଣ । ୪୯ ।
ଯେ ସମୟେ ଅର୍ଜୁନ ଅନେକ ବାଣ ବିନ୍ଧ
ଗଙ୍ଗାର ନନ୍ଦନ ରଥ ହୋଇଲେକ ରୁନ୍ଧ । ୫୦ ।
ଯେଣେ ବାଣମାନ ବହୁତ ପଡ଼ନ୍ତି ଦେହେ
ତାହା ନ ମାନଇ ଶର ବିନ୍ଧୁଛନ୍ତି କୋହେ । ୫୧ ।
ଅନେକ ବେଳ ଅର୍ଜୁନ ଛେଦିଲେକ ଧନୁ
ରାଗେଣ ଖଣ୍ଡା ଧଇଲେ ଗଙ୍ଗାଦେବୀ ତନୁ । ୫୨ ।
ଅଗ୍ନିଶିଖା ଜାଣି ତାଙ୍କ କରେ କରବାଳ
ହାଥରୁ ଛେଦିଲା ତା ବାସବ ଦୁଲାଳ । ୫୩ ।

ପୁଣ ଧନୁ ଧରନ୍ତେ ତା ଛେଦିଲା ଅର୍ଜ୍ଜୁନ
ଭୀଷ୍ମଙ୍କୁ ଆବୋରି ଯେ ଅଛନ୍ତି କୁରୁ ସଇନ । ୫୪ ।
ଏମନ୍ତ ସମୟରେ ଅର୍ଜ୍ଜୁନ ଶର ମାରି
ମର୍ମଥଳେ ପଡ଼ିଲା ସେ ନୋହିଲା ନିବାରି । ୫୫ ।
ନାଗଙ୍କର ବିଷ ପ୍ରାୟେ ନାଗଜିଂକ ଜ୍ୱାଳା
ତାହା ବଞ୍ଚାଇଲେ ସେ ଯେ ଶାନ୍ତନୁର ବଳା । ୫୬ ।
ମନେ ବିଚାରି ତଦ୍ଭଂ କରନ୍ତି ଭୀଷ୍ମଦେବ
ଅର୍ଜ୍ଜୁନ ସମ୍ମୁଖରେ ଶସ୍ତ୍ର ଧରି କେ ରହିବ । ୫୭ ।
କି ଲକ୍ଷଣେ ପାର୍ଥ ହୋଇଛି ଧନୁର୍ଦ୍ଧର
ଯାହାକୁ ସମରେ ସେ ହାରିଛି ପୁରନ୍ଦର । ୫୮ ।
ପ୍ରସନ୍ନେ ବର ଯାକୁ ଦେଇଛି ସଦାଶିବ
ତିଇଲୋକେ ତାର ତୁଲେ ସମର୍ଥ କେ ହେବ । ୫୯ ।
ଏତେ ବୋଲି ଭୀଷ୍ମେ ଧଇଲେ କରେ ଧନୁ
ଭୂଷଣ୍ଡୀକ ଯେ ବିନ୍ଧିଲେ ଆକର୍ଣ୍ଣ । ୬୦ ।
ସାତଶ ଯୋଦ୍ଧା ଏକା ବାଣକେ ଯେ ମାରି
ପାଦାନ୍ତି ହାଥୀବଳ କେ ପାରୁ ରକ୍ଷା କରି । ୬୧ ।
ଲୋହାର ଶର ପୁଣ ବିନ୍ଧିଲେ ନିଶିଖା
ପ୍ରଭୃଶରେ ନିବାରିଲେ ପାର୍ଥ ଯେ ବିଶିଖା । ୬୨ ।
ଦେଖିଲା ବ୍ୟାଘ୍ର ଯେହ୍ନେ କ୍ଷେପଇ ଛେଳିପଲ
ତେସନ ସାରଥେ ଅଟଇ ଭୀଷ୍ମ ମହାମଲ । ୬୩ ।
ଯମର ଆଗେ ଯେହ୍ନେ ନ ରହେ ପାପୀଲୋକ
ଭୀଷ୍ମ ଆଗେ ନ ରହନ୍ତି ବିନ୍ଧିଲେ ଶରଯାକ । ୬୪ ।
ଶିଖଣ୍ଡୀକ ଆଗ ସନ୍ଧ୍ୟଂ କଲା ବୀର ପାର୍ଥ
ଅପାଲଟ ଶର ଗୋଟି ଧଇଲେକ ହାଥ । ୬୫ ।
ରସାଣ ପର ଫଳ ଅଟଇ ତୀକ୍ଷମୁନା
ଝଳନ୍ତେ ଭେଦିଲା ଯେ ହୃଦଏ ବଜ୍ରସେହ୍ନା । ୬୬ ।

---

୬୦।୨ ଭୂଷଣ୍ଡୀ—ଶରବିଶେଷ ।

ଭୀଷ୍ମଙ୍କର ଦେହରେ ପଡନ୍ତେ ଯାଇଂ ଶର
ବଇକୁଲ୍ୟ ହୋଇଲା ତେତେ ନନ୍ଦୀଙ୍କ ଶରୀର । ୬୭ ।
ଆକୁଳ ହୋଅନ୍ତେ ଯେ ଗଙ୍ଗାଙ୍କ ତନୟେ
ଆଗରେ ଦେଖିଲେ ବଳେ ଶିଖଣ୍ଡୀ ଉଭା ହୋଏ । ୬୮ ।
ହାସ୍ୟ କରି ଶିଖଣ୍ଡୀକି ନ ମାରନ୍ତି ବାଣ
ସ୍ତ୍ରୀମାନଙ୍କ ସଙ୍ଗେ କେସ ମୋହୋର ଯେ ରଣ । ୬୯ ।
ଯେମନ୍ତ ବଲ୍ଗୁରନ୍ତେ ଗଙ୍ଗାର ନନ୍ଦନ
ଅପ୍ରମିତ ଶର ଯେଣୁ ବନ୍ଧଇ ଅର୍ଜୁନ । ୭୦ ।
ହେମମୟେ ଶରଗୋଟି ଅଟେ ମହାଜାଳା
ହୋଣରୁ ବାଛି ପାଥ ବନ୍ଧନ୍ତି ଶରମାଳା । ୭୧ ।
ଶର ପଡନ୍ତେ ଯେ ନ ହସେ ଭୀଷ୍ମକାୟେ
ରଥରୁ ତଳଣ ଯେ ପଡିଲେ ଭୀଷ୍ମ ରାୟେ । ୭୨ ।
ଭୀଷ୍ମ ପଡନ୍ତେଣ ହଇନ ଯେ ପଳାୟେ
କାଳାନଳ ରୂପ ଧରିଅଛି ପାଥ ଦେହେ । ୭୩ ।
ଦେଖିଣ ଛିନ୍ନଛନ୍ନ ହୋଇଲେ କୁରୁବଳ
ଗୋଡାଇଣ ପାଣ୍ଡବେ କଲେ ମହାଗୋଳ । ୭୪ ।
ସାଧୁ ସାଧୁ ନନ୍ଦୀ ଗୋଟି ଅଛି ଧନୁର୍ଜୟେ
ହୋଡହୋରେ ସାଧ ହେଲେ ଯେ ଭୀଷ୍ମ ମହାରାୟେ । ୭୫ ।
ବନ ଜନ୍ତୁ ଖେଦଇ ଯେସନେ କେଶରୀ
ତେମନ୍ତ ଗୋଡାଇଲେ କଉରବ ବଳ ମାରି । ୭୬ ।
କରେ ଧନୁ ଧରି ଦ୍ରୋଣ ମହାବଳ
କଉରବେ ଉଗାଳଲେ ଛତ୍ରୀୟ ଶାର୍ଦ୍ଦୂଳ । ୭୭ ।
ଦ୍ରୋଣେ ଡାକନ୍ତି ଆରେ ପଳାଅ କେସ ପାଇଂ
ମାର ହୋ ପାଣ୍ଡବନ୍ତ କଛି ଭୟ ନାହିଂ । ୭୮ ।
ଭୀଷ୍ମ ପଡନ୍ତେଣ ପଳାୟେ କୁରୁପତି
କର୍ଣ୍ଣର ଆଗରେ ଯାଇଂ ମିଳିଲା ତଡନ୍ତି । ୭୯ ।
ଯେମନ୍ତ ଦେଖି କର୍ଣ୍ଣ ହୋଇଲେ କ୍ରୋଧମନ
ସନ୍ନଦ୍ଧେ ମିଳିଲେ ଯାଇଂ ଗୁରୁଙ୍କ ନନ୍ଦନ । ୮୦ ।

ବାଲମିକ ଭଗଦତ୍ତ ଆଦିଙ୍କ ମହାତ୍ମା
ଅଳମ୍ବୁଷା ଦାନବ ଆବର କୃପବ୍ରହ୍ମା । ୮୧ ।
ସମସ୍ତ ସେନା ଭୁଲେ ଆବର କୁନ୍ତ ସଇନ
ଭୀଷ୍ମଙ୍କ ଅଶ୍ରବରେ କଲେକ ରୋଦନ । ୮୨ ।
ଭୀଷ୍ମେ ଶ୍ରୀଖଣ୍ଡୀ ମୁଖ ଗୃହ୍ନଂ ଅନୁବ୍ରତ
ରଥରୁ ଢଳଣ ସେ ପଡ଼ିଲେ ଭୂମିଗତେ । ୮୩ ।
ସର୍ବ ଗୁଣେ ସୁନ୍ଦର ସୁଲକ୍ଷଣୀ ବାଳୀ
ଶ୍ରୀଖଣ୍ଡୀ ମୁଖ ଦେଖି ଭୀଷ୍ମଙ୍କର ଧାତୁ ଗଳା । ୮୪ ।
ପାଣ୍ଡବଙ୍କର ଆନନ୍ଦ, ରୋଦଇ ଦୁର୍ଯୋଧନ
ବାହାସ୍ଫୋଟ ମାରଣ ନାଚଇ ଭୀମସେନ । ୮୫ ।
ଭୀଷ୍ମେ ନାଶଗଲେ ମରିବ କୁରୁପତି
ଶରତ୍ରର ବାଦ୍ୟମାନ ଉତ୍ସୁକେ ବଜାନ୍ତି । ୮୬ ।
କୁରୁ ପାଣ୍ଡବେ ଯେ ସମର ଛାଡ଼ିଲେ
ଭୀଷ୍ମଙ୍କର ପାଶେ ଯାଇଣ ସମସ୍ତେ ବେଢ଼ିଲେ । ୮୭ ।
ଭୀଷ୍ମଙ୍କର ଦେହରେ ଯେ ଶର ସେ ଅଛି ଭେଦ
ଇଚ୍ଛାମୃତ୍ୟୁ ଯାହାର ସମରେ ଦୃଢ଼ ବଧ । ୮୮ ।
ଆକାଶେ ଥାଇ ଯୁଦ୍ଧ ଦେଖୁଥିଲେ ଦେବେ
ଶବଦ ଶୁଭିଲା ପ୍ରାଣ ନ ଛାଡ଼ ଗାଙ୍ଗେବେ । ୮୯ ।
ଉତ୍ତରାୟଣ କାଳ ନୋହୋଇ ହାଦେ ଜାଣ
ଧଇର୍ଯ୍ୟ ବଳ କର କାଳ ବର୍ତ୍ତମାନ । ୯୦ ।
ଆକାଶରୁ ଭୀଷ୍ମେ ସେ ବଚନ ଶୁଣି
ରହି ବସି ଉଠିଲେ ବୀରଙ୍କ ଶିରୋମଣି । ୯୧ ।
ଗଙ୍ଗା ପଠିଆଇ ଯେ ହଲେ ବ୍ରହ୍ମଋଷି ମାନନ୍ତ
ହେ ଋଷି ମାନେ ମୋର ପୁତ୍ରକୁ କହିବା ବାରତା । ୯୨ ।
ଦକ୍ଷିଣାୟନ ରାଜ ଉତ୍ସରେ ଉତ୍ତରାୟଣ ପରବେଶ
ପ୍ରାଣତ୍ୟାଗ ହୋଇଲେ ପାଇବ ସ୍ୱର୍ଗବାସ । ୯୩ ।

---

୮୧।୧ ବାଲମିକ—ବାହ୍ଲିକ ।

ସେହି ଯୁଦ୍ଧ କ୍ଷେତ୍ରେ ନ ମରୁ ଯୁଦ୍ଧ କାଳେ
ଉତ୍ତରାୟଣେ ପ୍ରାଣ ଛାଡିବ ସେକାଳେ । ୯୪ ।
ଶୁଣିଣ ଋଷିମାନେ ହଂସ ରୂପ ହୋଇ
ଭୀଷ୍ମଙ୍କୁ ଅପୂନ ସେ କହିଲେ ବୁଝାଇ । ୯୫ ।
ଶୁଣିନ ଭୀଷ୍ମେ ହରଷ ମୁନିଙ୍କର ବାଣୀ
ଭୂନେ ମାହା କହିଲ ମୁଁ ଅଛି ତାହା ଜାଣି । ୯୬ ।
ଯେମନ୍ତ କହିଣ ବାହୁଡି ଗଲେ ବ୍ରହ୍ମମୁନି
ଗଙ୍ଗାନ୍ତ କହିଲେ ତୁମ୍ଭ ପୁତ୍ର ମହାଗ୍ୟାମୀ । ୯୭ ।
ଶୁଣିଣ ଜାହ୍ନବୀ ସେ ଆନନ୍ଦମୟେ ଚିତ୍ତ
ଯେଥୁ ଅନନ୍ତରେ ଶୁଣ ଯାହା ହେଲା କୁରୁନାଥ । ୯୮ ।
ସେ ବେନି ବଳ ସେ ସମର ଛାଡିଲେ
ଧନୁ ଦ୍ରୋଣ ଛାଡ଼ି ସର୍ବେ ଭୀଷ୍ମଙ୍କୁ ବେଢିଲେ । ୯୯ ।
ହେ ପିତାମହ କଲ ଯେସନକ କୃତ୍ୟ
ଶୋକ ଅସମ୍ଭାଳେ ସେ ବୋଲନ୍ତି ଧର୍ମସୁତ । ୧୦୦ ।
ଅର୍ଜୁନ ମୁଖ ଚାହିଁଣ ଭୀଷ୍ମଦେବ ବୋଲି
ସାଧୁ ସାଧୁ ଧନୁର୍ଜୟେ ଛନ୍ତି ମହାବଳୀ । ୧୦୧ ।
ହେ କୁରୁନାଥ ମୋହୋର ଦେହ ନ ଚଳଇ
ନାରାଚ ଜାଳ ମୋତେ ବ୍ୟାକୁଳ କରଇ । ୧୦୨ ।
ପାଦ ପାଣି ମୋହୋର ନ ଚଳଇ ଆଉ
ଦେହର ପୀଡା ମୋର କେହୁ ଅବା ସହୁ । ୧୦୩ ।
ଶୁଣିଣ କୁରୁପତି ଦେବାଙ୍ଗ ବସ୍ତ୍ର ଦିଲା
ସୁସଜ୍ଜ ଶଯ୍ୟାକର ବୋଲି କର୍ଣ୍ଣଙ୍କୁ ବୋଇଲା । ୧୦୪ ।
ନେତର ମୁଚୁଲା ଗୋଟି ବ୍ରହ୍ମଜାତି ହାଙ୍କ
ବଦ୍ରୁମ ପଗଡ ମାଣିକ୍ୟ ଚୂଡାଖ୍ରୁ । ୧୦୫ ।
ହେମର ପାଉଆ ସୁସଜ୍ଜ ପଲଙ୍କ
ଶୂନ୍ୟରେ ଖଞ୍ଜାଅଛି ଚନ୍ଦ୍ରାତପ ଟେରା । ୧୦୬ ।

---

୧୦୫।୨ { ପଗଡ—ବଡ଼ବଡ ଗୁଳା ।
{ ବଦ୍ରୁମ—ପୋହଳା ।

୧୦୬।୨ ଟେରା—ପରଦା ।

ଦକ୍ଷିଣ ପଗଡ଼ରେ ଲଗିଛି ଯନ୍ତ୍ର ଚାର
ବନା ବାତେ ପବନ ବହଇ ସଧୀର । ୧୦୭ ।
ପ୍ରେମନ୍ତ ପଲଂକ ଗୋଟି ନଯୋଜଲେ କର୍ଣ୍ଣ
ଦୁର୍ଯୋଧନ ବୋଇଲେ ପ୍ରେଥେ କରସି ଶୟନ । ୧୦୮ ।
ଭୀଷ୍ମେ ବୋଇଲେ ବାବୁ ରେ ନୋହଇ ପ୍ରେମନ୍ତ
ଦେହାନ୍ତର କାଳକୁ ପ୍ରେ ଯେ ଅଟେ ବିପରୀତ । ୧୦୯ ।
ବୀର ଶର ପାର୍ଥ ମୁହିଂ କରିବ ଶୟନ
ଅର୍ଦ୍ଧ ଆକାଶରେ ଯେ ହୋଇଣ ଉତ୍ଥାନ । ୧୧୦ ।
ଶୁଣିଣ ସବ୍ୟସାଚୀ ଧରିଣ ଧନୁ ହାଥେ
ତିନବାଣ ପାର୍ଥ ଯେ ବସାଇ ଶର ପଥେ । ୧୧୧ ।
ବଜ୍ର ସାରକ୍ଷେ ବାଣ ସୁବର୍ଣ୍ଣ ପର୍ଚ୍ଛା ବର୍ଣ୍ଣ
ତିକାଠିଆ ଆକାର ଯେ ଶର ତିନ ମୁନ । ୧୧୨ ।
ଅନ୍ତେକ୍ଷିଣ ଶର ପଟିରିଇଣ ବନ୍ଧ
ମେରୁକାଳା ଜାଣି ଆନେକ୍ଷିଣ ସନ୍ଧ । ୧୧୩ ।
ଶରମୁନ ପଛୀ ପଲଂକ ଆକାର
ସ୍ୱର୍ଗରେ ପ୍ରଶଂସା ଯେ କରନ୍ତ ଦେଖି ସୁର । ୧୧୪ ।
ଭୀଷ୍ମେ ପ୍ରଭୁବାର ଅଧା ସ୍ୱର୍ଗରେ ପଲଂକ
କେମନ୍ତେ ଯିବା ଆନ୍ତର ନ ଚଳଇ ଅଙ୍ଗ । ୧୧୫ ।
ଶୁଣିଣ ସବ୍ୟସାଚୀ ହାଦୋଳା ଶର ମାର
ଭୀଷ୍ମଂକୁ ଟେକିଲ କର ଚରଣ ଦେନ ଧରି । ୧୧୬ ।
ଚାଳେକ ଉପରେ ସେ ଶୁଆଇଲ ନେଇ
ଧୀର ଧୀର ହୋଇ ତହିଂ ମଳୟ ବହଇ । ୧୧୭ ।
ଦୁର୍ଯୋଧନେ ଗୃହିଂଣ ବୋଲନ୍ତ ଭୀଷ୍ମ ବୀର
ଦେହଗୋଟି ଜାଳା ହୁଏ ଦିଅ ମୋତେ ନୀର । ୧୧୮ ।
ଅଗ୍ନିର ତାପ ପ୍ରାୟେକ ଲଗଇ ଦେହଜାଳା
ସୁବାସ ଜଳ ଦିଅ ଗାଙ୍ଗେୟର ବଳା । ୧୧୯ ।
ସୁବାସ ନୀର ରନ୍ତ ଝରିରେ ପୂରିଇ
ଦୁର୍ଯୋଧନ ଦଲ ଆପ୍ୟାନ କରସି ଗୋହାଇଂ । ୧୨୦ ।

ତାହା ଦେଖିଣ ଗାଙ୍ଗେ ହୋଇଲେ ଅସନ୍ତୋଷ
ଯେତେକେ ଜଳେ ଆମ୍ଭେ ଯେ ନୋହିବୁ ସନ୍ତୋଷ । ୧୨୧ ।
ଆରେ ଅର୍ଜୁନ ତୁହିଟି ଛନ୍ତିଂକ ମୋକ୍ଷପାନ
ଯେ ଜାଳା ଅନରୂପେ ଦଅସି ଜଳଦାନ । ୧୨୨ ।
ଶୁଣିଣ ଅର୍ଜୁନ ଯେ ଶିକ୍ଷଶର ବନ୍ଧ
ଆକାଶ ଗଙ୍ଗାକୁ ସେ ପୁଚ୍ଛିଲ ମନଭେଦ । ୧୨୩ ।
ସୁବାସ ଶୀତଳ ଯେ କର୍ପୂର ବାସକର
ଭୀଷ୍ମ ମୁଖେ ପଡେ ଝର ଝର ହୋଇ ଧାର । ୧୨୪ ।
ସୁସଞ୍ଚ ଜଳ ଯେ ଭୀଷ୍ମେ କରଣ ଆଚମ୍ୟାନ
ପ୍ରଶଂସା କଲେକ ଧନ୍ୟ ଧନ୍ୟ ରେ ଅର୍ଜୁନ । ୧୨୫ ।
ଭୀଷ୍ମେ ପ୍ରତିବାଚ କୁରୁକୁଳ ନୃପବର
ଦେଖିଲୁଟି କ ପାଥର ମହିମାଂ ଅପାର । ୧୨୬ ।
ଯାହାରେ ପ୍ରସନ୍ନ ହୋଇଛନ୍ତି ଭଗବାନ
ମୋ ମନ ଜାଣି ଯେବେ ବହିଲ ଜଳଦାନ । ୧୨୭ ।
ମୋ ବୋଲେ ଦୁର୍ଯୋଧନ ଗୁଡ ତୁମ୍ଭେ ଯୁଦ୍ଧ
ପାଣ୍ଡବେ ପ୍ରିୟ ହେଲେ ରହିବ ସମ୍ପଦ
କ୍ଷମେ ବଞ୍ଚିଥାନ୍ତୁ ଯେବେ ତୋହୋର ଶତେଭ୍ରାଥ । ୧୨୮ ।
ଭୀମସେନର ଶରୀରେ ଅଛିଟି କୋପ ଜାଣ
ଯୁଦ୍ଧେଷ୍ଟି ନକୁଳ ସହଦେବର ନାହିଂ ମାନ । ୧୨୯ ।
କଦାପି ଧର୍ମସୁତ ନ କରେ ତୋତେ କ୍ରୋଧ
ଯୁଦ୍ଧରେ ସବଂଶ ତୋର ନ କରିଅ ବଧ । ୧୩୦ ।
ଦେଖ ପ୍ରତକ୍ଷେ ତୁ ଅର୍ଜୁନ ମହିମାଂ
ବ୍ରହ୍ମା ଇନ୍ଦ୍ର ରୁଦ୍ରର ଯେ ନ ରଟେଖ ବଡମା । ୧୩୧ ।
ମନୁଷ୍ୟ ବଳେ ଜିଣି ନୋହଇ ପାଣ୍ଡବଂକୁ
ଅକାରଣେ ନାଶ ତୁ ନ କର ବଂଶକୁ । ୧୩୨ ।
ଅର୍ଜୁନ ବାହୁ ବଳେ ଦେବନ୍ତ ଜିଣିଲ
ଖାଣ୍ଡବ ବନ ଦହନେ ଶକ୍ରହିଂ ହାଟିଲ । ୧୩୩ ।

---

୧୨୨।୧ ମୋକ୍ଷପାନ—ପ୍ରଧାନ ।

ଶତଧନୁ ବିବାଦେ କୃଷ୍ଣନ୍ତ ଜିଣିଲା ଫାଲଗୁନ
ଆମ୍ଭର ବୋଲ ନ ମାନ ନୋହନା ଅଗ୍ୟାନୀ । ୧୩୪ ।
ଛୁଡ଼ ଛୁଡ଼ ହିଂସା ବାବୁ ଅପମାନ ଗର୍ବ
ପାଣ୍ଡବେ ସୋଦର ତୋର ତାହାଂକ ଅଛି ଭାଗ । ୧୩୫ ।
ଦୁର୍ଯୋଧନ ବୋଲଇ ଯେହ୍ନା ସେ ନୋହଇ କଦାଚିତେ
କର୍ଣ୍ଣ ବୋଲେ ଯେହ୍ନା କର୍ମେ ବୋଇଲେ ଗଙ୍ଗାସୁତେ । ୧୩୬ ।
କରିବଇଂ ଯୁଦ୍ଧ ମୁହିଂ ମଇଯର ଛଳେ
ଶୁଣି ମଉନ ହେଲେ ଯେ ଭୀଷ୍ମ ମହାବଳେ । ୧୩୭ ।
ପୁଣି ବୋଇଲା ଭୀଷ୍ମେ ମୁଂ ତୁମ୍ଭର କଥା ଶୁଣି
ଶରୀର କମ୍ପମାନ କଦଳୀ ପତ୍ର ଜାଣି । ୧୩୮ ।
ବଢିଲ କଉରବେ ପାଣ୍ଡବେ ତୁମ୍ଭ ପ୍ରୀତି
ମୃତ୍ୟୁଭେଦ କହିଦେଲ କାଳର ପାହାନ୍ତି । ୧୩୯ ।
କୃଷ୍ଣେ ବୁଡ଼ାଇଦେଲ ମାନ ଯେ ଗୋବିନ୍ଦଙ୍କୁ
ଯେତେକେ ଅପରାଧୀ ତୁମ୍ଭେ ଛାଡ଼ିଲ ଧର୍ମଙ୍କୁ । ୧୪୦ ।
ଅଧର କମ୍ପାଇ ତୁମ୍ଭେ ପ୍ରତଗ୍ୟାଂ କରିଥିଲ
ଯେତେକେ ବିଶ୍ୱାସଘାତକା ଯେବେ ଆସି ମଲ । ୧୪୧ ।
ଯେହ୍ନା ଶୁଣି ଭୀଷ୍ମ ଦେବେ ବୋଇଲେ ବଚନ
ଭାରତେ ଭରେଇ ମଲ୍ଲି ତୁ ପର ଅଟୁ କର୍ଣ୍ଣ । ୧୪୨ ।

ଆହୋ ଥାଠରେ ଅଛ ତ ସେନାପତି ପଣେ
ଜାଣିମା ପାଣ୍ଡବନ୍ତ କେମନ୍ତେ ଜିଣୁ ରଣେ । ୧୪୩ ।
ସମର ଶେଷଯାଏଁ ଆମ୍ଭେ ଯେଥେଂ ଥିବୁ
ଇଚ୍ଛାମୃତ୍ୟୁ ଆମ୍ଭର ଚିନ୍ତିଲେ ମରିବୁ । ୧୪୪ ।
ଏବେ କର୍ଣ୍ଣ ରହିଲୁ ତୁ ରାଜାନ୍ତ ଅବୋର
କେମନ୍ତେ ପାଣ୍ଡବନ୍ତ ଜିଣିମୁଂ ଶସ୍ତ୍ର ଧରି । ୧୪୫ ।
ଆହୋ ରାଧେବ ତୁ କଲୁ ଯେତେ ଦର୍ପ
ତୋତେ ଅର୍ଜୁନ ଯେ ଅଟଇ କାଳସର୍ପ । ୧୪୬ ।

ରୋଷେ ପ୍ରତଗ୍ୟାଂ କରେ ମାନବଚନ୍ଦ୍ରବ୍ରାଣୀ
ବୋଲେ ଭୀଷ୍ମେ ଆଗ୍ରେ କର ଲଭିଲା ଯେତେ ଗତି । ୧୪୭ ।

ଏମନ୍ତେ ବୋଲି ତହୁଁ ଚଳିଲ ନିଜ ସ୍ଥାନ
ପାଣ୍ଡବଙ୍କୁ ଘେନିଣ ଚଳିଲେ ଜନାର୍ଦ୍ଦନ । ୧୪୮ ।
ମକର ଶୁକଳ ପକ୍ଷ ଯେ ଦଶମୀର ରାତି
ସେଦିନ ପାଣ୍ଡବେ ଭେଟିଲେ ଭୀଷ୍ମ ମହାରଥୀ । ୧୪୯ ।
ଦେଖିଲେ ସେଦିନ ଭୀଷ୍ମ ମୃତ୍ୟୁର ଅବସ୍ଥା
ଯୁଧିଷ୍ଠିର ପ୍ରଣିପାତ ଏମନ୍ତ କଲ ମୋତେ ପିତା । ୧୫୦ ।
କୁଟୁମ୍ବଘାତକ ମୋର ହେଲା ଏମନ୍ତେ ଶାସ୍ତି
କେତେ ଯଶ ଅର୍ଜିଲୁଟି ମାନଚନ୍ଦ୍ରକ୍ରାନ୍ତି । ୧୫୧ ।
ଭୀଷ୍ମେ ବୋଇଲେ ସାନ୍ଧ ତୋତେ ନାରାୟଣ
ମାନଗୋବିନ୍ଦର ନିତେ ନ ରହଇ ପ୍ରାଣ । ୧୫୨ ।
ଶକୁନି ତାର ଅଛୁ କୁଳକ୍ଷୟେ ମନ୍ତ୍ରୀ
ମଇଦ ତାର ଅଟେ କର୍ଣ୍ଣ ମହାରଥୀ । ୧୫୩ ।
ମଧୁପିଙ୍ଗଳ ଅଟଇ ମାନ ଯେ ଗୋବିନ୍ଦ
ନ ମାନିଲା ମୋହୋର ବଚନ କରୁଅଛି ଦ୍ୱନ୍ଦ । ୧୫୪ ।
କଣିକଲୁ ଯେବେ ସେ ହିଅନ୍ତା ଯୁଧିଷ୍ଠିରଙ୍କ
କମାଇଂ ସମର ଆଜ ହୁଅନ୍ତା ଏମନ୍ତକ । ୧୫୫ ।
ଆହେ ଜଗତ ସ୍ୱାମୀ ମୋତେ କର ପାର
ଏ ସଂସାର ଅଟେ ତୋହୋର ଖେଳ ଘର । ୧୫୬ ।
ଭୀଷ୍ମଙ୍କର ଅବସ୍ଥା ସେ ଦେଖିଣ ଶ୍ରୀପତି
ବୋଇଲେ ବର ମାଗ ଦେବଇଂ ଯୁଗତି । ୧୫୭ ।
ତୁ ହୋ ମହାରଥୀ ଏ ମୃତ୍ୟୁ ମଣ୍ଡଳେ
ତୋତେ ଯୁଦ୍ଧ କରି କେ ଜିଣିମ ମହୀତଳେ । ୧୫୮ ।
ମୋର ଭକ୍ତ ଘେନି ପାଣ୍ଡବଙ୍କର ହିତେ
ଇଚ୍ଛାଏ ପଡିଲୁ ତୁ ଅର୍ଜ୍ଜୁନ ଶର ଘାତେ । ୧୫୯ ।
ମାଗ ମାଗ ବର ଭୀଷ୍ମ ଚିରନ୍ତନ କଥା
ଦେବଇଂ ନିତେ ଏହା ନୋହିବ ଅନ୍ୟଥା । ୧୬୦ ।
ଭୀଷ୍ମେ ବୋଇଲେ ମୋର କଲ ନାହିଂ ପାପ
ଅପୂର୍ବକ ଲକ୍ଷଣ ମୋର ଅଟଇ ସରୂପ । ୧୬୧ ।

ଋଣଯାଗ ମୋତେ ଯେ ହୋଇଛୁ ପ୍ରାପତ
ଅପୂର୍ବିକ ଲକ୍ଷଣରୁ ମୁକ୍ତ କର ହେ ଜଗନ୍ନାଥ । ୧୬୨ ।
ଏହୁ ଯେ ପବିତ୍ର ପୁଣ୍ୟ ଅଟେ ଏକାଦଶୀ
ଏହୁଥେ ପ୍ରାଣତ୍ୟାଗ ହେଲେ ବଇକୁଣ୍ଠ ପୁରେ ବସି । ୧୬୩ ।
ହରି ହେ ଅନେକ ହିଂସାସ କଲ ମୋତେ କର୍ଣ୍ଣ
ଶରୀର ରଖିଲ, କେତେ ସେ କଣିମ ଅର୍ଜନ । ୧୬୪ ।
ଗୋବିନ୍ଦେ ବୋଇଲେ ମୋର ବଚନ ଯେବେ ସତ
ସଂସାର ଧର୍ମବ୍ରଜ ତୋତେ ହୋଉ ଯେ ପ୍ରାପତ । ୧୬୫ ।
ମକର ଶୁକଳ ପକ୍ଷ ଏକାଦଶୀ ତିଥି
ଭୀଷ୍ମଙ୍କର ରହିଲ ଏହୁ ଜଗତରେ ଖ୍ୟାତି । ୧୬୬ ।
ଯେ ଜନ ଏହି ଏକାଦଶୀ କରେ ବ୍ରତ
ସେ ଜନ ତୁମ୍ଭର ସେ ହୋଇବ ଧର୍ମପୁତ୍ର । ୧୬୭ ।
ଏହୁ ସଂସାର ମଧ୍ୟରେ ଅଛଇ ଯେଉଂ ପୁଣ୍ୟ
ସେ ତୋତେ ପ୍ରାପ୍ତି ହୋଉ ଗଙ୍ଗା ଦେବୀ ନାନ । ୧୬୮ ।
ନିକଳଙ୍କ ପୁଣ୍ୟ ପ୍ରାପ୍ତି ହୋଇବାକ ତୋତେ
ନିବାର ସତ୍ୟ କରି ବୋଇଲେ ଜଗଦ୍ଭୁତେ । ୧୬୯ ।
ତୋତେ କଣ୍ଟତରେ ଯାହା ହେଲ ଆଜ
କୋଟିକଳ୍ପେ ବ୍ରହ୍ମା ଯାହା ନ ପାଇଲେ ଭଜି । ୧୭୦ ।
ଅନ୍ୟ କେ ପାଇ ସେ ଭକ୍ତିଯୋଗ ଧେନ
ପରଂବ୍ରହ୍ମ ସ୍ୱରୂପ ସେ ଭୀଷ୍ମ ମହାଜ୍ଞାନୀ । ୧୭୧ ।
ଅପୂର୍ବିକ ଦୋଷ ଏଗୋଟି କି ଗୁରୁ ଅଟଇ
ଯାହା ପାଇଲେ ଭୀଷ୍ମେ ତା ସଂସାରରେ ନାହିଂ । ୧୭୨ ।
କେଉଂ ଯୋଗେ ଅବା ମନାଇଂ ବାସୁଦେବ
ସଂସାର ପୁଣ୍ୟ ଜୁର କଲେଟି ଗାଂଗେବ । ୧୭୩ ।
ଗୋବିନ୍ଦ ବୋଇଲେ ହେ ଭୀଷ୍ମ ମହାପ୍ରାଣ
ବଇକୁଣ୍ଠ ଲଭିବୁଟି ଛାଡିଲେ ତୋର ପ୍ରାଣ । ୧୭୪ ।
ଭୀଷ୍ମେ ବୋଇଲେ ସ୍ୱାମୀ ପାଣ୍ଡବେ ମୋର ପୁତ୍ର
ତାହାଙ୍କୁ ତୁ ରକ୍ଷା କରିଥିବୁଟି ପଦ୍ମନେତ୍ର । ୧୭୫ ।

ଅର୍ଜୁନେ ବୋଇଲେ ଯେତେ ସମର ଶେଷ ଯାଏ
ରହିଲ ମୋହୋର ପ୍ରାଣ ଯେତେ ଶରଶଯ୍ୟାଏ । ୧୭୬ ।
କବନ୍ଧ ପଡ଼ିବେ ଭାସିବ ରକ୍ତ ନଦୀ
ନାଚିବେ ଯୋଗିନୀଗଣ ଭୂତ ପ୍ରେତ ଆଦି । ୧୭୭ ।
ଯେତେ ଶଯ୍ୟାରେ ଯେମନ୍ତେଟି ନ ମାଡ଼ିବ ନଦ୍ରା
ଗୃଷଧୀ ପିଶୃଣୀ ଯେମନ୍ତେ ନ ମାଡ଼ିବେ ଶଯ୍ୟା । ୧୭୮ ।
ନିଶାଚରମାନେ ବାବୁ ନ ପୀଡ଼ିବେ ଯେମନ୍ତେ
ତେମନ୍ତ ଶରଶଯ୍ୟା କର ତୁ ବାବୁ ମୋତେ । ୧୭୯ ।
ଭୀଷ୍ମଙ୍କର ବଚନେ ସେ ଶର ମହାଖଳା
ଗାଣ୍ଡିବେ ବସାଇଲ ସେ ବାସବର ବଳା । ୧୮୦ ।
ମନ୍ତ୍ରିଣ ବୋଇଲ ତୁ ଗୃହ ପ୍ରାଏ ହେବୁ
ପୃଥ୍ୱୀକ ଗୁଡ଼ଣ ତାଳେକ, ତିନିତାଳ ପାତାଳେ ଭେଦିଥିବୁ । ୧୮୧
ପୁଣ ମନଭେଦୀ ଯେ ପେଷଇ ଫାଲଗୁନ
ବୋଇଲ ଗୃହ ଚଉପାଶେ ଜଗିଥିବୁ ପୁଣି । ୧୮୨ ।
ଆରେକ ଶର ତହିଂ ଯେ ବନ୍ଧିଲ ଅରଜୁନ
ସୁପାତ ଶେଯ ଗୋଟି କଲକ ତହିଂ ଜାଣ । ୧୮୩ ।
ବେନିଶତ ବାଣ ସେ ବନ୍ଧିଲ ଉପରକୁ
ପଞ୍ଚାଶସହସ୍ର ବାଣ ବନ୍ଧେ ଗୃର ଯେ ଦିଗକୁ । ୧୮୪ ।
ଉପର ପିଡା କଲ ମଭୂର୍ତେକ ଶର
ଶୂନ୍ୟେ ରହିଲେ ଭୀଷ୍ମେ ଯେ ତାଳେକ ଉପର । ୧୮୫ ।
ଶର ଶଯ୍ୟାରେ ଭୀଷ୍ମେ ରହିଲେ ଅଷ୍ଟବୀର
ଶଯ୍ୟାକୁ ଦିଶୁଅଛି ଯେ ବ୍ରହ୍ମାଣ୍ଡ ଜଗତ । ୧୮୬ ।
ଭୀଷ୍ମେ ବୋଇଲେ ବାବୁ ଶୁଣ ରେ ଫାଲଗୁନ
ମୋ ମନ ଜାଣିଲୁ ତୁ ମହିମାଂ ତୋହୋର ଧନ । ୧୮୭ ।
ମମ ଆପୃଷ ଦେନିଣ ତୁ ବ୍ରତରେ ସବ୍ୟସାଚୀ
ଚତୁର୍ବର୍ଗ ଫଳ ଲଭ ଯାହା ମନେ ବାଞ୍ଛି । ୧୮୮ ।

---

୧୮୭ ପଦଠାରୁ ୧୯୨ ପଦ ପର୍ଯ୍ୟନ୍ତ କେବଳ 'ଧ' ପୋଥିରୁ ନିଆ ଯାଇଅଛି ।

ସ୍ୱେ ପଞ୍ଚ କଣ୍ଟକରେ ହୁଅସି ରାଜନ
ଶିରଚ୍ଛେଦ ହୋଉ ରେ ତୋର ହାଥେ ଷାରକଣ୍ଠି । ୧୮୯ ।
ବରଦେଇ ଗାଙ୍ଗବେ ହୋଇଲେ ତ୍ରିପୂତ
ପାଣ୍ଡ୍ରବନ୍ତ ଢେନଣ ସେ ଚଳିଲେ ଶିଖାପଡ । ୧୯୦ ।
ତ୍ରିପୁରାସୁର ଅଇଶ ନମାମି ସଦାଶିବ
ଦେବାଧି ଦେବରାଜ ଆଗ୍ୟାଂ କେ ଲଂଘିବ । ୧୯୧ ।
କଞ୍ଚିତ ଭକ୍ତରେ ପ୍ରଭୁ ଦେଉଅଛୁ ବର
ଯୁଗ ଯୁଗାନ୍ତରେ ସେହୁ ହୋଉଛୁ ଅମର । ୧୯୨ ।
ଧବଳ ଶରୀର ତୋ ନାଟ୍ୟରସ ଖେଳେ
କରେ ବିରାଜଇ ତୋର ଖାଷ ଯେ ତ୍ରିଶୂଳେ । ୧୯୩ ।
ପିନାକୀ ପଶୁପତି ଯେ ଅକ୍ଷୟ ତୂଣୀର
ଅନ୍ଧକ ବିନାଶନେ ସ୍ୱର୍ଗେ ରହିଲା ବଜ୍ରଧର । ୧୯୪ ।
ଅର୍ଦ୍ଧନାରୀଶ୍ୱର କୃତାନ୍ତ ଦର୍ପ ଭଞ୍ଜା
ଡବ ଡବ ଡମ୍ବରୁ ବାଜେ ମହାବାଜା । ୧୯୫ ।
ତାଣ୍ଡବ ନୃତ୍ୟ ନୋହେ ତୁମ୍ଭର ନ ଥିଲେ
କାଳକୂଟ ଖାଇ ତୁମ୍ଭେ ପାରକଲ ହେଲେ । ୧୯୬ ।
ଅହିରାଜ କରିଅଛ ଗଳାରେ ଉତ୍ତରୀ
କର୍ପୂର ବିଭୂତିରେ ଶରୀର ତୋଷ କରି । ୧୯୭ ।
ଦୁଦୁରି ଗଇଣ ପୁଷ୍ପ ଚମ୍ପା ନାଗେଶ୍ୱର
ବେଲ ପଦ୍ମ ବକୁଳରେ ହୃଦେ ଲମ୍ବେ ହାର । ୧୯୮ ।
ପଞ୍ଚମୁଖ ତୁମ୍ଭର ହେ ଅଟେ ତ୍ରିଲୋଚନ
ସଦାନନ୍ଦ ପୁରୁଷ ତୋର ବୃଷଭ ବାହନ । ୧୯୯ ।
ତ୍ରିଗୁଣେ ବନ୍ଧନ ତୋ ନୋହିଅଛି ଅଙ୍ଗ
ଅନୁକ୍ଷଣେ ମେଳ ତୋର ଯୋଗିନୀଗଣ ସଙ୍ଗ । ୨୦୦ ।
କଞ୍ଚିତ ଭଗତେ ଦିଅ ଅଭୟେ ଯେ ବର
ସର୍ବଦା କାଳେ ଗଙ୍ଗା ବହିଛ ତୁମ୍ଭେ ଶିର । ୨୦୧ ।

---

୧୯୮।୧ ଗଇଣ—ଗୟେସ, ଏକ ପ୍ରକାର ଧଳା ଶ୍ୱେତ ଏକ ପାଖୁଡ଼ିଆ ଫୁଲ ।
ଘୁପୁଷ୍ପ, (Leucas plant)

ଭାଲରେ ଚନ୍ଦ୍ର ତୋର ଜଟାମଧ୍ୟେ ଥାଇ
ସୁର ସିଦ୍ଧ ମୁନି ତୋର ଚରଣେ ସେବଇ । ୨୦୨ ।
ହେ ସ୍ୱାମୀ ନାଗକୁଳ ପରମ ଯେ ଯୋଗୀ
ତୋହୋର ସେବାକାରୀ ସର୍ବଦା ନାରଦ ଯୋଗୀ । ୨୦୩ ।
ଘୋର ଅରଣ୍ୟରେ ତୋହୋର ଅଛି ବାସ
ଶୁଦ୍ଧଭୂମି ଅଛି ତୋର ନାମ କପିଳାସ । ୨୦୪ ।
ଚଉଦ କୋଟି ସଂଗେ ତୋହୋର ଶିବଗଣ
ଦୁଖଭାର ନାଶୁ ଦେବ ଭ୍ରମିଣ ସଂସାରେଣ । ୨୦୫ ।
ଅନ୍ତର୍ଯ୍ୟାମୀ ନାଥ ହେ ତୁମ୍ଭେ ଶୂଳଧର
ଡାକଲେ ଡାକ ଶୁଣ ଥିଲେ ତୁମ୍ଭେ ଦୂର । ୨୦୬ ।
ନରକୁ ତାରଣ ଦେବ ଅଛ ହେ ଦେବ କାଶୀ
ମୀଳାଗଣ୍ଡି କର ଛେଦ ହେ କାଳଫାଶି ।୨୦୭ ।
ଅକର୍ମା ଦାତା କର୍ମେ ନ ଥିଲେ ବର ଦେଉ
ସଦାନନ୍ଦ ପୁରୁଷ ତୁ ନାରଶ ନ କରାଉ । ୨୦୮ ।
ଯେତେ ସଚରାଚରେ ଅଛନ୍ତି ଯେତେ ଦେବ
ତୁମ୍ଭର ମହିମାଂକୁ ଟକେ ସାମାନ୍ୟ ହୋଇବ । ୨୦୯ ।
ବନ୍ଦଇ ମହାମାୟା ଗୋ ହରଂକ ଘରଣୀ
ପରମ ବଇଷ୍ଣବୀ ତୁହି ସଂକଟ ତାରଣୀ । ୨୧୦ ।
ଦଇତ ନସୂଦନୀ ଗୋ ଘୋରାର୍ତ୍ତି ନାଶିନୀ
ସର୍ବ ସୁଲକ୍ଷଣୀ ଗୋ ମଙ୍ଗଳ ଦାୟିନୀ । ୨୧୧ ।
କାମାକ୍ଷୀ କାମସେଣା ଗୋ ହିମବନ୍ତ ଘରେ
ଜନ୍ମିଣ ବଟଜକଲ ଜଙ୍ଗେରପୁର ଗ୍ରାମରେ । ୨୧୨ ।
ସେ ଦେବୀର ଚରଣେ ମୋହୋର ନିତ୍ୟେ ଆଶ
ବଦଯନ୍ତି ଶୂଦ୍ରମୁନି ସାରଳ ଚଣ୍ଡୀ ଦାସ ।୨୧୩ ।
ଇଦଂ ମହାଭାରଥ ଭୀଷ୍ମ ପର୍ବ ଯୁଦ୍ଧ
ଭୀଷ୍ମେ ଶରଶଯ୍ୟା କଲେ କୁରୁପତିର ବୋଧ । ୨୧୪ ।
ଅକୂଳ ସମୋଦ୍ରରେ ଯେ ଭାସିଲା କୁରୁପତି
ଦ୍ରୋଣେ ହେବେ ଯୁଦ୍ଧେ ହୋଇବେ ସେନାପତି । ୨୧୫ ।

ମିପ୍ତ ଯେ ଖଣ୍ଡ ପର୍ବ ହୋଇଲାକ ଶେଷ
ବଦପୂନ୍ତ ଶୁଦ୍ର ମୁନ ଶ୍ରୀ ସାରୋଳ ଚଣ୍ଡୀ ଦାସ । ୨୧୬ ।
ଜୟ ତୁ ଅଯୋନ ସମ୍ଭୂତ ଅଭୟେ ବାଲୁଂକା
ସଂସାର ନାଶନ୍ତା ଦେବ ତୁହ୍ମ ସେ ସିଦ୍ଧ ପୁଁକା । ୨୧୭।
ଶୁଦ୍ଧ ସର୍ଷ୍ଟିକ ଶରୀର ନିରାକୁଳ ହେ ନିକଳଂକ
ନିଶାକର ମଣ୍ଡଳ ନାଥ ଜୟ ତୁ ତ୍ରିଅମ୍ବକ । ୨୧୮ ।
ଅଗାଦ ଜଳ ସାଗର ସଂସାର ଅଗୋଚର ମାୟା
ସମସ୍ତ ଗୋପ୍ୟକଲୁ ନାଥ ପୁଁ ତୋହୋର ପୁଁକ କାୟା । ୨୧୯ ।
ଯୋଗେଣ ଯୋଗ ସ୍ଵାମୀ ଯୋଗେଣ ପରମାଦ
ସର୍ବ ସମ୍ପଦ ତେଜିଲୁ ନାଥ ଇଚ୍ଛିଲୁ ଯୋଗପଦ ।୨୨୦ ।
ନିରାକାର ପୁରୁଷ ନିକଳଂକ କାୟା ଗୋଟି
ନିଷତ କର୍ମରୁ ମୋତେ ଉଦ୍ଧର ହୋ ଧୂର୍ଜଟୀ । ୨୨୧ ।
କାମିନୀ ପୁରୁଷ ନାଥ କାମିନୀ ଅର୍ଦ୍ଧକାୟେ
କାମ ନିରୋଧେଣ ନାଥ ସଦାୟେଣ ସଦୟେ । ୨୨୨ ।
ନୟନ ପଞ୍ଚଦଶ ନାଥ ଅଭୟେ କୁଣ୍ଡଳୀ
ଗିରିଜାର ରସରଙ୍ଗେ ସମର୍ଥ ଦେବ ଶୂଳୀ । ୨୨୩ ।
ସର୍ଜ୍ଜନ ଜନ ରଞ୍ଜନ ହୃଦଗତେ ଜପାମାଳା
ଭଇରୋବ ରୂପ ଧରି ପାଞ୍ଚଲୁ ମହାଖଳା । ୨୨୪ ।
ଶ୍ରୀଭୁଜେ ପିନାକୀ ଯେ ଖଟ୍ଵାଙ୍ଗ ପଶୁପନ
ଶିରେଣ ଧବଳୀ ପ୍ରଚଣ୍ଡ ସୁଲଳିତ ଗଙ୍ଗା ତ୍ରିନେତ୍ର । ୨୨୫ ।
ଗୁରୁଂକ ଉପରେ ତୁମ୍ଭେ ପରମ ଯେ ଗୁରୁ
ଦେବାଧି ଈଶ୍ଵର ହେ ମହିମାଂ ତୋର ମେରୁ । ୨୨୬ ।
ତ୍ରିପୁର ଧଂସିଲ ଯେହୁ କଉତୁକ ଖେଳେ
ଅନ୍ଧକ ନିବାରିଲୁ ବଢ଼ାଇ ସମ୍ମୋହେ । ୨୨୭ ।
ଯୋଗେଣ ଯୋଗେଶ୍ଵର ପରମ ଜଗୁଜ୍ଜତା
ଚନ୍ଦ୍ରଭେଦୀ ନାଥ ତୁ ପରମ ପଦେ ଶକତା । ୨୨୮ ।

---

୨୨୫ { ଶ୍ରୀଭୁଜେ ପିନାକୀ ପରଶୁ ପଣ ଖଟ୍ଵାଙ୍ଗ ।
ଶିରେଣ ଧବଳୀ ପ୍ରଚଣ୍ଡ ଶୂଳ ଲଗ । (୯ ଢ଼)

ସ୍ୱାମୀ ସମୋଦ୍ର ମନ୍ଥନେ ଜାତ କାଳକୂଟ ଭକ୍ଷି
ଆପଣେ ଦୁଃଖଭାଗୀ ସପୂଳ ଜନ ରକ୍ଷି । ୨୨୯ ।
ନମୋ ନମୋ ନୀଳକଣ୍ଠ ନୀଳାମ୍ବର ସରୂପୀ
ଯାବନ୍ତ ଚନ୍ଦ୍ରାର୍କେ ଦେବ ତୋହୋର କାୟା ଅଛୁ ବ୍ୟାପୀ । ୨୩୦ ।
ନରକ ତାରଣ ସେ ଯାହାର ନାମ ଟଗୋଟି
ମୁହିଁ ତାହାନ୍ତ ତଳୟେ କଲ ପଞ୍ଚଦଶ ବ୍ରହ୍ମାଣ୍ଡ କୋଟି । ୨୩୧ ।
ଯୋଗେ ଯୋଗେଶ୍ୱର ନାଥ ଧ୍ୟାନ ଉପଗତ
ସାଧନ ପୁରୁଷ ସ୍ୱାମୀ ଅଭୟେ ବିଶ୍ୱନାଥ । ୨୩୨ ।
ପତ୍ନୀର କୋପେ ଯେ ଦକ୍ଷର ଯାଗ ଭଙ୍ଗା
ମହା ବ୍ରହ୍ମହତ୍ୟା ଦେବ ଛୁଇ ସେ ଦିଗବଳା । ୨୩୩ ।
ସୁରସିଦ୍ଧ ମୁନି ଯାହାର ଚରଣେ ବନ୍ଦେ
ମୁହିଁ ତାହା ଇଚ୍ଛିଲି ଦେବ ପରମ ସାନନ୍ଦେ । ୨୩୪ ।
ସଦ୍ୟଜାତ ବାମଦେବ ଅଘୋର ତତପୁରୁଷ ଈଶାନ
ପନ୍ନଗଭୂଷଣ ନାଥ ଜଟା ମେଖଳା ବିଦ୍ୟମାନ । ୨୩୫ ।
ସୋମପାନ ମନ୍ତ୍ରେ ସପୂଳ ଜନ ଚିନ୍ତା
ସର୍ବ ଲୋକର ବନ୍ଧୁ ସର୍ବ ସଂଜ୍ଞା କରନ୍ତା । ୨୩୬ ।
ଜୟ ତୁ ଦିଗମ୍ବର ଯାବନ୍ତ ଚନ୍ଦ୍ରଚୂଳ
ତବ ଭଗତ ଅର୍ଥେ ନାଥ ସିଁଜିଲୁ ସପୂଳ । ୨୩୭ ।
ପ୍ରଳୟେ ଉତ୍ତାରଣ ନାଥ ଅଭୟେ ଭବାନୀ
ଶୂଦ୍ରମୁନି ସାରଳା ଦାସର ଘେନମା ଦଣ୍ଡ ମିନି । ୨୩୮ ।
ଆହେ। ବୁଧଜନମାନେ ମୋର ନ ଘେନମା ଦୋଷ
ଇହଜନ୍ମେ ନ ପଢିଲି ଗତଜନ୍ମେ ଅଭ୍ୟାସ । ୨୩୯ ।
ଜନ୍ମେଣ ମୂରୁଖ ଅପଣ୍ଡିତ ନ ଜାଣଇଁ ମୁଂ କିଛୁ
କଣ୍ଠତେ ସଦୟେ ମୋତେ କଲେ ପିଙ୍ଗଳାକ୍ଷୀ । ୨୪୦ ।
ଜାତ ଅନ୍ତ ମଧ୍ୟେ ଯାର ଅବସାନ ନାହିଁ
ପରମ ଗତି ଇଚ୍ଛିଲି ଚରଣେ ତାର ଦାହି । ୨୪୧ ।
ବଦଯନ୍ତ ଅଗସ୍ତି ଖଣ୍ଡପର୍ବର ଯେ କଥା
ବସ୍ତୁ ପୁରାଣର ମଧ୍ୟେ ଅଷ୍ଟାଦଶ ପର୍ବଣ ବାରତା । ୨୪୨ ।

କେହ୍ନୁ ହେ ଯିବନ୍ତି ଗଙ୍ଗା ବାଲିର ଲେଖା
ବଡବା ଅନଳେ କେହ୍ନୁ କାଠ ଦେବ ଯୋଖା । ୨୪୩ ।
କୃପାଜଳ ନନ୍ଦିନୀ ଗୋ ପ୍ରସନ୍ନ ହେଙ୍ଗୁଲା
ହୃଦଗତେ ଚଳିଲ ମୁଂ ଶ୍ରୀଚଣ୍ଡୀ ସାରେଳା । ୨୪୪ ।
ମରୁଳ ଆସନା ମା ଗୋ ଜଙ୍ଘେରପୁର ବାସୀ
ଭବ ଭୟ ଦୁଷ୍କୃତ ସମସ୍ତ ବିନାଶି । ୨୪୫ ।
ଅନେକ ଜନ୍ମର ଯେ ଅନେକ ପାପ ଖଣ୍ଡି
ଦୁର୍ଗତି ତାରିଣୀ ଗୋ ସାରେଳ ନାମେ ଚଣ୍ଡୀ ! ୨୪୬ ।
ମହାଭାରଥ ଭୀଷ୍ମପର୍ବ ଦଶ ଦିବସ ଅନ୍ତରେ
ମୁହିଂ ତାହା ଲେଖିବି ମା ଗୋ ତୋହୋର ପ୍ରସନ୍ନରେ । ୨୪୭ ।
ନର୍ମଦା ସରସ୍ୱତୀ ଚରଣେ ମୋର ସେବା
ଶୂଦ୍ରମୁନି ସାରେଳଦାସଙ୍କୁ ପ୍ରସନ୍ନେ ମୁକତି ଗତି ଦେବା ।୨୪୮–୩୯୭୪।



ଭୀମସ୍ୟାପି ରଣେ ଭଙ୍ଗୋ ମୁନେରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ବିଦ୍ୟତେ ।




ବ୍ରହ୍ମପୁର ଶାରଦା ପ୍ରେସ୍‌ରେ ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀଙ୍କ ଦ୍ୱାରା ମୁଦ୍ରିତ । ୧୯୬୪ ।